ଜାତୀୟ ଜୀବନ ଚରିତମାଳା

# ଯତୀନ୍ଦ୍ରମୋହନ ସେନଗୁପ୍ତ

ଶଚୀନ ଦତ୍ତ

ଅନୁବାଦ

ଚିତ୍ତରଞ୍ଜନ ଦାସ



ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

# ମୁଖବନ୍ଧ

ଯେଉଁ ବର୍ଷ ଭାରତୀୟ ଜାତୀୟ କଂଗ୍ରେସର ସ୍ଥାପନା ହୋଇଥିଲା, ଶ୍ରୀଯୁକ୍ତ ସେନଗୁପ୍ତଙ୍କର ଜନ୍ମ ସେହି ବର୍ଷରେ । ଆପଣାର ସାମର୍ଥ୍ୟ ଏବଂ ତ୍ୟାଗ ବଳରେ ସେ ତାଙ୍କର ସମସାମୟିକ ସେହି ଅନୁଷ୍ଠାନରେ ଜଣେ ସର୍ବାଗ୍ରଗଣ୍ୟ ନେତା ହୋଇ ପାରିଥିଲେ । ତାଙ୍କ ଜୀବନର ବିକାଶ କାଳରେ (1885 ରୁ 1910) ଭାରତୀୟ ଜାତୀୟତା କ୍ଷିପ୍ର ଅଗ୍ରଗତି କରିଥିଲା । ତାଙ୍କର ଭୂମିଷ୍ଠ ହେବା ସମୟରୁ ସେ ଭାରତର ପରାଧୀନତା ବିରୋଧରେ ବ୍ରିଟିଶ୍ ସାମ୍ରାଜ୍ୟବାଦର ଦରବାରରେ ହେଉଥିବା ପ୍ରବଳ ପ୍ରତିବାଦର ବାତାବରଣକୁ ହିଁ ନିଃଶ୍ୱାସରେ ଗ୍ରହଣ କରିଥିଲେ ।

ସେନଗୁପ୍ତ ଇଂଲଣ୍ଡରେ ଯେଉଁ ଶିକ୍ଷା ଲାଭ କରିଥିଲେ, ତାଙ୍କୁ ତାହାର ପ୍ରକୃତ ଫଳଶ୍ରୁତି ପ୍ରାପ୍ତ ହୋଇଥିଲା । କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟର ଡାଉନିଙ୍ଗ୍ କଲେଜରୁ ସେ ଆଇନ୍‌ରେ ଟ୍ରାଇପସ୍ ହାସଲ କରିଥିଲେ ଏବଂ ଗ୍ରେକ୍ ଇନ୍‌ରୁ ବାରିଷ୍ଟରୀ ପାସ୍ କରିଥିଲେ । 1909 ମସିହାରେ ସେ ବାରିଷ୍ଟରୀ ଆରମ୍ଭ କଲେ । ଜଣେ ଶକ୍ତିଶାଳୀ ବକ୍ତା ହିସାବରେ କେମ୍ବ୍ରିଜ୍‌ରେ ସୁଖ୍ୟାତି ଅର୍ଜନ କରିଥିଲେ ଏବଂ ସେହି ବିଶ୍ୱବିଦ୍ୟାଳୟରେ ଥିବା ଭାରତୀୟ ମଜ୍‌ଲିସ୍‌ର ସଭାପତି ନିର୍ବାଚିତ ହୋଇଥିଲେ । କେମ୍ବ୍ରିଜ୍‌ର 'ପ୍ରାଚ୍ୟ ଓ ପାଶ୍ଚାତ୍ୟ ସମିତି'ର ମଧ୍ୟ ସଭାପତି ଥିଲେ । କ୍ରୀଡ଼ା-ପ୍ରତିଯୋଗିତାରେ ତିନୋଟି ନୀଳ-ସଙ୍କେତ ହାସଲ କରି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ସେହି କେମ୍ବ୍ରିଜ୍‌ରେ ଯତୀନ୍ଦ୍ରମୋହନ ସେନଗୁପ୍ତଙ୍କର ତାଙ୍କ ଜୀବନର ସୁଯୋଗ୍ୟା ସହଗାମିନୀ ନେଲି ଗ୍ରେଙ୍କ ସହିତ ସାକ୍ଷାତ ହୋଇଥିଲା । 1910ରେ ସେମାନଙ୍କର ବିବାହ ହେଲା । ଏହି ବିବାହବନ୍ଧନକୁ ପ୍ରକୃତରେ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ବୋଲି କହିବାକୁ ହେବ, କାରଣ ଶ୍ରୀମତୀ ସେନଗୁପ୍ତ ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଆପଣା ସାହସୀ ସ୍ୱାମୀଙ୍କ ସହିତ ନିଜକୁ ଜଡ଼ିତ କରି ରଖିଥିଲେ । ଜଣେ ଇଂରାଜୀ ମହିଳା ହୋଇଥିଲେ ମଧ୍ୟ ସେ ଭାରତର ସ୍ୱାଧୀନତାଦର୍ଶ ସହିତ ଆପଣାକୁ ଏକଯୁକ୍ତ କରି ଦେଇଥିଲେ ଏବଂ ପ୍ରଥମ ଶ୍ରେଣୀର ଜଣେ ଭାରତୀୟ ଦେଶାନୁରାଗୀ ରୂପେ ନିଜର କୃତୀ ବଳରେ ହିଁ ସ୍ୱୀକୃତ ହୋଇଥିଲେ । 1910 ମସିହାରେ ଭାରତବର୍ଷକୁ ଫେରି ଆସି ଶ୍ରୀ ସେନଗୁପ୍ତ କଲିକତା ହାଇକୋର୍ଟରେ ଓକିଲାତି ଆରମ୍ଭ କଲେ ଏବଂ ରିପନ୍ ଆଇନ୍ କଲେଜରେ ଆଇନ୍ ବିଭାଗର ଜଣେ ଅଧ୍ୟାପକ ରୂପେ ନିଯୁକ୍ତ ମଧ୍ୟ ହୋଇଥିଲେ । ଓକିଲାତି ଜୀବିକାରେ ସମୃଦ୍ଧି ଲାଭ କରିବାକୁ ତାଙ୍କୁ ଆଦୌ ବେଶୀ ବର୍ଷ ଲାଗି ନ ଥିଲା ।

1921 ମସିହାରେ କଂଗ୍ରେସର ଡାକରା ପାଇ ଯେଉଁ ପ୍ରଥମ ଦଳର ସ୍ୱେଚ୍ଛାସେବକମାନେ କାରାବରଣ କରିଥିଲେ, ସେମାନଙ୍କ ମଧ୍ୟରେ ଯତୀନ୍ଦ୍ରମୋହନ ଜଣେ ଥିଲେ । ଚିଟାଗଙ୍ଗଠାରେ ଶ୍ରୀ ସେନଗୁପ୍ତ ଓ ତାଙ୍କର ଅନୁଗାମୀମାନେ ଅବଶିଷ୍ଟ ଦେଶଲାଗି ଯେଉଁ ନେତୃତ୍ୱର ଆଦର୍ଶ ଦେଖାଇଥିଲେ, ଗାନ୍ଧିଜୀ 'ୟଙ୍ଗ ଇଣ୍ଡିଆ' କାଗଜରେ ତାହାର ଭୂୟସୀ ପ୍ରଶଂସା କରିଥିଲେ । ''ଅଗ୍ରଗାମୀ ଚିଟାଗଙ୍ଗ୍'' ଓ ''ଚିଟାଗଙ୍ଗର ବାର୍ତ୍ତା'' ନାମରେ ସେ ସେହି କାଗଜରେ ଦୁଇଟି ଲେଖା

ଲେଖୁଥିଲେ । ଚିତ୍ତରଞ୍ଜନ ଦାସ ଏବଂ ମୋତିଲାଲ୍ ନେହରୁଙ୍କର ନେତୃତ୍ୱରେ 1923-24 ରେ ସ୍ୱରାଜ୍ୟ ପାର୍ଟିର ଗଠନ ପରେ ସେନଗୁପ୍ତ ବଙ୍ଗଳାର ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌କୁ ନିର୍ବାଚିତ ହେଲେ ଏବଂ ଦଳର ସମ୍ପାଦକ ମଧ୍ୟ ହୋଇଥିଲେ । 1922 ରେ କଂଗ୍ରେସର କାର୍ଯ୍ୟକାରୀ କମିଟିକୁ ନିର୍ବାଚିତ ହେଲେ ଏବଂ 1933 ରେ ତାଙ୍କର ମୃତ୍ୟୁ ହେବା ପର୍ଯ୍ୟନ୍ତ ସେହି ସ୍ଥାନରେ ଅଧିଷ୍ଠିତ ରହିଥିଲେ । ପରବର୍ତ୍ତୀ କାଳରେ ସେ ସ୍ୱରାଜ୍ୟ ପାର୍ଟିର ସହକାରୀ ନେତାରୂପେ ନିର୍ବାଚିତ ହୋଇଥିଲେ ଏବଂ ବସ୍ତୁତଃ ଚିତ୍ତରଞ୍ଜନ-ଦାସଙ୍କର ସର୍ବପ୍ରଧାନ ସହସେନାପତି ହୋଇ ରହିଥିଲେ । 1925ରେ ଦେଶବନ୍ଧୁ ଚିତ୍ତରଂଜନ ଦାସଙ୍କର ଦେହାନ୍ତ ପରେ ତାଙ୍କର ମୁକୁଟ ଯତୀନ୍ଦ୍ରମୋହନଙ୍କ ମସ୍ତକକୁ ଆସିଥିଲା । ବେଙ୍ଗଲ୍ ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ରେ ସେ ସ୍ୱରାଜ୍ୟ ପାର୍ଟିର ନେତା ହେଲେ, ବଙ୍ଗ ପ୍ରାଦେଶିକ କଂଗ୍ରେସ୍ କମିଟିର ସଭାପତି ହେଲେ ଓ କଲିକତାର ମେୟର୍ ହେଲେ । 1928 ମସିହାରେ କଂଗ୍ରେସର କଲିକତା ଅଧିବେଶନରେ ସେ ଅଭ୍ୟର୍ଥନା ସମିତିର ଚେୟାର୍‌ମ୍ୟାନ୍ ରୂପେ ନିର୍ବାଚିତ ହୋଇଥିଲେ । ନେହରୁ ରିପୋର୍ଟର ବିଚାର କରିବା ସକାଶେ ସେହି ବର୍ଷ ଶେଷରେ ଯେଉଁ ସର୍ବଦଳ-ସମ୍ମିଳନୀ ଡକା ଯାଇଥିଲା, ସେଥିରେ ତାଙ୍କୁ ସର୍ବପ୍ରଧାନ ବ୍ୟକ୍ତିମାନଙ୍କ ମଧ୍ୟରେ ଜଣେ ବୋଲି ସ୍ୱୀକୃତି ଦିଆ ଯାଇଥିଲା । ରିପୋର୍ଟର ସମର୍ଥନରେ ପ୍ରଦତ୍ତ ତାଙ୍କର ବକ୍ତୃତାକୁ ସମ୍ମିଳନୀରେ ଯୋଗ ଦେଇଥିବା ବ୍ୟକ୍ତିବୃନ୍ଦ ଏକ ଚମତ୍କାର କୃତିତ୍ୱ-ପ୍ରଦର୍ଶନ ରୂପେ ଏବେ ମଧ୍ୟ ସ୍ମରଣ କରୁଛନ୍ତି ।

ଆପଣାର ପ୍ରଶଂସାକାରୀ ଦେଶବାସୀଙ୍କ ଦ୍ୱାରା କେଡ଼େ ପ୍ରେମରେ 'ଦେଶପ୍ରିୟ' ନାମରେ ସମ୍ବୋଧିତ-ହେଉଥିବା ଯତୀନ୍ଦ୍ରମୋହନ ସେନଗୁପ୍ତ ଆଜି ଜଣେ ବିଶିଷ୍ଟ ବ୍ୟକ୍ତିରୂପେ ଆଖ୍ୟାତ ହୋଇ ରହିଛନ୍ତି । ମୂଳତଃ ସେ ଜଣେ ନିର୍ଭୀକ ସ୍ୱାଧୀନତା ସଂଗ୍ରାମୀ ଥିଲେ ଏବଂ ତାଙ୍କ ଠାରେ ଅଦମ୍ୟ ଇଚ୍ଛାଶକ୍ତି ରହିଥିଲା । ଦେଶଲାଗି ଉତ୍ସର୍ଗ କରିବାଲାଗି ତାଙ୍କ ପାଖରେ କେବଳ ଗୋଟିଏ ବୟଃକାଳ ରହିଛି ବୋଲି ଥରେ ସେ ଦୁଃଖପ୍ରକାଶ କରିଥିଲେ । 1818 ର ତୃତୀୟ ଧାରା ଅନୁସାରେ ରାଞ୍ଚି ଜେଲ୍‌ରେ ଜଣେ ସରକାରୀ ବନ୍ଦୀରୂପେ ଅଟକ ରହିଥିବା ସମୟରେ 1933 ରେ ସେ ସହିଦ ହୋଇ ମୃତ୍ୟୁ ବରଣ କରିଥିଲେ । ଯତୀନ୍ଦ୍ରମୋହନ ସେନଗୁପ୍ତଙ୍କ ପରି ସ୍ୱାଧୀନତା ଲାଗି ଜଣେ ସହିଦର ଜୀବନକୁ ଗୋଟିଏ ଅର୍ଥରେ ଅତ୍ୟନ୍ତ ଦୁଃଖଦ ବୋଲି କୁହାଯାଇପାରିବ । ଜଣେ ସହିଦ ଲଢ଼ିଥିବା ସ୍ୱାଧୀନତା-ସଂଗ୍ରାମରେ ବିଜୟ ହାସଲ ହୋଇଯିବା ପରେ ପରବର୍ତ୍ତୀ ପୁରୁଷମାନେ ହୁଏତ ତାଙ୍କୁ ଭୁଲିଯାଇ ପାରନ୍ତି । ତାଙ୍କଠାରୁ ପ୍ରାୟ ଅର୍ଦ୍ଧଶତାବ୍ଦୀ ଛାଡ଼ିକରି ରହିଥିବା ବର୍ତ୍ତମାନର ପିଢ଼ିଟି ଶ୍ରୀ ସେନଗୁପ୍ତଙ୍କ ପରି ଜଣେ ମହାନ୍ ବ୍ୟକ୍ତି ଲଢ଼ିଥିବା ସେହି ଐତିହାସିକ ସଂଗ୍ରାମ ବିଷୟରେ ପ୍ରକୃତରେ କେତେ କମ୍ ଜାଣିଛି ! ଏହି ଦୃଷ୍ଟିରୁ ହିଁ ଶ୍ରୀ ଶଚୀନ୍ ଦତ୍ତ ପାଠକବର୍ଗଙ୍କ ଆଗରେ ଉପସ୍ଥାପିତ କରୁଥିବା ଏହି ପୁସ୍ତକଟିର ଏକ ଉଲ୍ଲେଖଯୋଗ୍ୟ ମହତ୍ତ୍ୱ ରହିଛି । ଜଣେ ପୁରୁଖା ସାମ୍ବାଦିକ ଏବଂ ବିଦ୍ୟାବିତ୍ ଶ୍ରୀ ଦତ୍ତ ଶ୍ରୀ ସେନଗୁପ୍ତଙ୍କର ଜନ୍ମ ନଗରୀ ସେହି ଚିଟାଗଙ୍ଗ୍‌ର ଲୋକ । ସେ ପ୍ରଭୂତ ଯତ୍ନର ସହିତ ଏଠାରେ ଶ୍ରୀ ସେନଗୁପ୍ତଙ୍କର ଜୀବନର ଘଟଣାବଳୀକୁ ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି । ପୁସ୍ତକଟିକୁ ପ୍ରସ୍ତୁତ କରିବାରେ ଶ୍ରୀଯୁକ୍ତ ଦତ୍ତ ଉପଲବ୍ଧ ହେଉଥିବା ସକଳ ମୌଳିକ ତଥ୍ୟୋତ୍ସର ସନ୍ଧାନ ନେଇଛନ୍ତି । ଭାରତବର୍ଷରେ ବଙ୍ଗଳାର ରାଜନୀତିକ ଇତିହାସର କ୍ଷେତ୍ରରେ ଏହି ପୁସ୍ତକଟି ଯେ ଏକ ଉଲ୍ଲେଖଯୋଗ୍ୟ ଆଉ ଗୋଟିଏ ପୁସ୍ତକ ହୋଇ ରହିବ, ମୋର ସେଥିରେ କୌଣସି ସନ୍ଦେହ ନାହିଁ ।

**ଅଧ୍ୟାପକ ନିର୍ମଳଚନ୍ଦ୍ର ଭଟ୍ଟାଚାର୍ଯ୍ୟ**

# ଭୂମିକା

ଜଣେ କଲେଜଛାତ୍ର ଏବଂ ବିଶ୍ୱସ୍ତ ଅନୁଗାମୀ ହିସାବରେ, ଅସହଯୋଗ ଆନ୍ଦୋଳନ ସମୟର ସେହି କେତେବର୍ଷରେ ଅନ୍ୟ ଅନେକ ବ୍ୟକ୍ତିଙ୍କ ସହିତ ମୋତେ ମଧ୍ୟ ଯତୀନ୍ଦ୍ରମୋହନ ଏବଂ ଶ୍ରୀମତୀ ସେନଗୁପ୍ତଙ୍କର ସେହି ଯାଦୁକରୀ ପ୍ରଭାବର ପରିଚୟ ଲାଭ କରିବାର ଗୌରବମୟ ସୁଯୋଗ ଏବଂ ଆନନ୍ଦ ପ୍ରାପ୍ତ ହୋଇଥିଲା । ତତ୍କାଳୀନ ପ୍ରଖର ରାଜନୀତିକ ନାନା ସ୍ରୋତରେ ମୁଁ ମଧ୍ୟ ଜଣେ ଛାତ୍ର ଅଂଶଗ୍ରହଣକାରୀ ଭାବରେ ଯୋଗ ଦେଇ ତଜ୍ଜନିତ ପୁଲକ ଲାଭ କରିଥିଲି । ଦଶବର୍ଷ ପରେ (1930 ଠାରୁ) ଜଣେ କର୍ମଜୀବୀ ସାଂବାଦିକ ଭାବରେ ଦେଶର ସ୍ୱାଧୀନତା ସଂଗ୍ରାମରେ ଦୁର୍ଭଜଣ ପୁରୋଭାଗସ୍ଥ ନେତାରୂପେ ମୁଁ ସେମାନଙ୍କର ଖ୍ୟାତିକୁ ଏକ ଉତ୍ତରୋତ୍ତର ବିସ୍ତାର ଲାଭ କରୁଥିବା ଦିଗ୍‌ବିଜୟ ଉପରେ ଝଲସି ଉଠୁଥିବାର ପ୍ରତ୍ୟକ୍ଷ ମଧ୍ୟ କରିଥିଲି । ପ୍ରତ୍ୟକ୍ଷ ଭାବରେ ହେଉ ଅଥବା ପରୋକ୍ଷ ଭାବରେ ହେଉ, ଚିଟାଗଙ୍ଗ୍ ଆନ୍ଦୋଳନ ଅନୁସନ୍ଧାନ କମିଟି ତତ୍କାଳୀନ ସ୍ମରଣୀୟ ଘଟଣାବଳୀ ବିଷୟରେ କରିଥିବା ତଦନ୍ତ ସମୟର ସେହି ଉଦ୍‌ବେଳନପୂର୍ଣ୍ଣ ଦିନଗୁଡ଼ିକରେ ମୁଁ ଦେଶପ୍ରିୟଙ୍କର ଅଧିକ ନିକଟ ସମ୍ପର୍କରେ ଆସିବାର ଅତି ବିରଳ ସୌଭାଗ୍ୟ ମଧ୍ୟ ଲାଭ କରିଥିଲି । ଏଠାରେ ମୁଁ ହୁଏତ ଉଲ୍ଲେଖ କରିପାରିବି ଯେ, ପୋଲିସ୍ ଏବଂ ସାମରିକ ବାହିନୀର ଆଖିବୁଜା ଅତ୍ୟାଚାର ଦ୍ୱାରା ଛିନ୍ନଛିଦ୍ର ହୋଇଯାଇଥିବା ଗ୍ରାମସମୂହକୁ ଯାଇ ପ୍ରତ୍ୟକ୍ଷରେ ସବୁକିଛି ଦେଖି ମୁଁ ଯେଉଁ ରିପୋର୍ଟ ତିଆରି କରି ଦେଶପ୍ରିୟଙ୍କ ହାତରେ ଦେଇଥିଲି, ତାହା ହିଁ ସମଗ୍ର ଅନୁସନ୍ଧାନର ଭିତ୍ତିରୂପେ କାର୍ଯ୍ୟ କରିଥିଲା ।

ଯେଉଁସବୁ ସମ୍ମାନନୀୟ ନାମକୁ ବର୍ତ୍ତମାନର ପିଢ଼ି ପ୍ରାୟ ଭୁଲିଯିବାରେ ଲାଗିଛି, ଯତୀନ୍ଦ୍ରମୋହନ ସେହିମାନଙ୍କ ଭିତରୁ ଜଣେ । ଏହି ମହାନ୍ ବ୍ୟକ୍ତିମାନଙ୍କ ମଧ୍ୟରୁ ଅନ୍ତତଃ ଜଣେ ବ୍ୟକ୍ତିଙ୍କର ଏବେ ଶୀଘ୍ର ଅନ୍ତର୍ହିତ ହୋଇ ଯାଉଥିବା ମୂଲ୍ୟଗୁଡ଼ିକୁ ଏବଂ ମ୍ଳାନ ହୋଇଯାଉଥିବା ସ୍ମୃତିକୁ ପୁନର୍ବାର ଏକତ୍ର ଗୁନ୍ଥି ଆଣିବା ଉଦ୍ଦେଶ୍ୟରେ ମୁଁ ଏହି କ୍ଷୁଦ୍ର ପ୍ରଚେଷ୍ଟାଟିକୁ କରିଛି । ଯଥେଷ୍ଟ ସାମଗ୍ରୀର ଅଭାବ ଏହି ଲେଖକର କାର୍ଯ୍ୟଟିର ସମ୍ପାଦନରେ ଏକ ବଡ଼ ଅନ୍ତରାୟ ହୋଇ କାର୍ଯ୍ୟ କରିଛି । ସୌଭାଗ୍ୟବଶତଃ, ମୋର ନିଜ ସଂଗ୍ରହରେ କେତେକ ଉପଯୋଗୀ ଦସ୍ତାବିଜ, କଟା ଖବରକାଗଜ ଏବଂ ପତ୍ରିକା ରହିଥିଲା, ଯାହାକି ମୋତେ ପ୍ରକୃତରେ ଅନେକ ସାହାଯ୍ୟ କରିପାରିଲା । ସର୍ବୋପରି, ଶ୍ରୀଯୁକ୍ତ ସେନଗୁପ୍ତଙ୍କର ପ୍ରଧାନ ପ୍ରଧାନ କାର୍ଯ୍ୟ ବିଷୟରେ ମୋର ବ୍ୟକ୍ତିଗତ ଜ୍ଞାନ ମଧ୍ୟ ରହିଥିଲା । ପୁନଶ୍ଚ, ମୋର ବଡ଼ଭାଇ ସ୍ୱର୍ଗତଃ ହେମେନ୍ଦ୍ରନାଥ ଦତ୍ତ ରଖିଯାଇଥିବା କେତେକ ସ୍ମୃତିକଥା ପ୍ରଭୂତ ଭାବରେ ସହାୟତା କଲା । ଜଣେ ଆଇନଜୀବୀ ତଥା ଜଣେ ପ୍ରେସ୍-ପ୍ରତିନିଧି ହିସାବରେ ସିଏ ବ୍ୟକ୍ତିଗତ ଭାବରେ ଶ୍ରୀଯୁକ୍ତ ଏବଂ ଶ୍ରୀମତୀ ସେନଗୁପ୍ତଙ୍କୁ ଜାଣିଥିଲେ । ବାରବାର ଓ ଦୀର୍ଘକାଳ ମୁଁ ଅସୁସ୍ଥ ରହୁଥିବାରୁ ମଧ୍ୟ ମୋର କାର୍ଯ୍ୟଟି ଆହୁରି ଅଧିକ କଠିନ ହୋଇପଡ଼ିଲା ।

ଅବଶ୍ୟ ମୁଁ ସୌଭାଗ୍ୟବଶତଃ ଏହି କାର୍ଯ୍ୟରେ ଅଗଣିତ ଅନେକ ବ୍ୟକ୍ତି ତଥା ଅନୁଷ୍ଠାନମାନଙ୍କଠାରୁ ଅକୁଣ୍ଠିତ ସମର୍ଥନ ଓ ଉତ୍ସାହ ଲାଭ କରିଥିଲି, କେବଳ ସେହି କାରଣରୁ ହିଁ ଏହି ବିଶାଳ କାର୍ଯ୍ୟଟି ସମ୍ଭବ ହୋଇପାରିଲା । ସର୍ବପ୍ରଥମେ ମୁଁ ଭାରତୀୟ ରାଜନୀତି ବିଜ୍ଞାନର ଜଣେ ବିଶାରଦ ସମ୍ମାନାସ୍ପଦ ଅଧ୍ୟାପକ ନିର୍ମଳ ଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ପାଖରେ ମୋର କୃତଜ୍ଞତା ଜ୍ଞାପନ କରିବି । ସିଏ ଯେ କେବଳ ଏହି ପୁସ୍ତକର 'ମୁଖବନ୍ଧ' ଲେଖି ଦେଇଛନ୍ତି ତା' ନୁହେଁ, ମାତ୍ର ମୁଁ ଏହି କାର୍ଯ୍ୟ କରୁଥିବାର ସଂପୂର୍ଣ୍ଣ ଅବଧିଟି ମଧ୍ୟରେ ଆପଣାର ମୂଲ୍ୟବାନ୍ ବିଚାର ଏବଂ ପରାମର୍ଶ ଦ୍ୱାରା ମୋର ସହାୟତା କରିଛନ୍ତି ।

ଯତୀନ୍ଦ୍ରମୋହନ ସେନଗୁପ୍ତଙ୍କ ପରେ କଲିକତାର ମେୟର୍ ଶ୍ରୀ ସନ୍ତୋଷ କୁମାର ବସୁଙ୍କ ପାଖରେ ମୁଁ କୃତଜ୍ଞ; ସିଏ ମୋତେ ଅନେକ ମୂଲ୍ୟବାନ୍ ପରାମର୍ଶ ଦେଇଛନ୍ତି । ପୁରୁଖା ସ୍ୱାଧୀନତା-ସଂଗ୍ରାମୀ ଓ ସମାଜସେବୀ ଶ୍ରୀ ସଞ୍ଜୀବ ପ୍ରସାଦ ସେନ୍, ଚଟ୍ଟଗ୍ରାମ ପରିଷଦର ଶ୍ରୀ ଶଚୀନ୍ଦ୍ରନାଥ ଗୁହ ଏବଂ ଫଣିଭୂଷଣ ମଜୁମଦାର, ଦେଶପ୍ରିୟଙ୍କର ପୂର୍ବତନ ବ୍ୟକ୍ତିଗତ ସେକ୍ରେଟାରୀ ଶ୍ରୀ ମୁଖେନ୍ଦୁ ବିକାଶ ସେନଗୁପ୍ତ, 'କଲିକତା ମୁନିସିପାଲ୍ ଗେଜେଟ'ର ପୂର୍ବତନ ସମ୍ପାଦକ ଶ୍ରୀ ରବୀନ୍ଦ୍ରନାଥ ଭଟ୍ଟାଚାର୍ଯ୍ୟ, ସୁବିଦିତ ଲେଖକ ଓ ସାମ୍ବାଦିକ ଶ୍ରୀ ଭବାନୀ ମୁଖୋପାଧ୍ୟାୟ ଏବଂ କଲିକତା ନ୍ୟାସନାଲ୍ ଲାଇବ୍ରେରୀର ଅସ୍ଥାୟୀ ଗ୍ରନ୍ଥାଗାରୀ ଶ୍ରୀଯୁକ୍ତ ବି. ବାନର୍ଜୀ ଚୌଧୁରୀ, - ଏମାନଙ୍କଠାରେ ମୁଁ ଅତ୍ୟନ୍ତ ଋଣୀ । କେତୋଟି ପ୍ରଖ୍ୟାତ ସମ୍ବାଦପତ୍ର, ବିଶେଷତଃ 'ଅମୃତ ବଜାର ପତ୍ରିକା' 'ଆଡ୍‌ଭାନ୍‌ସ,' ଦି ଷ୍ଟେଟ୍‌ସ୍‌ମ୍ୟାନ୍' ଏବଂ ' ଦି ମଡର୍ଣ୍ଣ ରିଭିଉ' ଓ 'କଲିକତା ମ୍ୟୁନିସିପାଲ୍ ଗେଜେଟ୍' ପ୍ରଭୃତି ପତ୍ରିକା ପାଖରେ ମୁଁ ଗଭୀର ଭାବରେ ଋଣୀ । ବସ୍ତୁତଃ ସମସାମୟିକ ସମ୍ବାଦପତ୍ରର ସ୍ତମ୍ଭମାନଙ୍କରେ ପ୍ରକାଶିତ ବିବରଣୀଗୁଡ଼ିକ ହିଁ ଏହି ବିଷୟରେ ମୁଖ୍ୟତଃ ମୋତେ ତଥ୍ୟମାନ ଆଣି ଯୋଗାଇ ଦେଇଛି; ଏବଂ ସେହି ବିଶିଷ୍ଟ ନେତାଙ୍କର ଅଳ୍ପ କେତେଜଣ ସହକର୍ମୀ ଏବଂ ପ୍ରଶଂସକମାନଙ୍କର ବ୍ୟକ୍ତିଗତ ଜ୍ଞାନରୁ ମୁଁ ଯାହାସବୁ ଜାଣିବାକୁ ପାଇଥିଲି, ଉକ୍ତ ପତ୍ରପତ୍ରିକା ଗୁଡ଼ିକ ସହିତ ମୁଁ ସେସବୁକୁ ମିଳାଇ କରି ଦେଖିଛି ।

ଶଚୀନ୍ ଦତ୍ତ

# ସୂଚିପତ୍ର

"…. ହୁଏତ ଏପରି ହୋଇପାରେ ଯେ, ଆମର ଅନେକ ସାଥୀ ଏବଂ କର୍ମୀଙ୍କୁ ସଂଗ୍ରାମର କ୍ଷେତ୍ରରେ ଜୀବନ ଦେବାକୁ ପଡ଼ିବ । ଆମର ମାତୃଭୂମି ସ୍ୱାଧୀନତା ଲାଭ କଲାପରେ ସେହି ବିଜୟ ଉତ୍ସବରେ ଅଂଶଗ୍ରହଣ କରିବା ହୁଏତ ଆମ ଅନେକଙ୍କ ଭାଗ୍ୟରେ ସମ୍ଭବ ହେବ ନାହିଁ । ତଥାପି ଆମକୁ ଅବିରତ ସଂଗ୍ରାମ କରିବାକୁ ହେବ ଏବଂ, ଯେତେବେଳେ ଆମର ଏହି ବାହୁ ଦୁଇଟି ଶେଷରେ ଶକ୍ତିହୀନ ହୋଇପଡ଼ିବେ, ସେତେବେଳେ ହଜାର ହଜାର ଅନ୍ୟ ବାହୁ ଅସମାପ୍ତ ସଂଗ୍ରାମଟିକୁ ଅବ୍ୟାହତ ରଖିବା ଲାଗି ଯେ ଅବଶ୍ୟ ଅଗ୍ରସର ହୋଇ ଆସିବେ, ଏହିପରି ଏକ ଅବିଚଳିତ ବିଶ୍ୱାସ ସହିତ ହିଁ ଆମକୁ ମରଣର ସମ୍ମୁଖୀନ ହେବାକୁ ପଡ଼ିବ ।"

— ଯତୀନ୍ଦ୍ରମୋହନ

# ପ୍ରଥମ ଜୀବନ

**ପିତାମାତା, ଜନ୍ମଗ୍ରହଣ, ସାମାଜିକ ପରିବେଶ**

ଯତୀନ୍ଦ୍ରମୋହନ ସେନଗୁପ୍ତ ଏକ ସୁବିଦିତ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାମହ ତ୍ରାହିରାମ ସେନ ଜଣେ ଆୟୁର୍ବେଦ ଚିକିତ୍ସକ ଥିଲେ ଏବଂ ପିତାମହୀ ମେନକା ଦେବୀ ଜଣେ ଧର୍ମପରାୟଣା ରମଣୀ ଥିଲେ । ସେମାନେ ଏ ବୈଦ୍ୟ-ପରିବାରର ବଂଶଧର ଥିଲେ, ବର୍ତ୍ତମାନ ବାଂଲାଦେଶର ଅନ୍ତର୍ଗତ ଚିଟାଗଂଗ, ଜିଲ୍ଲାର ପାଡିଆ ଥାନା ଅନ୍ତର୍ଗତ ବରମା ନାମକ ଏକ ସମୃଦ୍ଧିଶାଳୀ ଗ୍ରାମର ଅଧିବାସୀ ଥିଲେ । ସେମାନଙ୍କର ପୁତ୍ରକନ୍ୟାମାନଙ୍କ ମଧ୍ୟରେ ଯାତ୍ରାମୋହନ ଚତୁର୍ଥ ଥିଲେ ଓ ସମସ୍ତଙ୍କଠାରୁ ଅଧିକ ବୁଦ୍ଧିମାନ୍ ଥିଲେ । ସେ 1845 ମସିହାରେ ଜନ୍ମ ହୋଇଥିଲେ ମାତ୍ର ତାଙ୍କୁ ବାରବର୍ଷ ହୋଇଥିବା ସମୟରେ ସେ ପିତାଙ୍କୁ ହରାଇଲେ ଏବଂ ଏହି କାରଣରୁ ଦରିଦ୍ର ଏବଂ ଅସହାୟ ହୋଇପଡ଼ିଲେ । ଅନେକ ବାଧାବିଘ୍ନ ମଧ୍ୟରେ ତାଙ୍କୁ ଅଧ୍ୟୟନ କରିବାକୁ ହୋଇଥିଲା । ସକଳ ଅସୁବିଧା ସତ୍ତ୍ୱେ ସେ ସମ୍ମାନର ସହିତ ଏଣ୍ଟ୍ରାନ୍ସ୍ ପରୀକ୍ଷାରେ ପାସ୍ କରିଥିଲେ ଏବଂ ଏକ ଛାତ୍ରବୃତ୍ତି ମଧ୍ୟ ପାଇଥିଲେ । ବିଦ୍ୟାଳୟର ସର୍ବଶ୍ରେଷ୍ଠ ବାଳକ ରୂପେ ସେ ଚିଟାଗଙ୍ଗ୍‌ର ଡାକ୍ତର ଅନ୍ନଦା ଚରଣ ଖାସ୍ତଗିର୍‌ଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ସେତେବେଳେ ଖାସ୍ତଗିର କଲିକତାରେ ଜଣେ ଘରୋଇ ଡାକ୍ତର ହିସାବରେ ପ୍ରଖ୍ୟାତିଲାଭ କରିଥିଲେ । ପିଲାଟିର ପ୍ରତିଭାର ସୂଚନା ତାଙ୍କୁ ମୁଗ୍ଧ କରିଥିଲା ଏବଂ ସିଏ କଲିକତାର ଏକ କଲେଜରେ ଉଚ୍ଚତର ଶିକ୍ଷା ଲାଭ କରିବାକୁ ଯିବାଲାଗି ଯାତ୍ରାମୋହନଙ୍କୁ ଏକ ନିର୍ଦ୍ଦିଷ୍ଟ ପରିମାଣର ଆର୍ଥିକ ସାହାଯ୍ୟ ପ୍ରଦାନ କରିଥିଲେ । ସେହି କଲେଜରେ ଯାତ୍ରାମୋହନ ବି.ଏ. ପାସ୍ କଲେ ଓ ତା'ପରେ କୃତିତ୍ୱର ସହିତ ଆଇନ ପରୀକ୍ଷାରେ ବି ଉତ୍ତୀର୍ଣ୍ଣ ହେଲେ । ଏବଂ ତା'ପରେ ଚିଟାଗଙ୍ଗ୍‌କୁ ଆସି ଆଡ଼ଭୋକେଟ୍ ହେଲେ ଏବଂ ପୂର୍ବବଙ୍ଗର ଏହି ସାନ ଅଥଚ ପ୍ରଗତିଶୀଳ ସହରଟିରେ ଅଚିରେ ଜଣେ ଅତ୍ୟନ୍ତ ସଫଳ ଓକିଲ ହିସାବରେ ପ୍ରତିଷ୍ଠିତ ହୋଇଗଲେ ।

ଆପଣାର ଜନ୍ମଜାତ ପ୍ରତିଭା, ଆଇନ୍‌ଗତ ବିଚକ୍ଷଣତା ଏବଂ ବିଶେଷତଃ ସୂକ୍ଷ୍ମ ବୁଦ୍ଧିମତ୍ତା ସହିତ କୋର୍ଟରେ ଜେରା କରିବାର ଏବଂ ହୃଦ୍‌ବୋଧକାରୀ ଯୁକ୍ତିମାନ ଉପସ୍ଥାପନ କରିବାରେ ତାଙ୍କର ସାମର୍ଥ୍ୟ ତଥା ବ୍ୟବସାୟିକ ସାଧୁତା ଏହି ସବୁକିଛି ଫଳରେ ଯାତ୍ରାମୋହନ ମାତ୍ର ଅଳ୍ପ କେତେବର୍ଷ ମଧ୍ୟରେ ଚିଟାଗଙ୍ଗ୍ ଓକିଲଗୋଷ୍ଠୀର ନାୟକ ସ୍ଥାନକୁ ଉନ୍ନୀତ ହୋଇଯାଇ ପାରିଥିଲେ । ତା'ସହିତ ସାଧାରଣ କ୍ଷେତ୍ରରେ ଜଣେ ବିଶିଷ୍ଟ ବ୍ୟକ୍ତି ହିସାବରେ ମଧ୍ୟ ତାଙ୍କର ଖ୍ୟାତି ଚିଟାଗଙ୍ଗର ସୀମା ଡେଇଁ ଅନେକ ଦୂରକୁ ଚାଲି ଯାଇଥିଲା । ପରବର୍ତ୍ତୀ କାଳରେ ସେ ଉତ୍କୃଷ୍ଟ ସାମର୍ଥ୍ୟ ରହିଥିବା ଜଣେ ରାଜନୀତିକ ନେତା ମଧ୍ୟ ହୋଇପାରିଥିଲେ ଏବଂ ପୁନଃଜାଗ୍ରତ ହୋଇ ଆସୁଥିବା ବଙ୍ଗପ୍ରଦେଶରେ ଜଣେ ତୁଙ୍ଗସ୍ଥାନୀୟ ବ୍ୟକ୍ତିରୂପେ ସ୍ୱୀକୃତ ହେଲେ ।

ଆଇନ୍ ଏବଂ ସାଧାରଣ କ୍ଷେତ୍ରରେ ଯାତ୍ରାମୋହନଙ୍କର କୃତିତ୍ୱ ଦେଖି ଡାକ୍ତର ଖାସ୍ତଗିର ତାଙ୍କ ଉପରେ ଅତ୍ୟନ୍ତ ପ୍ରୀତ ହୋଇଥିଲେ ଏବଂ ଏହି ସୁଯୋଗ୍ୟ ଯୁବକଟି ସହିତ ତାଙ୍କର ଚତୁର୍ଥୀ ଓ

କନିଷ୍ଠା କନ୍ୟାକୁ ବିବାହ କରାଇ ଦେଇଥିଲେ । ତାଙ୍କର ଅନ୍ୟ ତିନି କନ୍ୟା ଶ୍ରୀଯୁକ୍ତ ବି.ଏଲ୍. ଗୁପ୍ତ, ଆଇ.ସି.ଏସ୍. (ପ୍ରଖ୍ୟାତ ଜିଲ୍ଲା ଏବଂ ଦୌରାଜଜ୍), ଶ୍ରୀ କରୁଣା ଚନ୍ଦ୍ର ସେନ (ବ୍ରହ୍ମାନନ୍ଦ କେଶବଚନ୍ଦ୍ର ସେନଙ୍କର ଜ୍ୟେଷ୍ଠ ପୁତ୍ର) ଏବଂ କଲିକତାର ଡାକ୍ତର ଏନ୍. ସି. ଦାସଙ୍କୁ ବିବାହ କରିଥିଲେ । ଡାକ୍ତର ଖାସ୍ତଗିରଙ୍କର ଆଉଜଣେ କନ୍ୟା କୁମୁଦିନୀ କଲିକତା ବିଶ୍ୱବିଦ୍ୟାଳୟର ପ୍ରଥମ ମହିଳା ଗ୍ରାଜୁଏଟ୍‌ମାନଙ୍କ ମଧ୍ୟରୁ ଜଣେ ଥିଲେ ଏବଂ କଲିକତା ଓ ବଥୁନ୍ କଲେଜର ଅଧ୍ୟକ୍ଷା ହୋଇଥିଲେ । ଡାକ୍ତର ଖାସ୍ତଗିର ପାଞ୍ଚ ପୁଅଙ୍କର ପିତା ହେବାର ମଧ୍ୟ ଗୌରବ ଅର୍ଜନ କରିଥିଲେ । ସେମାନଙ୍କ ମଧ୍ୟରେ ମହେନ୍ଦ୍ରଲାଲ ଜ୍ୟେଷ୍ଠ । ଦ୍ୱିତୀୟ ପୁତ୍ର ଜନେନ୍ଦ୍ରଲାଲ୍ ବିବାହ କରିନଥିଲେ ଏବଂ ଏକ ସରଳ ଜୀବନ ଯାପନ କରୁଥିଲେ । ତୃତୀୟ ପୁତ୍ର ହେଉଛନ୍ତି ସତ୍ୟେନ୍ଦ୍ରଲାଲ, ଚତୁର୍ଥ ପୁତ୍ର ହେମେନ୍ଦ୍ର ଲାଲ ବେଙ୍ଗଲ ସିଭିଲ୍ ସର୍ଭିସ୍‌ରେ ଅନେକ ଉଚ୍ଚକୁ ଯାଇଥିଲେ ଓ ଶେଷକୁ ଜଣେ ଜିଲ୍ଲା ମାଜିଷ୍ଟ୍ରେଟ୍ ହୋଇଥିଲେ । ପଞ୍ଚମ ଓ କନିଷ୍ଠ ପୁତ୍ର ସୁରେନ୍ଦ୍ରଲାଲ ଖାସ୍ତଗିର, ସେ ଲୋକମୁଖରେ ଅଧିକତର ପରିମାଣରେ ଏସ୍.ଏଲ୍ ଖାସ୍ତଗିର ନାମରେ ପରିଚିତ, ବାରିଷ୍ଟର ହୋଇଥିଲେ ଓ ଚିଟାଗଙ୍ଗ୍‌ର ଜଣେ ନେତୃସ୍ଥାନୀୟ ନାଗରିକ ଥିଲେ ।

ଏସ୍.ଏଲ.ଖାସ୍ତଗିରଙ୍କର ପତ୍ନୀ, ଶ୍ରୀମତୀ ତୁଷାରବାଳା ପ୍ରଖ୍ୟାତ ଆର.ସି.ଦତ୍ତ.ସି.ଆଇ.ଇ., ଆଇ.ସି.ଏସ୍.ଙ୍କର ଜଣେ ନାତୁଣୀ ଥିଲେ । ଶ୍ରୀଯୁକ୍ତ ଦତ୍ତ ଜଣେ ବିଖ୍ୟାତ ଡିଭିଜନାଲ୍ କମିଶନରର ପାହ୍ୟାକୁ ଉଠିଥିବା ସର୍ବପ୍ରଥମ ଭାରତୀୟ ଥିଲେ ଓ ପରବର୍ତ୍ତୀ କାଳରେ ଭାରତୀୟ ଜାତୀୟ କଂଗ୍ରେସର ସଭାପତି ମଧ୍ୟ ହେଲେ । ସେ ଜଣେ ପ୍ରଖ୍ୟାତ ଲେଖକ ଥିଲେ, ଇତିହାସକାର ଥିଲେ । ଶ୍ରୀମତୀ ଖାସ୍ତଗିର ଆପଣା କାଳର ଚିଟାଗଙ୍ଗରେ ଜଣେ ଉଲ୍ଲେଖଯୋଗ୍ୟା ନାରୀନେତ୍ରୀ ଥିଲେ, ନିଷ୍ଠାପର ସମାଜ-ସେବିକା ଥିଲେ, କଳା ପ୍ରତି ତାଙ୍କର ଶ୍ରଦ୍ଧା ଥିଲା ଓ ସେ ସ୍ୱୟଂ କଳାଶିଳ୍ପୀ ମଧ୍ୟ ଥିଲେ । ଆର୍.ସି.ଦତ୍ତଙ୍କର କନିଷ୍ଠା ଏବଂ ସୁଯୋଗ୍ୟ କନ୍ୟା ସପ୍ତତି ବର୍ଷୀୟା କୁମାରୀ ସୁଶୀଳା ଆପଣା ଜୀବନକାଳର ଶେଷ ଅଳ୍ପ କେତେ ବର୍ଷ ଖାସ୍ତଗିର ପରିବାର ସହିତ ଏକତ୍ର ବାସ କରୁଥିଲେ ଏବଂ ସେହି ଚିଟାଗଙ୍ଗ୍‌ଠାରେ ହିଁ 1942 ମସିହାରେ ପରଲୋକ ଗମନ କରିଥିଲେ । ଏହି ପୁସ୍ତକର ଲେଖକ ମଧ୍ୟ ସେହି ପରିବାର ସହିତ ସୁପରିଚିତ ଥିଲା ଏବଂ ସେହି ପରିବାର ସାମାଜିକ ଗତିବୃତ୍ତ ଅନେକ ସମୟରେ ଅତ୍ୟନ୍ତ ଜୀବନ୍ତ ହୋଇ ଉଠୁଥିଲା ।

ଡାକ୍ତର ଅନ୍ନଦାଚରଣ ଖାସ୍ତଗିର ଜଣେ ସୁବିଖ୍ୟାତ ଡାକ୍ତରୀ ଚିକିତ୍ସକ (ସେ ସ୍ତ୍ରୀରୋଗର ବିଶେଷଜ୍ଞ ଥିଲେ) ହେବା ସଙ୍ଗେ ସଙ୍ଗେ କଲିକତା ମେଡ଼ିକାଲ୍ ସ୍କୁଲର ସ୍ଥାପନା ମଧ୍ୟ କରିଥିଲେ ଏବଂ ସେହି ସ୍କୁଲ ପରବର୍ତ୍ତୀ କାଳରେ ବୃଦ୍ଧିପ୍ରାପ୍ତ ହୋଇ ବେଲଗଛିଆ ମେଡ଼ିକାଲ କଲେଜରେ ପରିଣତ ହୋଇଥିଲା ଏବଂ ଶେଷକୁ ଆହୁରି ଆଗକୁ ଯାଇ ଆର୍.ଜି.କର ମେଡ଼ିକାଲ କଲେଜର ★ନାମ ଧାରଣ କରିଥିଲା ।

ଡାକ୍ତର ଖାସ୍ତଗିର ଦ୍ୱାରକାନାଥ ଗାଙ୍ଗୁଲି, ପଣ୍ଡିତ ଶିବନାଥ ଶାସ୍ତ୍ରୀ, ବିପିନ ଚନ୍ଦ୍ର ପାଲ୍ (ଉଗ୍ର ଦେଶଭକ୍ତ) ଓ ସମକାଳୀନ ଅନ୍ୟମାନଙ୍କ ସହିତ ବ୍ରାହ୍ମ ସମାଜର ଜଣେ ବିଖ୍ୟାତ ନେତା ଥିଲେ । ନୂତନ ବଙ୍ଗଦେଶର ନିର୍ମାଣରେ ସେମାନଙ୍କର ଏକ ଉଲ୍ଲେଖଯୋଗ୍ୟ ଅବଦାନ ରହିଥିଲା । ପୁନଶ୍ଚ,

---

★ କଲିକତା ମେଡ଼ିକାଲ କଲେଜ ଡାକ୍ତର ଏ.ସି.ଖାସ୍ତଗିରଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା ବୋଲି ସେତେବେଳେ ଅନେକଙ୍କ ଲାଗି ଅଜ୍ଞାତ ଥିଲା ଏବଂ ବି.ଏମ୍.କଲେଜର ଧାତ୍ରୀବିଜ୍ଞାନର ଅଧ୍ୟାପକ ଡାକ୍ତର ସୁନ୍ଦରୀ ମୋହନ ଦାସଙ୍କର ଏକ ପତ୍ର ଅନୁସାରେ ସେହି କଲେଜର ଉଦ୍‌ଘାଟନ ଉତ୍ସବରେ ବଙ୍ଗଳାର ଗଭର୍ଣ୍ଣର ଲର୍ଡ଼ କାରମାଇକେଲ୍‌ଙ୍କ ଦ୍ୱାରା ଘୋଷଣା କରାଯାଇଥିଲା । ଡାକ୍ତର ଦାସ ଡାକ୍ତର ଖାସ୍ତଗିରଙ୍କୁ ଜଣେ 'ଜନହିତୈଷୀ'ବୋଲି ବର୍ଣ୍ଣନା କରିଥିଲେ ।

ଅନ୍ନଦାଚରଣ କଲିକତାରେ ଥିବା ସାଧାରଣ ବ୍ରାହ୍ମ ସମାଜର ସ୍ଥାପୟିତାମାନଙ୍କ ମଧ୍ୟରେ ଜଣେ ଥିଲେ । ଆପଣା କାଳର ଜଣେ ସୁବିଦିତ ଚିକିତ୍ସକ ଏବଂ ଜନନେତା ହେବା ସଙ୍ଗେ ସଙ୍ଗେ ଡାକ୍ତର ଖାସ୍ତଗିର କଲିକତାର ଜଣେ ଲୋକପ୍ରିୟ ବ୍ୟକ୍ତି ଏବଂ ପ୍ରମୁଖ ନାଗରିକ ମଧ୍ୟ ଥିଲେ । ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର ପ୍ରଭୃତି ତତ୍କାଳୀନ ବଙ୍ଗନେତାମାନଙ୍କ ସହିତ ତାଙ୍କର ପ୍ରଭାବଶାଳୀ ସମ୍ପର୍କ ରହିଥିଲା । ବିଦ୍ୟାସାଗରଙ୍କର ବିଧବା-ବିବାହ ଆନ୍ଦୋଳନରେ ସିଏ ତାଙ୍କର ଜଣେ ଅନ୍ତରଙ୍ଗ ସହକର୍ମୀ ରୂପେ କାର୍ଯ୍ୟ କରିଥିଲେ । (ଦ୍ରଷ୍ଟବ୍ୟ : କବି ନବୀନଚନ୍ଦ୍ର ସେନଙ୍କର ଆତ୍ମଜୀବନୀ - 'ଆମାର ଜୀବନ', ଷଷ୍ଠ ଖଣ୍ଡ)

ଚିଟାଗଙ୍ଗ୍‌ର ଜଣେ ପ୍ରମୁଖ ନାଗରିକ ହିସାବରେ ଡାକ୍ତର ଅନ୍ନଦା ଚରଣ 1875 ମସିହାରେ ପ୍ରତିଷ୍ଠିତ ସେହି ଜିଲ୍ଲାରେ ରହିଥିବା ସର୍ବପ୍ରଥମ ପ୍ରତିନିଧିମୂଳକ ସାଧାରଣ ଅନୁଷ୍ଠାନ ଚିଟାଗଙ୍ଗ୍ ଆସୋସିଏସନ୍‌ର 'ଜନକ'ଥିଲେ । ଏହି ଅନୁଷ୍ଠାନଟି ଭାରତୀୟ ଜାତୀୟ କଂଗ୍ରେସର (1885) ଦଶବର୍ଷ ପୂର୍ବରୁ ପ୍ରତିଷ୍ଠିତ ହୋଇଥିଲା ।

ଏହିପରି ଏକ ବୈଶିଷ୍ଟ୍ୟମୟ ପାରିବାରିକ ପରମ୍ପରା ସହିତ, ପିତା ଏବଂ ମାତା ଉଭୟ ପକ୍ଷରେ, - ଯତୀନ୍ଦ୍ରମୋହନ ବରମା ଗ୍ରାମରେ 1885 ମସିହା ଫେବୃଆରୀ 22 ତାରିଖରେ ଜନ୍ମଗ୍ରହଣ କରିଥିଲେ । ସିଏ ତାଙ୍କ ପିତାମାତାଙ୍କର ତୃତୀୟ ସନ୍ତାନ ତଥା ଦ୍ୱିତୀୟ ପୁତ୍ରସନ୍ତାନ ଥିଲେ ।

## ସ୍ୱପ୍ନ-ସନ୍ତାନର ଅନୁଶ୍ରୁତି

ପ୍ରାୟ ନବେବର୍ଷ ପୂର୍ବେ ଗତ ଶତାବ୍ଦୀର ଅଷ୍ଟମ ଦଶକରେ ଏହି ସନ୍ତାନଟିର ଜନ୍ମ ହୋଇଥିଲା । ତାଙ୍କର ମାଆ କରୁଣାର ଦୃଷ୍ଟାନ୍ତ ଥିଲେ, ଧର୍ମପରାୟଣା ଥିଲେ । କଥିତ ଅଛି ଯେ, ପିଲାଟି ଗର୍ଭରେ ରହିଥିଲା ବେଳେ ଏକାଧିକ ରାତ୍ରିରେ ସେ ଚମତ୍କାର ସ୍ୱପ୍ନମାନ ଦେଖିଥିଲେ; ମନୋହର ସମୁଦ୍ର-ଜଳ ଉପରେ ଫୁଟିଥିବା ଗୋଟିଏ ନୀଳବର୍ଣ୍ଣ ପଦ୍ମ ଉପରେ ଗୋଟିଏ ନୀଳବର୍ଣ୍ଣ ଉଜ୍ଜ୍ୱଳ ବାଳକ କ୍ରୀଡ଼ା କରୁଥିଲା । ବସ୍ତୁତଃ, ତାହାର ଜନ୍ମକ୍ଷଣରୁ ହିଁ ପିଲାଟିର ଦେହରୁ ଉଜ୍ଜ୍ୱଳ ଜ୍ୟୋତି ବିକୀର୍ଣ୍ଣ ହୋଇ ପଡୁଥିଲା । ପିଲାଟି ଅତ୍ୟନ୍ତ ସୁସ୍ଥ ସବଳ ଥିଲା ଓ ସେହି ବୃହତ୍ ପରିବାର ତଥା ପରିବେଶର ସମସ୍ତଙ୍କ ଲାଗି ସ୍ନେହ ଏବଂ ଆନନ୍ଦର ଆଧାର ହୋଇ ରହିଥିଲା । ଏକ ବୃହତ୍ ଜୀବନର ସମସ୍ତ ସଙ୍କେତ ସହିତ ସିଏ ବଢ଼ିବାକୁ ଲାଗିଲା । ବଡ଼ ହେଉଥିବାର ଏହି କେତୋଟି ବର୍ଷ ମଧ୍ୟରେ ସ୍ୱପ୍ନ-ସନ୍ତାନଟି ଅନେକ ସାହସ ମଧ୍ୟ ଅର୍ଜନ କରିପାରିଲା, କାରଣ ତା'ପାଖରେ ଲଢ଼ିବା ଲାଗି ଶକ୍ତି ରହିଥିଲା, ବିଜୟଲାଭ କରିବାର ବିଶ୍ୱାସ ମଧ୍ୟ ରହିଥିଲା । ତା'ର ଅଟଳ 'ଇଚ୍ଛାଶକ୍ତି' ହିଁ ତା'ର ଲକ୍ଷ୍ୟ ପର୍ଯ୍ୟନ୍ତ ଆପଣାର ପଥଟିକୁ ତିଆରି କରିନେବାରେ ଲାଗିଲା ।

ଏଇ ଶିଶୁଟି ହେଉଛି ଯତୀନ୍ଦ୍ରମୋହନ ସେନଗୁପ୍ତ - ଏକ ଐତିହାସିକ ତଥା ସ୍ମରଣୀୟ ସମୟରେ ହିଁ ତା'ର ଜନ୍ମ ହୋଇଥିଲା ।

## ଜନ୍ମବର୍ଷ - 1885

ଅଠରଶହ ପଞ୍ଚାଅଶୀ, ଏକ ଅତ୍ୟନ୍ତ ସ୍ମରଣୀୟ ବର୍ଷ । ସେତେବେଳକୁ ଭାରତବର୍ଷ ଆପଣାର ଜାତୀୟ ଉତ୍ଥାନର ଜୀବନ ଏବଂ ଭାବଆତ୍ମାଟି ମଧ୍ୟକୁ ଜାଗ୍ରତ ହୋଇ ଉଠୁଥିଲା । ସେହି ବର୍ଷ ଭାରତୀୟ ଜାତୀୟ କଂଗ୍ରେସର ଜନ୍ମ ହେଲା । ବ୍ରିଟିଶ୍ ଶାସନାଧୀନତା ବିରୋଧରେ କ୍ରମଶଃ ବୃଦ୍ଧି ପାଉଥିବା

କ୍ରୋଧକୁ ପ୍ରକଟ କରିବା ଉଦ୍ଦେଶ୍ୟରେ ସେହି ସମୟର ସଚେତନ ନାଗରିକମାନଙ୍କ ଭିତରେ ରହିଥିବା ରାଜନୀତି-ଆଗ୍ରହୀ ବିଶେଷ ବର୍ଗଟିଏ ଏକ ମୁଖ୍ୟ ମଞ୍ଚରୂପେ କଂଗ୍ରେସର ପ୍ରତିଷ୍ଠା ହୋଇଥିଲା । ପରବର୍ତ୍ତୀ ବର୍ଷଗୁଡ଼ିକରେ ଦେଶର ବୃହତ୍ତମ ରାଜନୀତିକ ସଂସ୍ଥା ହିସାବରେ କଂଗ୍ରେସର ନେତୃତ୍ୱ ନାନା ପରିବର୍ତ୍ତନର ସମ୍ମୁଖୀନ ହେଉଥିଲା, ତାହା ସମାଜର ଉଚ୍ଚତର ବର୍ଗଙ୍କ ହାତରୁ ଅଧିକରୁ ଅଧିକ ପରିମାଣରେ ସ୍ପନ୍ଦନଯୁକ୍ତ ରାଜନୀତିକ ତଥା ଜାତୀୟ ଭବିଷ୍ୟାକାଙ୍କ୍ଷୀ ଦ୍ୱାରା ଗତିଶୀଳ ହୋଇ ରହିଥିବା ବୃହତ୍ତର ଗୋଷ୍ଠୀଗୁଡ଼ିକଙ୍କ ହାତକୁ ଚାଲି ଯାଇଥିଲା । ପ୍ରାୟ ଦୁଇଟି ଦଶକ ମଧ୍ୟରେ ବଙ୍ଗ-ବିଚ୍ଛେଦ ଓ ସ୍ୱଦେଶୀ ଆନ୍ଦୋଳନ (1905-11) ଘଟଣାଗୁଡ଼ିକ ଦ୍ୱାରା ତାହା ଏକ ଚୂଡାନ୍ତ ରେଖାକୁ ସ୍ପର୍ଶ କରିଥିଲା । ଦେଶପ୍ରେମୀ ମାନଙ୍କର ଶିବିରରେ ଉତ୍ଥାନର ଏକ ନୂତନ ପ୍ରେରଣା ସମାଗତ ହୋଇ ଆସିଥିଲା ଏବଂ ପ୍ରାୟ ସମଗ୍ର ଭାରତବର୍ଷରେ ବ୍ୟାପି ଯାଇଥିଲା । ବିଦେଶୀ ଶାସକମାନେ ଏକ ଆତଙ୍କରାଜର ପ୍ରବର୍ତ୍ତନ କଲେ ଏବଂ ତାହା ଜାଲିଆନାୱାଲାବାଗ୍ ହତ୍ୟାକାଣ୍ଡରେ ଆପଣାର ଚରମ ସୀମା ସ୍ପର୍ଶ କରିଥିଲା । ଏହା ଫଳରେ ଜାତୀୟ କଂଗ୍ରେସର ଆନ୍ଦୋଳନ ଅତୀବ ଗତିଶୀଳତା ଲାଭ କଲା ଏବଂ ସେହି ଦୃଶ୍ୟପଟ ଉପରେ ମହାତ୍ମା ଗାନ୍ଧିଙ୍କର ଆବିର୍ଭାବ ସହିତ (1919-21) ସମସ୍ତ ଜାତିର ନେତୃତ୍ୱ ଗ୍ରହଣ କରିଥିଲା । ପରବର୍ତ୍ତୀ ଘଟଣା ଉଜ୍ଜ୍ୱଳ ବର୍ଷଗୁଡ଼ିକୁ ଅତିକ୍ରମ କରି ସେହି ଆନ୍ଦୋଳନ 1947 ମସିହା ଅଗଷ୍ଟ 15 ତାରିଖରେ ଭାରତଭୂମିର ସ୍ୱାଧୀନତା ପ୍ରାପ୍ତି ସହିତ ଆପଣାର ପୂର୍ଣ୍ଣତା ଲାଭ କଲା ।

ଏହିପରି ଏକ ଯୁଗାନ୍ତକାରୀ ପର୍ଯ୍ୟାୟର ପ୍ରାରମ୍ଭରେ, ଏହାକୁ ପ୍ରକୃତରେ ଏକ ଆନନ୍ଦଦାୟକ ସଂଯୋଗ ବୋଲି କୁହାଯିବ, - ଏହା ପ୍ରାୟ ଈଶ୍ୱର ନିର୍ଦ୍ଦିଷ୍ଟ ହୋଇ ରହିଥିଲା - ଯେ ଯତୀନ୍ଦ୍ରମୋହନ ସେହି ସ୍ମରଣୀୟ ବର୍ଷ 1885ରେ ଜନ୍ମଗ୍ରହଣ କରିଥିଲେ; ଯାତ୍ରାମୋହନ ସେନଙ୍କ ପରି ତାଙ୍କର ଜଣେ ବିଶିଷ୍ଟ ପିତା ଥିଲେ, ଏବଂ ଯୁଗ ଯୁଗ ଧରି ନିୟତିର ଏକ କ୍ରୀଡ଼ାଭୂମି ରହିଥିବା ଚଟଗ୍ରାମ ଜିଲ୍ଲାରେ ହିଁ ସେ ଜନ୍ମଗ୍ରହଣ କରିଥିଲେ ।

ପ୍ରକୃତିମାତାର କ୍ରୋଡ଼ରେ ଭୂମିଷ୍ଠ ଏବଂ ଲାଳିତପାଳିତ ହୋଇ ଓ ସେହି ଗ୍ରାମଭୂମିର ପ୍ରାଣଶକ୍ତି ଦ୍ୱାରା ଶିକ୍ଷା ତଥା ପ୍ରେରଣା ପାଇ ବାଳକ ଯତୀନ୍ଦ୍ରମୋହନ ସ୍ୱାଧୀନତାର ଏକ ବାତାବରଣ ମଧ୍ୟରେ ହିଁ ବଡ଼ ହୋଇଥିଲେ । ପ୍ରାୟ ତାଙ୍କର ଶୈଶବ ସମୟରୁ ହିଁ ଏହି ପୃଷ୍ଠଭୂମି ତାଙ୍କର ଜୀବନ ଏବଂ କରଣିକୁ ଏକ ନିର୍ଦ୍ଦିଷ୍ଟ ଆକାର ଦେଇଥିଲା ।

## ପରିବାର

ଯାତ୍ରାମୋହନ ଏବଂ ବିନୋଦିନୀଙ୍କ କୋଳରେ ତେରୋଟି ସନ୍ତାନ ଜନ୍ମ ହୋଇଥିଲେ । ସବାବଡ଼ ମନମୋହନ ବିବାହର ଅବ୍ୟବହିତ ପରେ ପରଲୋକ ଗମନ କଲେ ଓ ଆପଣାର ଏକମାତ୍ର ବିଧବା ପତ୍ନୀଙ୍କୁ ଛାଡ଼ିଗଲେ । ତାଙ୍କର ନାମ ହେଉଛି କୁସୁମ କୁମାରୀ ଓ ସିଏ ତାଙ୍କ ସମୟରେ ସାମାଜିକ ସଂପର୍କଗୁଡ଼ିକର କ୍ଷେତ୍ରରେ ଅଚିରେ ଏକ ସକ୍ରିୟ ବ୍ୟକ୍ତିତ୍ୱର ପରିଚୟ ଦେଇଥିଲେ । ଅନ୍ୟମାନଙ୍କ ମଧ୍ୟରେ, ତୃତୀୟ ପୁତ୍ର ନୀରେନ୍ଦ୍ରମୋହନ ଲଣ୍ଡନରୁ ଏମ୍.ଡ଼ି. ଏବଂ ଏମ୍.ଆର୍.ସି.ପି. ଡିଗ୍ରୀ ଲାଭ କରିଥିଲେ । ମାତ୍ର ସେହି ଲଣ୍ଡନରେ ତାଙ୍କର ମୃତ୍ୟୁ ହେଲା । ତାଙ୍କର ଇଂରେଜ ସହଧର୍ମିଣୀ ଇଭା ମଧ୍ୟ ଅଳ୍ପ ବୟସରେ ପ୍ରାଣତ୍ୟାଗ କରିଥିଲେ । ସେମାନଙ୍କର ଏକମାତ୍ର କନ୍ୟା ଏଭଲିନ୍‌କୁ ପରେ ତା'ର କକା ଯତୀନ୍ଦ୍ରମୋହନ ଓ ତାଙ୍କର ଇଂରେଜ ପତ୍ନୀ ନେଲୀ ଭାରତବର୍ଷକୁ ନେଇ ଆସିଥିଲେ ।

ସେମାନେ ତାହାକୁ ଆପଣାର କନ୍ୟାପରି ଲାଳନପାଳନ କରିଥିଲେ । ଶ୍ରୀମତୀ ଏଭଲିନ୍ ପେଡିଡ୍ ବର୍ତ୍ତମାନ ନିଜର ପିଲାମାନଙ୍କ ସହିତ ସୁଇଜରଲ୍ୟାଣ୍ଡରେ ବାସ କରୁଛନ୍ତି ।

ରନେନ୍ଦ୍ରମୋହନ ସେନଗୁପ୍ତ ହେଉଛନ୍ତି ଯାତ୍ରାମୋହନଙ୍କ ସବା ସାନ ପୁଅ । ସେ କେମ୍ବ୍ରିଜ୍‌ରେ ଶିକ୍ଷାଲାଭ କରିଥିଲେ, ସେହିଠାରୁ ବି.ଏ.ପାସ କଲେ ଏବଂ ଭାରତବର୍ଷକୁ ଫେରି ସର୍ବଦା ବଡ଼ଭାଇ ଯତୀନ୍ଦ୍ରମୋହନଙ୍କର ପାଶ୍ୱବର୍ତ୍ତୀ ହୋଇ ରହିଥିଲେ । ସିଏ ଦେଶପ୍ରିୟଙ୍କ ଦ୍ୱାରା ପ୍ରତିଷ୍ଠିତ 'ଆଡ୍‌ଭାନ୍ସ' ଦୈନିକ କାଗଜର ପରିଚାଳକ ମଧ୍ୟ ହୋଇଥିଲେ । ଯତୀନ୍ଦ୍ରମୋହନଙ୍କର ମୃତ୍ୟୁପରେ ରନେନ୍ଦ୍ର ଅନ୍ୟ ବିଭିନ୍ନ ସଂସ୍ଥାରେ କାର୍ଯ୍ୟ କରିଥିଲେ ଏବଂ ଶେଷରେ ବର୍ନ୍‌ପୁରଠାରେ ଥିବା ମାର୍ଟିନ୍ ବର୍ନ୍ କୋମ୍ପାନୀରେ ଏକ ଶୀର୍ଷସ୍ଥାନକୁ ଉନ୍ନୀତ ହୋଇଯାଇ ପାରିଥିଲେ । (ଇତି ମଧ୍ୟରେ ସେ ଅବସର ଗ୍ରହଣ କରିଛନ୍ତି) ତାଙ୍କର ପତ୍ନୀ ଶ୍ରୀମତୀ ପଦ୍ମିନୀ ଲେଖିକା ହିସାବରେ ସୁନାମ ଅର୍ଜନ କରିଛନ୍ତି । ସେମାନଙ୍କର ଭଉଣୀ ଶ୍ରୀମତୀ ସୁବ୍ରତା ଚକ୍ରବର୍ତ୍ତୀ ବି.ଏ.ପାସ୍ କରିଥିଲେ । ସିଏ ମଧ୍ୟ ଅଳ୍ପ ବୟସରେ ଇହଧାମ ତ୍ୟାଗ କଲେ । ଯାତ୍ରାମୋହନଙ୍କର ଅନ୍ୟ ପୁଅମାନେ ଆଂଶିକ ଭାବରେ ଚିଟାଗଙ୍ଗ୍ ସହରରେ ବାସ କରୁଥିଲେ ଓ ଆଂଶିକ ଭାବରେ ନିଜ ଗ୍ରାମରେ ଥିବା ଘରେ ବାସ କରୁଥିଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଅଳ୍ପ ବୟସରେ ପରଲୋକ ଗମନ କରିଥିଲେ ।

ନେଲୀ ଏବଂ ଯତୀନ୍ଦ୍ରମୋହନଙ୍କର ତିନି ପୁଅ ଥିଲେ । ସବାବଡ଼ ପୁଅ ଶିଶିର (ଜନ୍ମ 1910 ମଇ) କଲିକତାର ଏକ ବାଣିଜ୍ୟ-ସଂସ୍ଥାରେ କାର୍ଯ୍ୟ କରି ଉଚ୍ଚ ପଦକୁ ଯାଇପାରିଥିଲେ ଏବଂ ଅନ୍ୟ ଦୁଇଜଣ, ଅମର ଓ ଅନିଲ, ଅଳ୍ପ ବୟସରେ ସଂସାରରୁ ବିଦାୟ ନେଇଥିଲେ । ଜଣେ ମହାନ ସ୍ୱାଧୀନତା-ସଂଗ୍ରାମୀ ଏବଂ ସରକାରୀ ବନ୍ଦୀ ହିସାବରେ ବାପାଙ୍କର ମୃତ୍ୟୁପରେ ଶିଶିର ସେନଗୁପ୍ତଙ୍କୁ ଆପଣାର ପ୍ରଖ୍ୟାତ ଜନନୀ ଶ୍ରୀମତୀ ନେଲୀ ସେନଗୁପ୍ତଙ୍କୁ ମଧ୍ୟ ହରାଇବାକୁ ପଡ଼ିଲା (ଅକ୍ଟୋବର, 23,1973) । ସେ 87 ବର୍ଷର ପରିପକ୍ୱ ଜୀବନରେ ଇହଧାମରୁ ବିଦାୟ ନେଇଥିଲେ । ସମଗ୍ର ଜାତି ତାଙ୍କର ମୃତ୍ୟୁରେ ଗଭୀର ଭାବରେ ଶୋକାଚ୍ଛନ୍ନ ହୋଇ ପଡ଼ିଥିଲା । 67 ବର୍ଷ ବୟସରେ ଶିଶିର ସେନଗୁପ୍ତଙ୍କର ଦାରୁଣ ମୃତ୍ୟୁ (ସେପ୍ଟେମ୍ବର 4, 1977) ତାଙ୍କର ପତ୍ନୀ ଆଇଭି, କନ୍ୟା ଅନ୍ୱେଷା ଏବଂ ଅନ୍ୟମାନଙ୍କୁ ଶୋକାଭିଭୂତ କରିଥିଲା ।

## ଶିକ୍ଷା ଓ କର୍ମଜୀବନ

ଯତୀନ୍ଦ୍ରମୋହନ ବୟସ ଓ ଜ୍ଞାନରେ ବଢ଼ିବାକୁ ଲାଗିଲେ । ତାଙ୍କର ଚେହେରା ସୁନ୍ଦର ଥିଲା, ସେ ସର୍ବଦା କର୍ମଠ ଓ ବୁଦ୍ଧିମାନ୍ ଥିଲେ; ତାଙ୍କର ବୁଦ୍ଧି ତୀକ୍ଷ୍ଣ ଥିଲା ଓ ସିଏ ଖୁବ୍ ଶୀଘ୍ର ବର୍ଣ୍ଣମାଳାର ଅକ୍ଷରଗୁଡ଼ିକୁ ଶିଖି ଯାଇଥିଲେ । ତାଙ୍କର ଶରୀର ସୁସ୍ଥ ଥିଲା ଓ ଗ୍ରାମର ଅଧିକାଂଶ ବାଳକଙ୍କୁ ସିଏ ଖେଳରେ ଟପି ଯାଉଥିଲେ । ସେ ପ୍ରଥମେ ଜଣେ ଘରୋଇ ଶିକ୍ଷକଙ୍କ ପାଖରେ ପାଠ ପଢ଼ିଲେ ଓ ତା'ପରେ ନଅବର୍ଷ ବୟସ ପର୍ଯ୍ୟନ୍ତ ସ୍ଥାନୀୟ ଗ୍ରାମ-ପାଠଶାଳାକୁ ଯାଇଥିଲେ । ପ୍ରାୟ ଦୁଇବର୍ଷ ପରେ ସେ ସହରକୁ ଗଲେ । ସେଠାରେ ଚିଟାଗଙ୍ଗ କଲେଜିଏଟ୍ ସ୍କୁଲରେ ନାମ ଲେଖାଇ ଦୁଇ ବର୍ଷ ଅଧ୍ୟୟନ କରିଥିଲେ । (1894-96) ତା'ପରେ ତାଙ୍କର ପିତା ଯାତ୍ରାମୋହନ ଚିଟାଗଙ୍ଗରୁ ବଙ୍ଗ ଲେଜିସ୍‌ଲେଟିଭ୍ କାଉନ୍‌ସିଲର ଜଣେ ସଦସ୍ୟରୂପେ ନିର୍ବାଚିତ ହୋଇଥିଲେ (ଶାସନ-ସଂସ୍କାର ଲାଗୁ ହେବା ପୂର୍ବରୁ) । ତେଣୁ ତାଙ୍କୁ ବେଶ୍ ଦୀର୍ଘ ସମୟ କଲିକତାରେ ହିଁ ଅବସ୍ଥାନ କରିବାକୁ ପଡୁଥିଲା । ଏହି ଅନୁକୂଳ ପରିସ୍ଥିତିର ସୁଯୋଗ ନେଇ ସେ ଯତୀନ୍ଦ୍ରମୋହନଙ୍କୁ ଉଚ୍ଚତର ଶିକ୍ଷା ପାଇଁ କଲିକତାକୁ

ନେଇ ଆସିଲେ । ପ୍ରଥମେ ଭବାନୀପୁରରେ ଥିବା ସାଉଥ୍ ସବର୍‌ବନ୍ ସ୍କୁଲରେ ତାଙ୍କର ନାମ ଲେଖାଇ ଦେଇଥିଲେ ଓ ତା'ପରେ ତାଙ୍କୁ ହେଆର୍ ସ୍କୁଲକୁ ନେଇ ଆସିଥିଲେ । ଯତୀନ୍ଦ୍ର ସେହି ସ୍କୁଲରୁ ଏନ୍‌ଟ୍ରାନ୍ସ୍ ପରୀକ୍ଷା ପାସ୍ କଲେ ।

ବାଲ୍ୟକାଳର ଏହି ବର୍ଷଗୁଡ଼ିକରେ ଯତୀନ୍‌ଙ୍କ ମନରେ ଭବିଷ୍ୟତ ବିଷୟରେ କେତେ କେତେ ଉଚ୍ଚ ଆଶା ଉଙ୍କି ମାରିବାରେ ଲାଗୁଥିଲା । ସ୍କୁଲ-ପାଠ ଶେଷକରି ସେ ପ୍ରେସିଡେନ୍ସି କଲେଜକୁ ଗଲେ, ଆପଣାର ସହପାଠୀ ରୂପେ ସେଠାରେ ସେ ବିହାରର ରାଜେନ୍ଦ୍ର (ପରବର୍ତ୍ତୀ କାଳରେ ଭାରତର ରାଷ୍ଟ୍ରପତି), ଦେବୀ ପ୍ରସାଦ ଖଇତାନ୍, ମନିମୋହନ ସେନ୍, ଡି.ସି.ସେନ୍, ଜେ. ଏନ୍. ମଜୁମ୍‌ଦାର, ସୁରେଶଚନ୍ଦ୍ର ବାନାର୍ଜୀ ପ୍ରଭୃତି ଭବିଷ୍ୟତର ପ୍ରଖ୍ୟାତନାମା ବ୍ୟକ୍ତିମାନଙ୍କୁ ପାଇଲେ, ଯେଉଁମାନେ କି ଆପଣା ଆପଣାର କ୍ଷେତ୍ରରେ ପରେ ପ୍ରଖ୍ୟାତି ଓ ବୈଶିଷ୍ଟ୍ୟ ଲାଭ କରିଥିଲେ ।

ଏହି ପ୍ରସିଦ୍ଧ କଲେଜଟିରେ ଯତୀନ୍ଦ୍ରମୋହନ ପ୍ରବୀଣ ଶିକ୍ଷକ ଅଧ୍ୟାପକ ଏମ୍. ଏମ୍. ପର୍ସିଭାଲଙ୍କ ସଂସ୍ପର୍ଶରେ ଆସିବାର ସୌଭାଗ୍ୟ ଲାଭ କରିଥିଲେ । ପର୍ସିଭାଲଙ୍କର ଛାତ୍ରମାନେ ପରେ ଭାରତର ସାଧାରଣ ଜୀବନରେ ବିଶିଷ୍ଟ ସ୍ଥାନମାନଙ୍କର ଅଧିକାରୀ ହୋଇଥିଲେ । ମୁଁ ଏଠାରେ ଗର୍ବର ସହିତ ଉଲ୍ଲେଖ କରିବାକୁ ଚାହୁଁଛି ଯେ, ଏହି ସଛତୁଲ୍ୟ ଅଧ୍ୟାପକଙ୍କର ବିଶିଷ୍ଟ ଛାତ୍ରମାନଙ୍କ ମଧ୍ୟରୁ ମୋର ଏକାଧିକଙ୍କ ବିଷୟରେ ଏକ ସଂକ୍ଷିପ୍ତ ଅଥଚ ମହତ୍ତ୍ୱପୂର୍ଣ୍ଣ ଅବଲୋକନ କରିବାର ଅସାଧାରଣ ସୌଭାଗ୍ୟ ହୋଇଥିଲା । 1931 ମସିହାରେ ଲଣ୍ଡନରେ ତାଙ୍କର ମୃତ୍ୟୁ ହେବାପରେ ତାଙ୍କର ବ୍ୟକ୍ତିଗତ ନଥିପତ୍ର ଓ କାଗଜସବୁ ମୋର ହସ୍ତଗତ ହୋଇଥିଲା ଓ ସେହିଗୁଡ଼ିକର ସାହାଯ୍ୟରେ ମୁଁ ସେହି ସୌଭାଗ୍ୟର ଅଧିକାରୀ ହୋଇଥିଲି । ସେହି ଛାତ୍ରମାନଙ୍କ ମଧ୍ୟରେ ଯତୀନ୍ଦ୍ରମୋହନଙ୍କର ହିଁ ନିଃସନ୍ଦେହ ଭାବରେ ଏକ ପ୍ରମୁଖ ସ୍ଥାନ ରହିଥିଲା । ଏଠାରେ ଉଲ୍ଲେଖ କରିବା ଉଚିତ ଯେ, ଅଧ୍ୟାପକ ପର୍ସିଭଲ ଓ ଯାତ୍ରାମୋହନ ଉଭୟେ ଚିଟାଗଙ୍ଗର ଲୋକ ଥିଲେ, ଦୁହେଁ ପରସ୍ପରର ବ୍ୟକ୍ତିଗତ ବନ୍ଧୁଥିଲେ, ଏବଂ ସେ କେବଳ କଲେଜରେ ଯେ ଅତ୍ୟନ୍ତ ସ୍ନେହର ସହିତ ଯତୀନ୍ଦ୍ରମୋହନଙ୍କ ବିଷୟରେ ସମସ୍ତ ଯତ୍ନ ନେଉଥିଲେ ତା'ନୁହେଁ, ମାତ୍ର ପରେ, ଯେତେବେଳେ 1921ରେ ଓ ତା'ପରେ ଯତୀନ୍ଦ୍ରମୋହନ ଦେଶର ମୁକ୍ତିସଂଗ୍ରାମରେ ଜଣେ ଶୀର୍ଷସ୍ଥାନୀୟ ନେତାରୂପେ ପ୍ରତିଷ୍ଠିତ ହେଲେ, ସେତେବେଳେ ମଧ ଅତ୍ୟନ୍ତ ଆଗ୍ରହର ସହିତ ସେ ତାଙ୍କର ଖବର ରଖୁଥିଲେ ।

ମାତ୍ର, ପ୍ରେସିଡେନ୍ସି କଲେଜରେ ଯତୀନ୍‌ଙ୍କର ପାଠପଢ଼ା ଅଧାରୁ ବନ୍ଦ ହୋଇ ଯାଇଥିଲା, କାରଣ ନିଜର ଗୋଟିଏ ପୁଅକୁ ବାରିଷ୍ଟର ରୂପେ ଦେଖିବାଲାଗି ତାଙ୍କ ବାପାଙ୍କର ଏକ ଉଚ୍ଚାକାଙ୍କ୍ଷା ରହିଥିଲା । ଆପଣାର ସର୍ବୋତମୁଖୀ ପ୍ରତିଭା ଯୋଗୁଁ ଯତୀନ୍ଦ୍ରମୋହନ ଯାତ୍ରାମୋହନଙ୍କ ଆଖିକୁ ଜଣେ ଭାବୀ ଆଇନଜୀବୀର ସମ୍ଭାବନାକୁ ବହନ କରୁଥିବା ପରି ବୋଧ ହେଲେ । ବନ୍ଧୁ ଓ ଶୁଭେଚ୍ଛୁମାନେ ପୁଅର ଉଚ୍ଚଶିକ୍ଷା ପାଇଁ ଓ ଏକ ଆଇନଜୀବୀ ହୋଇ ପାରିବାର ଆବଶ୍ୟକ ପ୍ରସ୍ତୁତି ଲାଗି ତାଙ୍କୁ ବିଲାତ ପଠାଇ ଦେବାକୁ ତାଙ୍କୁ ପରାମର୍ଶ ଦେଇଥିଲେ । ଯତୀନ୍ ବିଲାତ ଯିବାର ପ୍ରାକ୍ କାଳରେ ତାଙ୍କର ମାଆ ଅବଶ୍ୟ ଆପଣାର ପ୍ରିୟ ପୁଅ ପାଖରୁ ଦୂରରେ ରହିବାର ଦୁଃଖକୁ ଅତ୍ୟନ୍ତ ତୀବ୍ର ଭାବରେ ଅନୁଭବ କରିଥିଲେ । ତଥାପି ପୁଅକୁ ସେ ନିଜର ଆଶୀର୍ବାଦ ପ୍ରଦାନ କରିଥିଲେ ।

ଲଣ୍ଡନରେ ପହଞ୍ଚି ଯତୀନ୍ଦ୍ରମୋହନ କେମ୍ବ୍ରିଜର ଡାଉନିଙ୍ଗ କଲେଜରେ ନାମ ଲେଖାଇଲେ । ଡିଗ୍ରୀ ପାଠ ଲାଗି ତାଙ୍କର ଅଧ୍ୟୟନ ସନ୍ତୋଷଜନକ ଭାବରେ ଗତି କରିଥିଲା । ତା'ସହିତ, ସିଏ କ୍ରୀଡ଼ାଦିଗରେ ମଧ ସୁନାମ ଅର୍ଜନ କଲେ । ତାଙ୍କର ସ୍କୁଲ ସମୟରୁ ହିଁ କ୍ରୀଡ଼ା ତାଙ୍କର ସର୍ବପ୍ରଧାନ ସଉକ ହୋଇ

ରହିଥିଲା । ଟେନିସ୍ ଓ କ୍ରିକେଟ୍‌ରେ ତାଙ୍କର ବିଶେଷ ଦକ୍ଷତା ରହିଥିଲା ଏବଂ ସେଥିରେ ତଥା ନୌକାଚାଳନାରେ ମଧ୍ୟ ତାଙ୍କୁ ପୁରସ୍କାରମାନ ମିଳିଥିଲା । ଜୀବନଯାକ ସେନଗୁପ୍ତ ଜଣେ ପ୍ରକୃତ ଖେଳାଳି ହୋଇ ରହିଥିଲେ । ପରବର୍ତ୍ତୀ ପୃଷ୍ଠାଗୁଡ଼ିକରେ ଆମେ ତାହାର ପରିଚୟ ପାଇବା ।

ଆପଣାର ବିଚକ୍ଷଣ ବୁଦ୍ଧି ଏବଂ ପ୍ରଭାବଶାଳୀ ଚେହେରା ବଳରେ ଶ୍ରୀ ସେନଗୁପ୍ତ ଖୁବ୍‌ଶୀଘ୍ର ଭାରତୀୟ ମଜଲିସ୍ ଏବଂ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସମିତିରେ ଜଣେ ଉଲ୍ଲେଖଯୋଗ୍ୟ ତର୍କକାରୀ ଏବଂ ବକ୍ତାରୂପେ ପରିଗଣିତ ହୋଇଥିଲେ, ପରେ ସେ ସ୍ୱୟଂ ଦ୍ୱିତୀୟ ସଂସ୍ଥାଟିର ସଭାପତି ମଧ୍ୟ ହେଲେ । ଏହି ସଂସ୍ଥାରେ ତାଙ୍କର ବନ୍ଧୁଗୋଷ୍ଠୀରେ ଗୁରୁସଦୟ ଦତ୍ତ ବି ଥିଲେ । ଶ୍ରୀ ଦତ୍ତ ଅଳ୍ପଦିନ ପରେ ଭାରତୀୟ ସିଭିଲ୍ ସର୍ଭିସ୍ ଏବଂ ସାମାଜିକ ଜୀବନ କ୍ଷେତ୍ରରେ ସୁବିଦିତ ହୋଇଥିଲେ, ବିଶେଷକରି ବଙ୍ଗପ୍ରଦେଶର ଲୋକପ୍ରିୟ ବ୍ରତଚାରୀ ଆନ୍ଦୋଳନର ପ୍ରତିଷ୍ଠାତା ହିସାବରେ ଖ୍ୟାତି ଲାଭ କରିଥିଲେ ।

କେମ୍ବ୍ରିଜଠାରେ ଜବାହରଲାଲ ନେହେରୁଙ୍କ ସହିତ ମଧ୍ୟ ଯତୀନ୍ଦ୍ରମୋହନଙ୍କର ସାକ୍ଷାତ ହୋଇଥିଲା (1907) ଏବଂ, ଦୁହିଁଙ୍କ ମଧ୍ୟରେ ଏପରି ଏକ ବନ୍ଧୁତା ଗଢ଼ିଉଠିଲା, ଯାହାକି, ଦୁହେଁ ମାତୃଭୂମିର ସ୍ୱାଧୀନତା ଆନ୍ଦୋଳନରେ ପୁରୋଭାଗସ୍ଥ ନେତା ରୂପେ ପ୍ରତିଷ୍ଠିତ ହେବା ସଙ୍ଗେ ସଙ୍ଗେ ପରିପକ୍ୱତା ଲାଭ କରିଥିଲେ । ଅତୀତର ସ୍ମରଣ କରୁଥିବାର ଏକ ମନୋମୁଦ୍ରାରେ ନେହେରୁ ତାଙ୍କର ଆତ୍ମଜୀବନୀରେ ଲେଖିଥିଲେ (1936) ''କେମ୍ବ୍ରିଜ୍‌ରେ ମୋର ସମକାଳୀନ ମାନଙ୍କ ମଧ୍ୟରେ ଏପରି ଏକାଧିକ ବ୍ୟକ୍ତି ଥିଲେ, ଯେଉଁମାନେ କି ପରେ ଭାରତୀୟ କଂଗ୍ରେସରେ ମୁଖ୍ୟ ରାଜନୀତିକ ଭୂମିକା ଗ୍ରହଣ କରିଥିଲେ । ମୁଁ କେମ୍ବ୍ରିଜ୍‌ରେ ପ୍ରବେଶ କରିବାର ଅଳ୍ପଦିନ ପରେ ଯତୀନ୍ଦ୍ରମୋହନ ସେନଗୁପ୍ତ କେମ୍ବ୍ରିଜ୍ ଛାଡ଼ିଲେ । ସଇଫୁଦ୍ଦିନ୍ କିଚଲୁ, ସୟଦ ମାମୁଦ ଏବଂ ତସଦ୍ଦୁକ୍ ଅହମ୍ମଦ ଶେରୱାନି ମୋଟାମୋଟି ମୋର ସମସାମୟିକ ଥିଲେ ।''

ବଙ୍ଗଳାରେ ସ୍ୱଦେଶୀ ଆନ୍ଦୋଳନ ଆରମ୍ଭ ହେବାପରେ (1905-07) ଭାରତର ରାଜନୀତିକ ପରିସ୍ଥିତି ସମୁଦାୟ ଦେଶକୁ ଦୋହଲାଇ ଦେଇଥିଲା ଏବଂ ତାହାର ପ୍ରତିକ୍ରିୟା ବ୍ରିଟେନ୍‌ର ଭୂମିବେଳାରେ ମଧ୍ୟ ଆସି ବାଜିଥିଲା । ତାହାର ପ୍ରତିଧ୍ୱନି ଅତ୍ୟନ୍ତ ସ୍ୱାଭାବିକ ଭାବରେ କେମ୍ବ୍ରିଜ୍‌ରେ ହେଉଥିବା ଭାରତୀୟ ମଜଲିସ୍‌ର ବୈଠକମାନଙ୍କରେ ମଧ୍ୟ ଅନୁଭୂତ ହୋଇଥିଲା । ସେତେବେଳେ ବିପିନଚନ୍ଦ୍ର ପାଲ୍, ଲାଲା ଲଜପତ ରାୟ ଏବଂ ଗୋପାଳକୃଷ୍ଣ ଗୋଖ୍ଲେ ପ୍ରଭୃତି ତୁଙ୍ଗ ନେତା ଇଂଲଣ୍ଡରେ ଥିଲେ । ସେମାନେ କେମ୍ବ୍ରିଜ୍ ବି ଯାଇଥିଲେ । ଏହି ମନୀଷୀମାନଙ୍କର ସଂପର୍କରେ ଆସି ଯତୀନ୍ଦ୍ର ମୋହନ ଓ ତାଙ୍କର ବନ୍ଧୁମାନେ ଅତ୍ୟନ୍ତ ଗଭୀର ଭାବରେ ଅନୁପ୍ରାଣିତ ହୋଇଥିଲେ ।

ଯତୀନ୍ଦ୍ରମୋହନ ଆପଣାର ଅଧ୍ୟୟନଗତ କ୍ଷେତ୍ରରେ ଅଧିକରୁ ଅଧିକ ଉପରକୁ ଯାଇଥାନ୍ତି । 1906-08ରେ ସେ ଆଇନ୍ ଶାସ୍ତ୍ରରେ ନିଜର ଟ୍ରାଇପସ୍ ପୂର୍ଣ୍ଣକଲେ ଏବଂ 1909ରେ ଏଲ.ଏଲ.ବି. ଡିଗ୍ରୀ ଲାଭକଲେ । ସେ ତା'ପରେ ଜଣେ ସଦସ୍ୟ ଭାବରେ ଗ୍ରେଜ୍‌ଇନ୍‌ରେ ଯୋଗ ଦେଲେ ଏବଂ ଅବ୍ୟବହିତ ପରେ ଲଣ୍ଡନରେ ବାରିଷ୍ଟର ହେଲେ । ତା'ପରେ ନିଜର ଇଂରାଜୀ ପତ୍ନୀଙ୍କୁ ସଙ୍ଗରେ ନେଇ ଭାରତକୁ ଫେରିଥିଲେ ।

## ତାଙ୍କର ଜୀବନ-ଜୀବିକା

1910 ମସିହାରେ ଯତୀନ୍ଦ୍ରମୋହନ ଜଣେ ବାରିଷ୍ଟର ହୋଇ କଲିକତା ହାଇକୋର୍ଟରେ ଯୋଗଦେଲେ । ତାଙ୍କର ପ୍ରତିଶ୍ରୁତି ପୂର୍ଣ୍ଣ ଜୀବିକାଜୀବନ ଅତ୍ୟନ୍ତ ପ୍ରତିଭା ସଂଦୀପ୍ତ ଭାବରେ ଆରମ୍ଭ ହୋଇଥିଲା ।

ଆପଣାର ତୀକ୍ଷ୍ଣ ବୁଦ୍ଧିମତ୍ତା ଦ୍ୱାରା ସେ ଆଇନ୍ ଜଗତରେ ଜଟିଳତାଗୁଡ଼ିକୁ ଖୁବ୍ ଶୀଘ୍ର ବୁଝି ପାରୁଥିଲେ । ଅଳ୍ପଦିନ ଭିତରେ ସେ ତାଙ୍କ ଉପରେ ନ୍ୟସ୍ତ କରାଯାଉଥିବା ମକଦ୍ଦମା ଗୁଡ଼ିକୁ ଚଳାଇବା ଲାଗି ଜଣେ ଚତୁର ପରାମର୍ଶଦାତା ରୂପେ ପରିଗଣିତ ହୋଇଥିଲେ । କଲିକତା ସହର ତାଙ୍କର ଆଇନ ବ୍ୟବସାୟର କ୍ଷେତ୍ର ହୋଇଥିଲେ ମଧ, ଅଳ୍ପଦିନ ପରେ ତାଙ୍କୁ ନିଜ ବାପାଙ୍କ ସହିତ ଚିଟାଗଙ୍ଗ୍ ଯାଇ ସେଠାରେ ବାସ କରିବାକୁ ପଡ଼ିଲା । ବାପା ସେଠାରେ ତାଙ୍କ ସମୟରେ ଜଣେ ଆଗଧାଡ଼ିର ଆଡ୍‌ଭୋକେଟ୍ ଥିଲେ । ବାପାଙ୍କର ଆଇନ୍‌ଗତ ଜୀବନର ଦୈନନ୍ଦିନ ଅଭିଜ୍ଞତାରୁ ପୁଅ ଜଣେ ଓକିଲର ଯାବତୀୟ କୌଶଳ ଏବଂ ବିଚକ୍ଷଣତାକୁ ଅଧ୍ୟବସାୟ ସହିତ ଶିକ୍ଷା କରିବାକୁ ଚେଷ୍ଟା କରିଥିଲେ । କଲିକତାରେ ନିଜର ଆଇନ୍-ବ୍ୟବସାୟ ଆରମ୍ଭ କରିବା ସମୟରେ ତାଙ୍କର ଆୟ ଅତି ଅଳ୍ପ ଥିଲା ବୋଲି କୁହାଯାଇପାରିବ । ଆପଣାର ଆୟ ବଢ଼ାଇବାକୁ ଅନ୍ୟ କୌଣସି କାର୍ଯ୍ୟଟିଏ କରିବା ଉଦ୍ଦେଶ୍ୟରେ ସିଏ ସୁରେନ୍ଦ୍ରନାଥ ବାନାର୍ଜୀଙ୍କର ପୃଷ୍ଠପୋଷକତା ଫଳରେ ରିପନ୍ ଆଇନ୍ କଲେଜରେ ଆପଣାଲାଗି ଅଧ୍ୟାପକ ପଦଟିଏ ମଧ ଯୋଗାଡ଼ କରି ନେଇଥିଲେ । ଶ୍ରୀ ବାନାର୍ଜୀ ସେତେବେଳେ ରାଷ୍ଟ୍ରଗୁରୁ ହିସାବରେ ସୁଖ୍ୟାତ ଥିଲେ ଏବଂ ଅଖିଳ ଭାରତୀୟ ସ୍ତରରେ କଂଗ୍ରେସର ମଧ ଜଣେ ସୁଖ୍ୟାତ ନେତା ଥିଲେ । ସେ ରିପନ୍ କଲେଜର ପ୍ରତିଷ୍ଠାତା ଥିଲେ । ଯାତ୍ରାମୋହନ ସୁରେନ୍ଦ୍ରନାଥଙ୍କର ଜଣେ ଘନିଷ୍ଠ ବନ୍ଧୁ ଥିଲେ ଏବଂ ବସ୍ତୁତଃ ସ୍ୱଦେଶୀ ଆନ୍ଦୋଳନର ଦିନମାନଙ୍କରେ ବାନାର୍ଜୀଙ୍କର ଜଣେ ସୁକୁଶଳ ସେନାପତି ମଧ ଥିଲେ ।

ଆଇନ ବ୍ୟବସାୟ ଏବଂ ଆଇନ୍-ଅଧ୍ୟାପନାର ଉଭୟ କାର୍ଯ୍ୟ ମଧରେ ଯତୀନ୍ଦ୍ରମୋହନ ଘରେ ନିଜର ପତ୍ନୀ ନେଲୀ ଏବଂ ପୁତ୍ରସନ୍ତାନ ମାନଙ୍କ (ଶିଶିର ଓ ଅନିଲ୍) କିଛିଟ୍ ଅବସର-ବିନୋଦନ ନିମିତ୍ତ ମଧ ସମୟ କରି ପାରୁଥିଲେ । ସେମାନଙ୍କର ପୁଅ ଅମର ଶୈଶବରୁ ହିଁ ସଂସାରରୁ ବିଦାୟ ନେଇ ଯାଇଥିଲା । ସେ ତାଙ୍କର ସବା ସାନଭାଇ ରନେନ୍ଦ୍ରମୋହନଙ୍କର ମଧ ଉତ୍ତମ ଯତ୍ନ ନେଉଥିଲେ । ଘରେ ଏହିପରି କେତେ ନା କେତେ କୌତୁକରେ ସମୟ କଟି ଯାଉଥିଲା ଓ ବେଳେବେଳେ ସହରରେ ଅନ୍ୟ କେଉଁ ସ୍ଥାନକୁ ଯିବାର ଆୟୋଜନମାନ ବି ହେଉଥିଲା । ତଦୁପରି, କ୍ରୀଡ଼ା ପ୍ରତି ମଧ ଶ୍ରୀ ଯତୀନ୍ଦ୍ରମୋହନଙ୍କର ପ୍ରଭୂତ ଆକର୍ଷଣ ରହିଥିଲା ଏବଂ ଟେନିସ୍ ଖେଳର ଜଣେ ବିଶାରଦ ହିସାବରେ କଲିକତା କ୍ଲବ୍‌ରେ ତାଙ୍କୁ ନିୟମିତ ଦେଖିବାକୁ ମିଳୁଥିଲା । ସେ ହକି ଓ କ୍ରିକେଟ୍‌ରେ ମଧ ପ୍ରବୀଣ ଥିଲେ ଓ ତିନେଟିଯାକ ଖେଳକୁ ଅତ୍ୟନ୍ତ ଭଲ ପାଉଥିଲେ । (ଏହି ବିଷୟରେ ଏକ ପରବର୍ତ୍ତୀ ଅଧ୍ୟାୟରେ ବର୍ଣ୍ଣିତ ହେବ) ସର୍ବୋପରି, ଆଇନ୍ ଶାସ୍ତ୍ର, ରାଜନୀତି, କୂଟନୀତି ଏବଂ ଇତ୍ୟାଦି ଇତ୍ୟାଦି ଅନେକ ବିଷୟର ପୁସ୍ତକମାନ ଅଧୟନ କରି ଆପଣାର ମାନ ଏବଂ ବୁଦ୍ଧିମତ୍ତାକୁ ବ୍ୟୁତ୍ପନ୍ନ କରିବାଲାଗି ମଧ ତାଙ୍କୁ ଅତ୍ୟନ୍ତ ଭଲ ଲାଗୁଥିଲା । ଚତୁଃପାର୍ଶ୍ୱସ୍ଥ ସାମାଜିକ ତଥା ରାଜନୀତିକ ଘଟଣାଚକ୍ରର ସମ୍ମୁଖୀନ ହେବାଲାଗି ଏହି ଅଧୟନ ତାଙ୍କୁ ଅନେକ ସାହାଯ୍ୟ କରିଥିଲା । ପରେ ସେ ସ୍ୱାଧୀନତା ସଂଗ୍ରାମର ଘନ-ଆବହରେ ପ୍ରବେଶ କରି ଏକାଧିକବାର ଭୋଗ କରିଥିବା ବନ୍ଦୀଜୀବନର ଏକାକୀ ପ୍ରହରଗୁଡ଼ିକରେ ମଧ ଅଧୟନର ଏହି ଅଭ୍ୟାସ ତାଙ୍କର ଅତ୍ୟନ୍ତ ସହାୟକ ହୋଇଥିଲା ।

ରାଜନୀତି ମଧକୁ ଯତୀନ୍ଦ୍ରମୋହନଙ୍କର ପ୍ରବେଶ ଏବଂ ଦୀକ୍ଷାଗ୍ରହଣକୁ ବସ୍ତୁତଃ ଏକ ଅବିଚ୍ଛିନ୍ନ କ୍ରମ-ବିବର୍ତ୍ତନର କାହାଣୀ ବୋଲି କୁହାଯାଇପାରିବ । ବିଶେଷ ଭାବରେ ବଙ୍ଗପ୍ରଦେଶର ସମସ୍ୟାବଳୀ ଉପରେ ଜୋର୍ ଦେଇ ଭାରତବର୍ଷରେ ରାଜନୀତିକ ଆନ୍ଦୋଳନର ଏକ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ମଞ୍ଚରୂପେ ଗଠିତ ବେଙ୍ଗଲ୍ ପ୍ରୋଭିନ୍ସିଆଲ୍ କନ୍‌ଫରେନ୍ସରେ ଯତୀନ୍ଦ୍ରମୋହନ ଯେଉଁ ଆଗ୍ରହ ପ୍ରଦର୍ଶନ

କରୁଥିଲେ, ତାହାକୁ ହିଁ ରାଜନୀତିକ କାର୍ଯ୍ୟକଳାପ ସହିତ ତାଙ୍କର ପ୍ରଥମ ସଂସ୍ପର୍ଶ ବୋଲି କୁହାଯିବ । ଏହି ସଂସ୍ଥାଟି 1888 ରେ ପ୍ରତିଷ୍ଠିତ ହୋଇଥିଲା, କାର୍ଯ୍ୟତଃ ତାହାକୁ ଭାରତୀୟ ଜାତୀୟ କଂଗ୍ରେସର ଏକ ପ୍ରାଦେଶିକ ଶାଖା ବୋଲି କୁହାଯାଇ ପାରିବ । ବଙ୍ଗଦେଶର ପ୍ରଖ୍ୟାତ ସାଧାରଣ-କ୍ଷେତ୍ରୀୟ ନେତାମାନେ ସେହି ସଂସ୍ଥାର କାର୍ଯ୍ୟାବଳୀରେ ଅଂଶଗ୍ରହଣ କରୁଥିଲେ ଏବଂ (ଭାରତୀୟ ଜାତୀୟ କଂଗ୍ରେସରେ ସେହି ପ୍ରଥମ କାଳରେ ଯେପରି ଥିଲା) ଏଥିରେ ଆଇନ୍‌ଜୀବୀମାନେ ହିଁ ମୁଖ୍ୟ ସ୍ଥାନମାନଙ୍କରେ ରହିଥିଲେ । ଏହି ସଂସ୍ଥାର ଆଲୋଚନାରେ ଜିଲ୍ଲାସ୍ତରୀୟ ଆଲୋଚନାଗୁଡ଼ିକର ପ୍ରତିଫଳନ ହେଉଥିଲା । କଲିକତା ଏବଂ କଲିକତା ବାହାରେ ଜିଲ୍ଲାମହକୁମା ଗୁଡ଼ିକରେ ବସୁଥିବା ଏହାର ଅଧିବେଶନ ମାନଙ୍କରେ ତାହା ଜାତୀୟ ଚେତନାର ଜାଗରଣ ଘଟାଉଥିଲା; ବିଶେଷତଃ ବଙ୍ଗପ୍ରଦେଶର ଶିକ୍ଷାଗତ, ସାମାଜିକ ଓ ଅର୍ଥନୈତିକ ସମସ୍ୟାଗୁଡ଼ିକ ବିଷୟରେ ଲୋକମାନଙ୍କୁ ସଚେତନ କରାଉଥିଲା ।

ଯତୀନ୍ଦ୍ରମୋହନ ଚିଟାଗଙ୍ଗ୍‌ର ଜଣେ ପ୍ରତିନିଧି ହିସାବରେ ସେହି ସଂସ୍ଥାର ଫରିଦପୁର ଅଧିବେଶନରେ (1911) ଯୋଗ ଦେଇଥିଲେ । ସେ ଯେ ଏଠାରେ କେବଳ ଜଣେ ଦର୍ଶକ ହୋଇ ବସିଥିଲେ, ସେ କଥା ଆଦୌ ନୁହେଁ । ଏକ ଦେଶପ୍ରାଣ ମନ ରହିଥିବା ଏହି ତରୁଣ ଆକାଙ୍‌କ୍ଷୀ ଆଗ୍ରହ ପ୍ରକାଶ କରି ସଂସ୍ଥାଟିକୁ ପରବର୍ତ୍ତୀ ଅଧିବେଶନ ଚିଟାଗଙ୍ଗରେ ବସୁ ବୋଲି ନିମନ୍ତ୍ରଣ ଜଣାଇଥିଲେ । ତାଙ୍କର ପ୍ରସ୍ତାବଟି ଗୃହୀତ ହେଲା । ବଙ୍ଗ-ବିଚ୍ଛେଦ ନିର୍ଦ୍ଦେଶନାମାକୁ ପ୍ରତ୍ୟାହାର କରିନେବାର ପରବର୍ତ୍ତୀ ପର୍ଯ୍ୟାୟରେ (1905-1911) ଏକ ଅତ୍ୟନ୍ତ ମୀମାଂସକ କ୍ଷଣରେ ଚିଟାଗଙ୍ଗରେ ଏହି ଅଧିବେଶନଟି ବସିଥିଲା (1912) । ଏହି ଘଟଣାଟି ବ୍ରିଟିଶ୍ ସାମ୍ରାଜ୍ୟବାଦୀ ଖେଳର ଏକ "ସ୍ଥିର-ମୀମାଂସିତ" ସତ୍ୟକୁ ପୁନର୍ବାର ଅବ୍ୟବସ୍ଥିତ କରି ପକାଇଥିଲା; ଏଣୁ ଏହାର ଏକ ଗଭୀର ରାଜନୀତିକ ତାତ୍ପର୍ଯ୍ୟ ମଧ ରହିଥିଲା ଓ ତାହା ଫଳରେ ଦେଶବ୍ୟାପୀ ଜାତୀୟତାର ଏକ ତରଙ୍ଗ ଉତ୍ଥିତ ହୋଇ ଆସିଥିଲା । ତାହା ଆହୁରି ଅଧିକ ତ୍ୟାଗ ଏବଂ କଷ୍ଟସହନ ପାଇଁ ଆହ୍ୱାନ ଦେଲା, ବିଦେଶୀ ଶାସକର ସେହି ନିଷ୍ଠୁରି ବିରୋଧରେ ସଂଗ୍ରାମ କରିବାଲାଗି ଦୃଢ଼ ସଂକଳ୍ପ ଏବଂ ବୀରୋଚିତ କର୍ମତତ୍ପରତା ସହିତ ବାହାରି ଆସିବା ସକାଶେ ଶତଶତ ଦେଶଭକ୍ତଙ୍କୁ ଡାକ ଦେଇଥିଲା । ଏହା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଯେ, ଚିଟାଗଙ୍ଗ୍ ଅଧିବେଶନରେ ସଭାପତିତ୍ୱ କରିବା ସକାଶେ କୁମିଲ୍ଲାର ଜଣେ ପ୍ରଖ୍ୟାତ ବାରିଷ୍ଟର ଏବଂ ଜାତୀୟତାବାଦୀ ନେତା ଅବ୍‌ଦୁଲ୍ ରସୁଲ୍‌ଙ୍କୁ ବଛା ଯାଇଥିଲା । ରସୁଲ ବରିସାଲ କନ୍‌ଫରେନ୍‌ସର ସଭାପତି ହେବାଲାଗି ନିର୍ବାଚିତ ହୋଇଥିଲେ (1906) ଏବଂ ସେତେବେଳେ ସେହି ଅଧିବେଶନକୁ ସାମ୍ରାଜ୍ୟବାଦୀ ବର୍ବରତା ଆସି ଛାରଖାର କରି ଦେଇଥିଲା ଓ ସେହି ଅଧିବେଶନର ନେତା ଓ ସଂଗଠକମାନଙ୍କୁ ନିର୍ମମ ହିଂସାତ୍ମକତାର ଶିକାର କରାଇଥିଲା । ସେତେବେଳେ ସମଗ୍ର ଦେଶ ବଙ୍ଗ-ବିଚ୍ଛେଦ ଏବଂ ତାହାର ପରବର୍ତ୍ତୀ ଘଟଣା-ପର୍ଯ୍ୟାୟର କବଳରୁ ତଥାପି ମୁକ୍ତିଲାଭ କରି ନ ଥିଲା । ଯତୀନ୍ଦ୍ରମୋହନଙ୍କର ପିତା ଯାତ୍ରାମୋହନ ଏହି ଚିଟାଗଙ୍ଗ ଅଧିବେଶନରେ ଅଭ୍ୟର୍ଥନା ସମିତିର ସଭାପତି ରୂପେ ନିର୍ବାଚିତ ହୋଇଥିଲେ । ଦୁଇ ସଭାପତିଙ୍କ ଭାଷଣ ଅତ୍ୟନ୍ତ ପ୍ରେରଣାଦାୟକ ଥିଲା ଏବଂ ସେଗୁଡ଼ିକରେ ଥିବା ଦେଶଭକ୍ତିମୟ ଆବେଦନ । ସେଠାରେ ସମବେତ ସେହି ବୃହତ୍ ସମାବେଶଟିର ମନକୁ ଗଭୀର ଭାବରେ ଆନ୍ଦୋଳିତ କରି ଦେଇଥିଲା । ବଙ୍ଗଳାର ସର୍ବୋଚ୍ଚ ସ୍ତରର ନେତାମାନେ ଏହି ଅଧିବେଶନରେ ଯୋଗ ଦେଇଥିଲେ; ଅନ୍ୟମାନଙ୍କ ଭିତରେ ଏଠାରେ ସୁରେନ୍ଦ୍ରନାଥ ବାନର୍ଜୀ (କଲିକତା), ଅମ୍ବିକା ଚରଣ ମଜୁମଦାର

(ଫରିଦପୁର), ଓ ବ୍ୟୋମକେଶ ଚକ୍ରବର୍ତ୍ତୀ (କଲିକତା) ଙ୍କ ନାମ ଉଲ୍ଲେଖ କରାଯାଇପାରେ । ଚିଟାଗଙ୍ଗର ତରୁଣ ନେତା ଚନ୍ଦ୍ରଶେଖର ଦେ ସ୍ୱେଚ୍ଛାସେବୀ ଦଳର ମୁଖ୍ୟ ଥିଲେ । ଯେତେବେଳେ ଶହଶହ ଛାତ୍ର ଓ ଯୁବକ ଅତ୍ୟନ୍ତ ଉତ୍ସାହର ସହିତ ଘୋଡ଼ାମାନଙ୍କୁ ବାଦ୍ ଦେଇ ରାଷ୍ଟ୍ରଗୁରୁ ସୁରେନ୍ଦ୍ରନାଥ ଓ ଅନ୍ୟ ଦୁଇଜଣଙ୍କର ଗାଡ଼ିକୁ ନିଜ ହାତରେ ହିଁ ଟାଣି ନେଇଗଲେ, ତାହା ପ୍ରକୃତରେ ଏକ ଅବିସ୍ମରଣୀୟ ଦୃଶ୍ୟରେ ପରିଣତ ହୋଇଥିଲା ।

ଯତୀନ୍ଦ୍ରମୋହନ (27) ଆପଣା ପିତାଙ୍କ ସହିତ ସେଠାରେ ସର୍ବଦା ପୁରୋଭାଗରେ ରହିଥିଲେ ଏବଂ ତତ୍କାଳୀନ ରାଜନୀତିର ତୁଙ୍ଗ ବ୍ୟକ୍ତିତ୍ୱମାନଙ୍କର ଗହଣରେ ଏତେ ନିକଟବର୍ତ୍ତୀ ହୋଇ ରହି ସେ ଅତ୍ୟନ୍ତ ଉତ୍ସାହିତ ଅନୁଭବ କରିଥିଲେ ।

ଏହାର ପ୍ରାୟ ଠିକ୍ ଗୋଟିଏ ବର୍ଷ ପରେ, ଚିଟାଗଙ୍ଗଠାରେ ଅକ୍ଷୟ କୁମାର ସରକାରଙ୍କର ସଭାପତିତ୍ୱରେ ବଙ୍ଗୀୟ ସାହିତ୍ୟ ସମ୍ମେଳନର ବାର୍ଷିକ ଅଧିବେଶନ ମଧ ବସିଥିଲା ଏବଂ ସେଥିରେ ବଙ୍ଗଳାରେ ଅନେକାନେକ ଲେଖକ ଓ ବୁଦ୍ଧିଜୀବୀ ଯୋଗଦାନ କରିଥିଲେ । ସେମାନଙ୍କ ମଧ୍ୟରେ ଯୋଗ୍ୟତମ ହିସାବରେ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ, ବିପିନଚନ୍ଦ୍ର ପାଲ, ହୀରେନ୍ଦ୍ରନାଥ ଦତ୍ତ, କବି ସତ୍ୟେନ୍ଦ୍ରନାଥ ଦତ୍ତ, ଅଧ୍ୟାପକ ବିନୟ କୁମାର ସରକାର, ପଞ୍ଚୋରି ବାନର୍ଜୀ ଓ ଅନ୍ୟମାନେ ଉପସ୍ଥିତ ଥିଲେ । ଆପେ ଜଣେ ସାହିତ୍ୟିକ ହୋଇ ନ ଥିଲେ ମଧ, ଜଣେ ମୁଖ୍ୟ ନାଗରିକ ହିସାବରେ ଯାତ୍ରାମୋହନ ଅନ୍ୟମାନଙ୍କ ସହିତ ବଡ଼ ଉତ୍ସାହିତ ଭାବରେ ଏହି ସାହିତ୍ୟିକ ଘଟଣାଟିରେ ବୌଦ୍ଧିକ ଆଗ୍ରହ ପ୍ରକାଶ କରିଥିଲେ ଏବଂ, କେତେଜଣ ମୁଖ୍ୟ ବୁଦ୍ଧିଜୀବୀଙ୍କର, ବିଶେଷତଃ ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରାୟ ଓ ଅଧ୍ୟାପକ ବିନୟ କୁମାର ସରକାରଙ୍କ ସମ୍ପର୍କରେ ଆସିବାର ସୁଯୋଗ ଲାଭ କରିଥିଲେ । ସେମାନେ ଏହି ତରୁଣ ଯୁବକଙ୍କୁ ମଧ ଭଲ ପାଇବାକୁ ଆରମ୍ଭ କଲେ ଓ ତାଙ୍କର ଭବିଷ୍ୟ ବିଷୟରେ ଉଜ୍ଜ୍ୱଳ କଳ୍ପନାମାନ କରି ମୁଗ୍ଧ ହୋଇ ଯାଉଥିଲେ । ଯତୀନ୍ଦ୍ରମୋହନଙ୍କ ମଧ୍ୟରେ ସେତେବେଳେ ମଧ ଜଣେ ମହାନ୍ ବ୍ୟକ୍ତି ହେବାର ଲକ୍ଷଣମାନ ସୁସ୍ପଷ୍ଟ ହୋଇ ଯାଉଥିଲା ବୋଲି ବହୁବର୍ଷ ପରେ ଅଧ୍ୟାପକ ବିନୟ କୁମାର ସରକାର ପ୍ରସଙ୍ଗକ୍ରମେ ଏହି ଲେଖାକୁ ଥରେ କହିଥିଲେ । ବସ୍ତୁତଃ ସେ ଲେଖିଛନ୍ତି ଯେ, 'ଏକାଧିକ ସମୟରେ ଯତୀନ୍ଦ୍ରମୋହନ ଯେଉଁ ବିରାଟ ବ୍ୟକ୍ତିତ୍ୱ ଏବଂ ବୀରୋଚିତ କାର୍ଯ୍ୟର ପରିଚୟ ଦେଇଥିଲେ, ତାହା ତାଙ୍କୁ କେତେକ ଦୃଷ୍ଟିରୁ ସୁରେନ୍ଦ୍ରନାଥ ଏବଂ ଚିତ୍ତରଞ୍ଜନଙ୍କଠାରୁ ମଧ ଆହୁରି ଉପରକୁ ଉଠାଇ ନେଇଥିଲା ଓ ସେ ଯାବତୀୟ ସମସ୍ୟାର ସଚ୍ଚୋଟ ଏବଂ ସିଧା ଭାବରେ ସମ୍ମୁଖୀନ ହୋଇପାରୁଥିଲେ ।

## ଏକ ରୂପାନ୍ତରକାରୀ ସମଞ୍ଜସତା

ଇଂଲଣ୍ଡରେ ରହୁଥିବା ସମୟରେ ଆପଣାର ପ୍ରଥମ ଯୌବନରେ ଯତୀନ୍ଦ୍ରମୋହନଙ୍କର ଜୀବନରେ ଏକ ଅଦୃଷ୍ଟପୂର୍ବ ଦିକ୍‌ପରିବର୍ତ୍ତନ ଘଟିଥିଲା । ସୁସ୍ପଷ୍ଟ ଭାବରେ ଜୀବନରେ ମହତ୍ତ୍ୱପୂର୍ଣ୍ଣ ନିଷ୍ପତ୍ତିଗୁଡ଼ିକୁ କରିବାର ଛକଜାଗାରେ ଛିଡ଼ା ହୋଇଥିବାବେଳେ ସିଏ ଏପରି ଏକ ସ୍ମରଣୀୟ ପ୍ରଣୟ ଘଟଣା ମଧ୍ୟରେ ଆସି ପଡ଼ିଯାଇଥିଲେ, ଯାହା ଭିତରେ କି ବିଶ୍ୱବିଧାତାଙ୍କର ବିବେକ ଅଦୃଶ୍ୟ ଭାବରେ କାର୍ଯ୍ୟ କରୁଥିଲା ଓ ଯାହା ସ୍ୱମୟ ପରିପକ୍ୱ ହୋଇଆସିବା ସଙ୍ଗେ ସଙ୍ଗେ ତାଙ୍କ ଜୀବନର ଏକ ଶକ୍ତିଶାଳୀ ପ୍ରେରକ ଘଟଣା ରୂପେ ଆପଣାକୁ ପ୍ରକଟ କରି ଆଣିଥିଲା ।

କେମ୍ବ୍ରିଜରେ ବାସ କରୁଥିବା ଶ୍ରୀ ଓ ଶ୍ରୀମତୀ ଗ୍ରେ'ଙ୍କର ସମ୍ଭ୍ରାନ୍ତ ପରିବାରରେ ଏହି ଘଟଣାର ସୂତ୍ରପାତ ହୋଇଥିଲା । ସେହି ଦମ୍ପତି ଇଂଲଣ୍ଡରେ ଅଧ୍ୟୟନ କରୁଥିବା ଭାରତୀୟ ଛାତ୍ରମାନଙ୍କୁ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ । ଯେଉଁ ଛାତ୍ରମାନେ ଶ୍ରୀମତୀ ଗ୍ରେ'ଙ୍କର ଶ୍ରଦ୍ଧା, ସହାନୁଭୂତି ଏବଂ ଆତିଥ୍ୟ ଲାଭ କରୁଥିଲେ, ସେମାନେ ସେଥିରେ ଅତ୍ୟନ୍ତ ପ୍ରୀତ ହୋଇ ଯାଉଥିଲେ । ବିଦେଶରେ ମଧ୍ୟ ସେମାନଙ୍କୁ ତାଙ୍କର ଘର ଆପଣାର ନିଜ ଘର ପରି ହିଁ ଲାଗୁଥିଲା । ଅନ୍ୟମାନଙ୍କ ପରି ଶ୍ରୀ ସେନଗୁପ୍ତ ମଧ୍ୟ ଶ୍ରୀମତୀ ଗ୍ରେ'ଙ୍କର ଘରକୁ ଯାଉଥିଲେ ଏବଂ ତାଙ୍କର ବୁଦ୍ଧିମତୀ ତରୁଣୀ କନ୍ୟା ନେଲୀ ସହିତ ସେନଗୁପ୍ତଙ୍କର ବନ୍ଧୁତା କ୍ରମେ ପ୍ରଣୟରୂପେ ବିକଶିତ ହୋଇ ଉଠିଥିଲା । ବୟସ୍କା ମାଆ ଏଥିରେ ଯେତେ ବେଶୀ ସୁଖ ଅନୁଭବ କରୁଥିଲେ ମଧ ତାଙ୍କ ମନରେ ସର୍ବଦା ଏହିପରି ଏକ ଭୟ ରହିଥିଲା ଯେ, ଯଦି ନେଲୀ ପ୍ରକୃତରେ ଏହି ଭାରତୀୟ ଯୁବକଟିର ଜୀବନସଙ୍ଗିନୀ ହେବାଲାଗି ନିଷ୍ପତ୍ତି କରିବ, ତେବେ ତାଙ୍କୁ ନିଜକୁ ଏକାକୀ ରହିବାକୁ ପଡ଼ିବ; କାରଣ, ତା' ହେଲେ ତାଙ୍କର ଏକମାତ୍ର ସନ୍ତାନଙ୍କୁ ସେତେବେଳେ ସମୁଦ୍ର ପାରହୋଇ ଏକ ଦୂର ଦେଶକୁ ଚାଲିଯିବାକୁ ପଡ଼ିବ ।

ଆପଣାର ଭବିଷ୍ୟତ ତଥା ଜୀବନଗତ ଦାୟିତ୍ୱ ସଙ୍କନ୍ଧ ବିଷୟରେ ପୂର୍ଣ୍ଣ ସଚେତନ ହୋଇ ରହିଥିବା ଯତୀନ୍ଦ୍ରମୋହନ ଏହି କ୍ଷେତ୍ରରେ ଅତ୍ୟନ୍ତ ସାବଧାନତା ସହିତ ଆଗକୁ ଯିବାକୁ ସଙ୍କଳ ଚେଷ୍ଟା କରିଥିଲେ । ମାଆଙ୍କ ମୃତ୍ୟୁ ପରେ 1908 ରେ ସେ ଭାରତବର୍ଷକୁ ଆସିଥିଲେ । ପ୍ରିୟପୁତ୍ର ବିଲାତରେ ରହିବା ସମୟରେ ସେହି ମାଆ ଯେ କେତେ କାତର ଓ ବିଚଳିତ ହୋଇ ପଡ଼ିଥିଲେ, ତାଙ୍କର ସେକଥା ଭଲ ଭାବରେ ମନେ ଥିଲା । ବୃଦ୍ଧ ପିତାଙ୍କୁ ଯଥାସମ୍ଭବ ସାନ୍ତ୍ୱନା ଦେଇ ଆସିବାକୁ ମଧ୍ୟ ତାଙ୍କର ଇଚ୍ଛା ଥିଲା । ଦିନେ, କଥୋପକଥନ ସମୟରେ, ସେ ବାପାଙ୍କ ଆଗରେ ଜଣେ ସମ୍ଭ୍ରାନ୍ତବଂଶୀୟା ଇଂରାଜୀ ବାଳିକାକୁ ବିବାହ କରିବାକୁ ତାଙ୍କର ଇଚ୍ଛା ରହିଛି ବୋଲି ପ୍ରକାଶ କରିଥିଲେ । ଏକଥା ଶୁଣି ଯାତ୍ରାମୋହନ ଚକିତ ହୋଇ ଯାଇଥିଲେ ଏବଂ ଏକାଧିକ କାରଣବଶତଃ ତାଙ୍କର ପୁତ୍ର ଏପରି ଏକ ପଦକ୍ଷେପ ଗ୍ରହଣ କରୁ ବୋଲି ରାଜି ହୋଇପାରି ନଥିଲେ । ପ୍ରଥମତଃ, ଯତୀନ୍ଦ୍ରମୋହନ ସେତେବେଳେ ଓକିଲାତି ଆରମ୍ଭ କରି ନଥିଲେ, ତାଙ୍କର ଭବିଷ୍ୟତ ତଥାପି ଅନିଶ୍ଚିତ ରହିଥିଲା; ଏବଂ ଏକଥା ମଧ୍ୟ ପରିଷ୍କାର ହୋଇଯାଇଥିଲା ଯେ ଓକିଲାତି ଆରମ୍ଭ କରିବାପରେ ମଧ୍ୟ ପ୍ରଥମ କେତେବର୍ଷ ସେ ଅତ୍ୟନ୍ତ ଅଳ୍ପ ଅର୍ଥ ଉପାର୍ଜନ କରିବେ ଓ ସେଥିରେ ଜଣେ ଇଂରାଜୀ ପତ୍ନୀଙ୍କୁ ଆଦୌ ଚଳାଇପାରିବେ ନାହିଁ । ଦ୍ୱିତୀୟତଃ, ଇଂଲଣ୍ଡର ଜଣେ ବାଳିକା ଖୁବ୍ ସମ୍ଭବ ଏକାବେଳେକେ ଅନ୍ୟପ୍ରକାର ପରିବେଶ ରହିଥିବା ଏକ ଭାରତୀୟ ପରିବାରରେ, ବିଶେଷତଃ ତାଙ୍କ ଘର ପରି ଏକ ବୃହଦ୍ ଯୌଥ ପରିବାରରେ ନିଜକୁ ଆଦୌ ସହଜରେ ଖାପଖୁଆଇ ନେଇପାରିବ ନାହିଁ ।

ଏହାପରେ ଯାତ୍ରାମୋହନ ଶ୍ରମତୀ ଗ୍ରେ'ଙ୍କ ପାଖକୁ ଚିଠି ଲେଖିଲେ ଓ ସେଥିରେ ନିଜର ଭୟ ଏବଂ ଆପତ୍ତିଗୁଡ଼ିକୁ ବ୍ୟକ୍ତ କରିଥିଲେ । ଏବଂ ଆଉ ଅଧିକ ବିଳମ୍ବ ନ କରି ଯତୀନ୍‌କୁ ଘରକୁ ଫେରି ଆସିବାଲାଗି ନିର୍ଦ୍ଦିଷ୍ଟ ଭାବରେ ପରାମର୍ଶ ଦେଇଥିଲେ । ଏହିପରି ଭାବରେ ଏକ ଜଟିଳ ପରିସ୍ଥିତି ଉପୁଜିଥିଲା । ବାଧ ସନ୍ତାନ କଦାପି ନିଜ ପିତାଙ୍କର ଇଚ୍ଛାରୁ ବାହାର ହେବାକୁ ଇଚ୍ଛା କରୁନଥିଲା । ତେଣୁ ଭଗ୍ନ ହୃଦୟ ନେଇ ସେ ଦେଶକୁ ଫେରି ଆସିଲା ।

ଫେରି ଆସିବାର ପଥରେ ଯତୀନ୍ଦ୍ରମୋହନଙ୍କୁ ଅତ୍ୟନ୍ତ ଶୋଚନୀୟ ମାନସାବସ୍ଥାରେ କାଳାତିପାତ କରିବାକୁ ପଡ଼ିଥିଲା । ନେଲୀ ଓ ସେ ନିଜେ ପରସ୍ପର ସହିତ ବିବାହ କରିବାକୁ ଶପଥ ନେଇ

ସାରିଥିଲେ, ସେ ସେହି କଥା ସ୍ମରଣ କରିବାକୁ ଲାଗିଲେ । ଭାରତକୁ ଆସୁଥିବା ଜାହାଜଟି ପୋର୍ଟ ସୟଦ୍ ବନ୍ଦରରେ ପହଞ୍ଚିବା ମାତ୍ରକେ ଯତୀନ୍ଦ୍ରମୋହନ ଗମ୍ଭୀର ଭାବରେ ବିଷୟଟି ଉପରେ ଚିନ୍ତା କରିବାକୁ ଲାଗିଲେ ଏବଂ ଶେଷରେ ସେଇଠି ରହିଯିବାକୁ ନିଷ୍ପତ୍ତି କଲେ । ଆଉ ଅଗ୍ରସର ନହୋଇ ସେ କେମ୍ବ୍ରିଜ୍ ଫେରିଯାଇ ଏତେ ଗଭୀର ଭାବରେ ଭଲପାଉଥିବା ଝିଅଟିକୁ ବିବାହ କରିବାକୁ ମନସ୍ଥ କଲେ । ପ୍ରାୟ ସଙ୍ଗେ ସଙ୍ଗେ ଲଣ୍ଡନ ଅଭିମୁଖରେ ଯାଉଥିବା ଗୋଟିଏ ଜାହାଜରେ ବସି ବିଲାତ ଫେରିଗଲେ ଏବଂ ସେଠାରେ ପ୍ରେମିକ ପ୍ରେମିକା ପରିଣୟ ସୂତ୍ରରେ ଆବଦ୍ଧ ହୋଇଥିଲେ ।

ଏହି ଘଟଣା ଶ୍ରୀମତୀ ଗ୍ରେ'ଙ୍କୁ ସମ୍ପୂର୍ଣ୍ଣ ଭାବରେ ଆଶ୍ଚର୍ଯ୍ୟ କରିଥିଲା । ସିଏ ପୂର୍ବରୁ ହିଁ ଏହି କଳ୍ପିତ ବିବାହ ବିଷୟରେ ଭାରି ଭୟ କରୁଥିଲେ । ତଥାପି, ଯତୀନ୍ଦ୍ରମୋହନ ଓ ନେଲୀ ମାଆଙ୍କର ଅଜାଣତରେ ଘରୁ ବାହାରିଯାଇ ପାରିଥିଲେ ଏବଂ କେମ୍ବ୍ରିଜ୍ ବାହାରେ ରାୟଷ୍ଟୋନ୍‌ଠାରେ ଥିବା ରେଜିଷ୍ଟ୍ରାରଙ୍କ ଅଫିସରେ ଆପଣାର ବିବାହ କରାଇ ଦେଇଥିଲେ । ଯାହା ଘଟିଗଲା, ଶ୍ରୀମତୀ ଗ୍ରେ' ପରିଶେଷରେ ତାହାକୁ ଏକ ସତ୍ୟରୂପେ ସ୍ୱୀକାର କରିନେଲେ ଏବଂ କନ୍ୟା ଓ ଜାମାତା ଘରକୁ ଫେରି ଆସିବା ସମୟରେ ସେମାନଙ୍କୁ ଆଶୀର୍ବାଦ ଜଣାଇଥିଲେ । ତହିଁ ଆରଦିନ ସେ ଏକ ଆନୁଷ୍ଠାନିକ ଉତ୍ସବରେ ବନ୍ଧୁମାନଙ୍କୁ ନିମନ୍ତ୍ରଣ କରିଥିଲେ ଏବଂ ନବବିବାହିତ ଦମ୍ପତିଙ୍କୁ ଆପଣାର ଶୁଭେଚ୍ଛା ଜ୍ଞାପନ କରିବା ଲାଗି ବେଶ୍ ଅନେକ ସଂଖ୍ୟକ ବନ୍ଧୁ ଓ ଆତ୍ମୀୟସ୍ୱଜନ ତାଙ୍କ ଘରକୁ ଆସିଥିଲେ ।

ନିର୍ଦ୍ଧାରିତ ଜାହାଜରେ ପୁଅ ଆସି ନ ପହଞ୍ଚିବାରୁ ଏଣେ ଯାତ୍ରାମୋହନ ଅତ୍ୟନ୍ତ ଚିନ୍ତିତ ହୋଇ ପଡ଼ିଲେ; ସେ ପୁଅ ନାମରେ କେମ୍ବ୍ରିଜ୍‌କୁ ଏକ ତାରବାର୍ତ୍ତା ପଠାଇଲେ । ଅବଶ୍ୟ ଯତୀନ୍ଦ୍ରମୋହନ ମଧ୍ୟ ଇତିମଧ୍ୟରେ ବାପାଙ୍କ ପାଖକୁ ଖବର ଦେଇ ସାରିଥିଲେ ଯେ ସିଏ ଜଣେ ଇଂରେଜ ପତ୍ନୀ ଗ୍ରହଣ କରିଛନ୍ତି । ଏହାଦ୍ୱାରା ଆଦୌ କେହି କୌଣସି ଅସୁବିଧା କିମ୍ବା ଅଡୁଆରେ ପଡ଼ିବେ ନାହିଁ ବୋଲି ସେ ବାପାଙ୍କୁ ନିର୍ଭର ଜବାବ ଦେଇଥିଲେ । କିଛି ଦିନ ଅତିକ୍ରାନ୍ତ ହୋଇଯିବା ପରେ ଶ୍ରୀମତୀ ଗ୍ରେ'ଙ୍କର ବି ଦୃଢ଼ ବିଶ୍ୱାସ ହୋଇଯାଇଥିଲା ଯେ, ଏହି ବିବାହ ନିଶ୍ଚୟ ସୁଖକାରକ ହେବ ।

ସନ୍ଦେହ ଓ ଆଶଙ୍କାର କୃଷ୍ଣମେଘସବୁ କ୍ରମେ ପରିଷ୍କାର ହୋଇଗଲା । ସେମାନେ ଘରକୁ ଫେରିବା ସମୟରେ ଯାତ୍ରାମୋହନ ଓ ତାଙ୍କ ପରିବାର, ପୁଅ ଓ ତା'ର ଇଂରାଜୀ-ପତ୍ନୀକୁ ଆଦରର ସହିତ ସ୍ୱାଗତ କରି ନେଇଥିଲେ । ନେଲୀ ମଧ୍ୟ ଏହି ନୂତନ ସଂସାର ଏବଂ ବୃହତ୍ ଏକାନ୍ନବର୍ତ୍ତୀ ପରିବାରଟି ସହିତ କ୍ରମେ ଆପଣାକୁ ଅନୁକୂଳିତ କରିନେବାକୁ ଆରମ୍ଭ କଲେ । ଏହା ପ୍ରକୃତରେ ଭାରି ଆଶ୍ଚର୍ଯ୍ୟର କଥା ଯେ, ଏହି ଖାଣ୍ଟି ଓ ଯଥାର୍ଥ ମେମ୍‌ସାହେବ ଆପଣାର ସମ୍ଭ୍ରମପୂର୍ଣ୍ଣ ବ୍ୟବହାର, ସ୍ଥିର ଏବଂ ସମୁଚିତ ଆଚରଣ, ଚାଲିଚଳନରେ ଅତୀବ ସରଳତା ଏବଂ ସର୍ବୋପରି ତାଙ୍କର ଅତ୍ୟନ୍ତ ଶୋଧନଯୁକ୍ତ ଆଚାର-ବ୍ୟବହାର ଦ୍ୱାରା ସମସ୍ତଙ୍କୁ ଚକିତ କରି ଦେଇଥିଲେ ଓ ପ୍ରତ୍ୟେକଙ୍କ ପାଖରେ ଅତ୍ୟନ୍ତ ପ୍ରିୟ ହୋଇପାରିଥିଲେ । ଚତୁର୍ଦ୍ଦିଗରେ ସେହି ଆଚରଣର କେବଳ ଏକ ଆନନ୍ଦକର ପ୍ରତିକ୍ରିୟା ଅନୁଭବ କରି ହେଉଥିଲା । ଯାତ୍ରାମୋହନ ଶ୍ରୀମତୀ ଗ୍ରେ'ଙ୍କ ପାଖକୁ ଏକ ବ୍ୟକ୍ତିଗତ ପତ୍ର ଲେଖି ଜଣାଇଥିଲେ ଯେ, ତାଙ୍କର ସୁଚରିତ୍ରା କନ୍ୟା ତାଙ୍କ ପରିବାରକୁ ଆସି ଶ୍ରୀବୃଦ୍ଧି ସାଧନ କରିପାରିଛି ଏବଂ ବଧୂ ହିସାବରେ ତାଙ୍କର ପୁତ୍ରର ଜୀବନରେ ଯଥାର୍ଥରେ ଏକ ଅମୂଲ୍ୟ ସମ୍ପଦ ହୋଇପାରିଛି । ଯତୀନ୍ଦ୍ରମୋହନ ମଧ୍ୟ ଅତ୍ୟନ୍ତ ପ୍ରସନ୍ନତା ଅନୁଭବ କରୁଥିଲେ ଯେ, ତାଙ୍କର ଚତୁର୍ଦ୍ଦିଗସ୍ଥ ସଂସାର ତାଙ୍କ ଲାଗି ସବୁ ଦୃଷ୍ଟିରୁ ଅନୁକୂଳ ହୋଇ ରହିଛି । ସିଏ ଯେ "କୌଣସି ଏକ ହଠାତ୍ ଆବେଗର

ବଶବର୍ତ୍ତୀ ହୋଇ ଭଲପାଇ ନଥିଲେ, ଏଥିରେ ଅବଶ୍ୟ ଏକ ସତ୍ୟ ନିହିତ ହୋଇ ରହିଥିଲା ଏବଂ ତାହା ଆମ୍ଭାଭାଗି ମଧ୍ୟ ଏକ ଐଶ୍ୱର୍ଯ୍ୟ ଯୋଗାଇ ଦେଉଥିଲା'', ସିଏ ସେଥିରେ ଅତ୍ୟନ୍ତ ହର୍ଷ ପ୍ରକାଶ କରୁଥିଲେ । ବର୍ଷ ପରେ ବର୍ଷ ବିତିଯାଉଥିବା ସଙ୍ଗେ ସଙ୍ଗେ ଯତୀନ୍ଦ୍ରମୋହନ ଓ ନେଲୀ ଉଭୟଙ୍କୁ ସମସ୍ତେ କେବଳ ଗୃହସଂସାରର ଚାରି କାନ୍ଥ ଭିତରେ ନୁହେଁ, ସାମାଜିକ ବୃହଦାୟତନ ତଥା ଜାତୀୟ କର୍ମମଞ୍ଚରେ ମଧ୍ୟ ଏକ ଆଦର୍ଶ ଦମ୍ପତି ବୋଲି ବର୍ଣ୍ଣନା କରିବାକୁ ଲାଗିଲେ । ସ୍ୱାମୀ କ୍ଷିପ୍ର ଗତିରେ ପ୍ରଖ୍ୟାତିରୁ ଅଧିକ ପ୍ରଖ୍ୟାତି ଆଡ଼କୁ ଅଗ୍ରସର ହେଉଥିଲେ ଏବଂ ସ୍ତ୍ରୀ ତାଙ୍କ ପଛରେ ଜଣେ ଯୋଗ୍ୟା ଶକ୍ତିଦାତ୍ରୀ ହୋଇ ରହିଥିବାର ସକଳ ପ୍ରମାଣ ଦେଉଥିଲେ । ସେମାନଙ୍କର ଉଭୟଙ୍କର ଜୀବନକୁ କେତେକାଂଶରେ ଦୈହିକ ଏବଂ କେତେକାଂଶରେ ଆତ୍ମିକ ଏକ ବିଚିତ୍ର ଆନନ୍ଦ ଉତ୍ତରୋତ୍ତର ବୃଦ୍ଧି ପାଉଥିବା ଆନନ୍ଦ ଏବଂ ସୁଖାନୁଭୂତିରେ ପୂର୍ଣ୍ଣ କରି ରଖିଥିଲା ।

ଶ୍ରୀମତୀ ଗ୍ରେ' କେମ୍ବ୍ରିଜ୍‌ଠାରେ ପୂର୍ଣ୍ଣବାର୍ଦ୍ଧକ୍ୟ ପର୍ଯ୍ୟନ୍ତ ଜୀବିତ ରହିଥିଲେ ଏବଂ ଭାରତର ମୁକ୍ତିସଂଗ୍ରାମରେ ତାଙ୍କର ସୁଯୋଗ୍ୟ ଜାମାତା କିପରି ନେତୃତ୍ୱର ଉଚ୍ଚ ସୋପାନଗୁଡ଼ିକୁ ଗୌରବ ସହିତ ଆରୋହଣ କରିବାରେ ଲାଗିଥିଲେ, ସେଥିରେ ଯଥାର୍ଥରେ ଗର୍ବ ଏବଂ ହର୍ଷ ଅନୁଭବ କରୁଥିଲେ । ତାଙ୍କର କନ୍ୟା ମଧ୍ୟ କିପରି ଜାତୀୟ କଂଗ୍ରେସର ସଭାପତି ହୋଇ ଜାତିର ଉଚ୍ଚତମ ସମ୍ମାନ ଲାଭ କରିଥିଲେ, ସେଥିରେ ମଧ୍ୟ ତାଙ୍କର କମ୍ ଆନନ୍ଦ ହୋଇ ନଥିଲା । ଆପଣାର ଦୁଇ ପୁଅ ଶିଶିର ଏବଂ ଅନିଲଙ୍କୁ ସଙ୍ଗରେ ନେଇ 1923 ମସିହାରେ ଥରେ ନେଲୀ କେମ୍ବ୍ରିଜରେ ଥିବା ତାଙ୍କ ମାଆଙ୍କ ପାଖକୁ ଯାଇଥିଲେ । ତାଙ୍କୁ ଛାଡ଼ି ଆସିବାର ପ୍ରାୟ ପନ୍ଦରବର୍ଷ ପରେ ଏହା ଘଟିଥିଲା । ଏବଂ ଆଉଥରେ 1931ରେ ଯତୀନ୍ଦ୍ରମୋହନ ଜଳବାୟୁ ପରିବର୍ତ୍ତନ ସକାଶେ ଇଂଲଣ୍ଡ ଯାଇଥିବା ସମୟରେ ମଧ୍ୟ କେବଳ ନେଲୀ ସ୍ୱାମୀଙ୍କ ସହିତ ସେଠାକୁ ଯାଇଥିଲେ ।

ସାମାଜିକ ମହଲରେ ବି ସମସ୍ତେ କେଡ଼େ ଉଷ୍ମତାର ସହିତ ଯତୀନ୍ଦ୍ରମୋହନଙ୍କର ଇଂରେଜୀ-ପତ୍ନୀଙ୍କୁ ଆପଣାର କରି ନେଇଥିଲେ, ଏଠାରେ ସେକଥାଟି ଉଲ୍ଲେଖ କରିବା ହୁଏତ ଆଦୌ ଅପ୍ରାସଙ୍ଗିକ ହେବ ନାହିଁ । ଦ୍ୱାରକାନାଥ ଗାଙ୍ଗୁଲିଙ୍କର କଲିକତା ବ୍ରାହ୍ମ ପରିବାରର ଜଣେ ଖ୍ୟାତିସଂପନ୍ନା ବଂଶଜ ଏବଂ ଅବିଚ୍ଛିନ୍ନ ବଙ୍ଗପ୍ରଦେଶର ଜଣେ ନାରୀନେତ୍ରୀ ମିସ୍ ଜ୍ୟୋତିର୍ମୟୀ ଗାଙ୍ଗୁଲି ଥରେ ବେଥୁନ କଲେଜର ଅଧକ୍ଷା କୁମୁଦିନୀ ଦାସ (ଖାସ୍ତଗିର୍)ଙ୍କ ଘରେ ସେନଗୁପ୍ତ ଦମ୍ପତିଙ୍କ ଆଗରେ ଗୋଟିଏ ଆଗ୍ରହୋଦ୍ଦୀପକ ଘଟଣାର ବର୍ଣ୍ଣନା କରି କହୁଥିଲେ । କୁମୁଦିନୀ ଦାସ ସେନଗୁପ୍ତଙ୍କର ମାଉସୀ ଥିଲେ । ଯତୀନ୍ଦ୍ରମୋହନ ନେଲୀଙ୍କୁ ସାଙ୍ଗରେ ନେଇ ଯେମିତି ସେହି ଅନୁଷ୍ଠାନଟିରେ ଆସି ପହଞ୍ଚିଲେ, ତତ୍‌କ୍ଷଣାତ୍ ସମସ୍ତଙ୍କର ଦୃଷ୍ଟି ତାଙ୍କରି ଉପରେ ଯାଇ କେନ୍ଦ୍ରିତ ହୋଇଗଲା । ସାଧାରଣତଃ ଇଂରେଜୀ ବୋହୂମାନେ ଯେପରି ହୋଇଥାଆନ୍ତି, ସିଏ ଆଦୌ ସେପରି ନ ଥିଲେ । ତାଙ୍କର ଅତି ଗୋରା ଚେହେରାଟି ସିଏ ପିନ୍ଧିଥିବା ବର୍ଣ୍ଣାଢ଼୍ୟ ଶାଢ଼ିଟି ମଧ୍ୟରେ ଆହୁରି ଅଧିକ ଗୋରା ଦେଖା ଯାଉଥିଲା, ଏବଂ ତାଙ୍କର ଉଜ୍ଜ୍ୱଳ ମୁଖମଣ୍ଡଳ ତାଙ୍କର ଚମତ୍କାର ବ୍ୟବହାର ଏବଂ ମନ ତଥା ଆତ୍ମାର ବିଚକ୍ଷଣତା ସହିତ ମିଶି ସେହି ଗହଣରେ ତାଙ୍କୁ ଏକ ସବୁଠାରୁ ଅଧିକ ଆକର୍ଷଣକାରୀ ବ୍ୟକ୍ତିତ୍ୱରେ ପରିଣତ କରି ଦେଉଥିଲା । ଏକ ଆନନ୍ଦମୟ ଅନୁଭୂତି ନେଇ ଅତିଥିମାନେ ବିଦାୟ ହୋଇଯିବା ପରେ ଏକ ମନଖୋଲା କଥାବାର୍ତ୍ତାରେ ଶ୍ରୀମତୀ ସେନଗୁପ୍ତ ମିସ୍ ଗାଙ୍ଗୁଲିଙ୍କୁ କହିଥିଲେ ଯେ, କେତେକ ସମାଲୋଚକ ଯାହା ମନ ତାହା କହନ୍ତୁ ପଛକେ, ସିଏ ଦୃଢ଼ଭାବରେ ବିଶ୍ୱାସ କରୁଥିଲେ ଯେ ବୋହୂଟିଏ ବାଛିଲାବେଳେ ସିଏ ପ୍ରକୃତରେ ଆଦୌ କୌଣସି 'ଭୁଲ୍' କରି ନାହାନ୍ତି ।

ଏହି ପ୍ରସଙ୍ଗରେ ଏଠାରେ ଜଣେ ପ୍ରଖ୍ୟାତ ବଙ୍ଗଳା ବିଦ୍ୱାନ୍ ଓ ଲେଖକ ଅଧ୍ୟାପକ ଜନାର୍ଦ୍ଦନ ଚକ୍ରବର୍ତ୍ତୀଙ୍କର ହୃଦୟସ୍ପର୍ଶୀ ପ୍ରଶଂସାବାକ୍ୟର ପୁନରୁଲ୍ଲେଖ କରିବାର ଆବଶ୍ୟକତା ରହିଛି । ଏକଦା ସେ ଶ୍ରୀମତୀ ନେଲୀ ସେନଗୁପ୍ତଙ୍କ ସମ୍ମୁଖରେ କହିଥିଲେ: ସ୍ୱାମୀ ଯତୀନ୍ଦ୍ରମୋହନଙ୍କ ଘରେ ସିଏ ଯେଉଁଦିନ ଆସି ପହଞ୍ଚିଲେ, ସେଦିନ ତାଙ୍କ ଘରେ ପ୍ରକୃତରେ ଏକ ସୁନାର ପ୍ରଦୀପ ପ୍ରଦୀପ୍ତ ହୋଇ ଉଠିଲା । ଏକାଧିକ ଦଶକ ଧରି ସେହି ଦୀପଟି ଯାବତୀୟ ପ୍ରତିବନ୍ଧକ ଭିତରେ ମଧ୍ୟ ପ୍ରଜ୍ୱଳିତ ହୋଇ ରହିଥିଲା ଏବଂ ବୃହତ୍ତର ଜାତୀୟ ରଙ୍ଗମଞ୍ଚକୁ ମଧ୍ୟ ଆଲୋକିତ କରିଥିଲା । ଏହିଥିରୁ ହିଁ ସେହି ରମଣୀଙ୍କର ମାତୃ-ଆତ୍ମାର ସର୍ଜନାତ୍ମକ ପ୍ରଭାବ ତଥା ଦୀପ୍ତିମନ୍ତ ଜୀବନୋତ୍ସାହର ଏକ ପରିଚୟ ମିଳିଯାଇ ପାରିବ ।

ଏହି ଅଧ୍ୟାୟଟି ଶେଷ କରିବା ପୂର୍ବରୁ ଏପରି ବେଶ୍ କୁହାଯାଇ ପାରିବ ଯେ, ନେଲୀ ଗ୍ରେ'ଙ୍କ ସହିତ ଯତୀନ୍ଦ୍ରମୋହନଙ୍କର ବିବାହ ଅନେକ ସମୟରେ ଉଦ୍ଧୃତ ହେଉଥିବା କିପ୍‌ଲିଙ୍ଗ୍‌ଙ୍କର ଅନୁମାନଟିକୁ ଅତ୍ୟନ୍ତ ସାହସର ସହିତ ମିଥ୍ୟା ବୋଲି ପ୍ରମାଣ କରି ଦେଉଥିଲା:

''ହିଁ, ପ୍ରାଚ୍ୟ କେବଳ ପ୍ରାଚ୍ୟ, ପାଶ୍ଚାତ୍ୟ କେବଳ ପାଶ୍ଚାତ୍ୟ
ଏବଂ ଦୁହିଁଙ୍କର ମିଳନ କେବେହେଲେ ସମ୍ଭବ ନୁହେଁ.....''

ବରଂ ଆମେ ତାହା ପରିବର୍ତ୍ତେ ଏକଥାଟିକୁ ଘୋଷଣା କରି କହିପାରିବା-

''ପ୍ରାଚ୍ୟ ଓ ପାଶ୍ଚାତ୍ୟ ଏକତ୍ର
ତାହା ହିଁ ସର୍ବୋତ୍ତମ ।''

# ମୁଖ୍ୟ ଭାଗରେ ରାଜନୀତି

### ଚିଟାଗଙ୍ଗ ଏକ ଯଥାର୍ଥ କେନ୍ଦ୍ର

ପରବର୍ତ୍ତୀ କେତୋଟି ବର୍ଷ ମଧ୍ୟରେ ଚିଟାଗଙ୍ଗ ପୁନର୍ବାର କେତେକ ଉଲ୍ଲେଖଯୋଗ୍ୟ ଘଟଣାର କେନ୍ଦ୍ରବିନ୍ଦୁ ରୂପେ ପରିଚିତ ହୋଇଥିଲା । ସେଗୁଡ଼ିକ ମଧ୍ୟରୁ ଗୋଟିଏ ଘଟଣା ଜାତୀୟ ଦୃଷ୍ଟିକୋଣରୁ ପ୍ରକୃତରେ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଥିଲା, କାରଣ ସେତେବେଳର ଉଦୀୟମାନ ନେତା ଚିତ୍ତରଂଜନ ଦାଶଙ୍କର ରାଜନୀତିକ ପ୍ରଭାବଶାଳିତା ଏବଂ ବିକଶିତ ହୋଇ ଆସୁଥିବା ତାଙ୍କର ଅନୁଗାମୀ ଯତୀନ୍ଦ୍ରମୋହନ ସେନଗୁପ୍ତଙ୍କର ଆତ୍ମପ୍ରକାଶ ଦ୍ୱାରା ତାହା ସଂଗ୍ରଥିତ ହୋଇ ରହିଥିଲା । ଆଲୋଚିତ ଘଟଣାଗୁଡ଼ିକ ପ୍ରକୃତରେ ଏତେ ମହତ୍ତ୍ୱପୂର୍ଣ୍ଣ ବୋଲି ସେତେବେଳେ ସମସ୍ତେ ଯଥେଷ୍ଟ ପରିମାଣରେ ବୁଝି ନ ଥିଲେ ସତ, ମାତ୍ର ତାହାର ମହତ୍ତ୍ୱ ପ୍ରକୃତରେ ବହୁଦୂରସ୍ପର୍ଶୀ ଥିଲା ।

ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ ହେବାର ଅବ୍ୟବହିତ ପରେ ବିପ୍ଳବୀ ବୋଲି ଅଭିଯୁକ୍ତ କେତେକ ଦେଶଭକ୍ତ ତରୁଣଙ୍କୁ ଭାରତରକ୍ଷା ଆଇନରେ ପକାଇ ଦେଶାନ୍ତର-ଦଣ୍ଡ ଦିଆଯାଇଥିଲା ଏବଂ ସେମାନଙ୍କ ମଧ୍ୟରୁ କେତେଜଣଙ୍କୁ ଚିଟାଗଙ୍ଗର ଅନତିଦୂରରେ ଅବସ୍ଥିତ କୁତୁବ୍‌ଦିଆ ନାମକ ଗୋଟିଏ କ୍ଷୁଦ୍ର ନିର୍ଜନ ଦ୍ୱୀପରେ ଅନ୍ତରୀଣ ବନ୍ଦୀରୂପେ ରଖା ଯାଇଥିଲା । ଦୀର୍ଘକାଳ ଧରି ଏହି ବନ୍ଦୀମାନେ ନାନାବିଧ ଅସୁବିଧା ହେତୁ ଅତ୍ୟନ୍ତ ଦୁଃଖ ଭୋଗ କରୁଥିଲେ; ସେଠାରେ ସେମାନଙ୍କୁ ଜଗିକରି ରହିଥିବା କର୍ମଚାରୀମାନେ ମଧ୍ୟ ସେମାନଙ୍କ ପ୍ରତି ଅତ୍ୟନ୍ତ ମନ୍ଦ ବ୍ୟବହାର କରୁଥିଲେ । ସେଠାରେ ସେମାନଙ୍କର ଜୀବନଧାରଣର ପରିସ୍ଥିତି ଯେତେବେଳେ ଅସହନୀୟ ହୋଇପଡ଼ିଲା, ସେତେବେଳେ 17 ଜଣ ଅନ୍ତରୀଣ ବନ୍ଦୀ ଏକାବେଳେକେ ଆଶା ହରାଇ ବସିଲେ ଏବଂ ଅତୀବ ସାହସିକତା ସହିତ ଦ୍ୱୀପସ୍ଥ ସେହି ଶିବିର ଛାଡ଼ି ପଳାଇ ଆସିଥିଲେ । କେତେଜଣ ନୌକାରେ ଆସିଲେ, ଆଉ କେତେଜଣ ବିକ୍ଷୁବ୍ଧ ଉପସାଗରକୁ ପହଁରି ପହଁରି ପାରହୋଇ ଆସିଥିଲେ । ଜିଲ୍ଲା କର୍ତ୍ତୃପକ୍ଷମାନଙ୍କ ପାଖରେ ନିଜେ ଆସି ନିଜର ଦାବିଗୁଡ଼ିକୁ ଜଣାଇବା ହିଁ ଏପରି କରିବାର ଉଦ୍ଦେଶ୍ୟ ଥିଲା । ସହରରେ ସେମାନେ ପହଞ୍ଚିବା ମାତ୍ରକେ ସେମାନଙ୍କୁ ଅବଶ୍ୟ ସଙ୍ଗେ ସଙ୍ଗେ ଘେରି ନିଆଗଲା । ଅଟକବନ୍ଦୀ ହୋଇ ରହିବାର ଆଇନ ଓ କଟକଣାଗୁଡ଼ିକୁ ଭଙ୍ଗ କରିଥିବାରୁ ଏକ ବିଶେଷ ବିଚାରାଳୟରେ ସେମାନଙ୍କର ବିଚାର ହୋଇଥିଲା । (ଜୁନ୍, 1918)

ମଣ୍ଟେଗୁ-ଚେମ୍‌ସ୍‌ଫୋର୍ଡ ସଂସ୍କାର-ଯୋଜନାକୁ ନେଇ ନାନା ମତଭେଦ ଏବଂ ତଜ୍ଜନିତ ଅସନ୍ତୋଷ ନେଇ ସେତେବେଳେ ଦେଶର ରାଜନୀତିକ ଦିଗ୍‌ବଳୟ ଅନ୍ଧକାରାଚ୍ଛନ୍ନ ହୋଇ ରହିଥିଲା । ଲୋକମାନ୍ୟ ବାଳଗଙ୍ଗାଧର ତିଳକ ଏବଂ ଚିତ୍ତରଂଜନ ଦାଶଙ୍କର ନେତୃତ୍ୱରେ ପରିଚାଳିତ କଂଗ୍ରେସର ଚରମପନ୍ଥୀ ଶାଖା ସେହି ଯୋଜନାଟିକୁ ନିରାଶାଜନକ, ଅସନ୍ତୋଷପୂର୍ଣ୍ଣ ଏବଂ ତେଣୁ ଅଗ୍ରହଣୀୟ ବୋଲି ଘୋଷଣା କରିଥିଲେ; ଅପର ପକ୍ଷରେ ସୁରେନ୍ଦ୍ରନାଥ ବାନର୍ଜୀଙ୍କ ଦ୍ୱାରା ପରିଚାଳିତ ଉଦାରପନ୍ଥୀମାନେ ତାହାକୁ ପରୀକ୍ଷଣୀୟ ବୋଲି କହି ତାହାର ସ୍ୱାଗତ କରିଥିଲେ । ଏହିପରି ଏକ ଘଡ଼ିସନ୍ଧି ସମୟରେ ମଧ୍ୟ

କୁତୁବ୍‌ଦିଆ ଅଟକବନ୍ଦୀ ମାନଙ୍କଠାରୁ ତାରବାର୍ତ୍ତା ପାଇ ପ୍ରଖ୍ୟାତ ବାରିଷ୍ଟର ଏବଂ ଦେଶଭକ୍ତ ଚିତ୍ତରଂଜନ ଦାଶ ବିଚାରାଳୟରେ ସେମାନଙ୍କ ପକ୍ଷରୁ ମୋକଦ୍ଦମା ଲଢ଼ିବାର ନୈତିକ କର୍ତ୍ତବ୍ୟଟିକୁ ଆଦୌ ଏଡ଼ିଦେଇ ନ ଥିଲେ । ବିଚାରାଧୀନ ସତରଜଣ ଯୁବକଙ୍କ ତରଫରୁ ମୋକଦ୍ଦମା ପରିଚାଳନା କରିବାଲାଗି ସେ କୌଣସି କାଳବିଳମ୍ୱ ନ କରି ଚିଟାଗଙ୍ଗ୍ ଉଦ୍ଦେଶ୍ୟରେ ଯାତ୍ରା କରିଥିଲେ । ଢାକାର ଏ. କେ. ଫଜଲୁଲ ହକ୍ ଏବଂ ଶ୍ରୀଶଚନ୍ଦ୍ର ଚାଟର୍ଜୀ ଶ୍ରୀଯୁକ୍ତ ଦାଶଙ୍କର ପ୍ରଥମଶ୍ରେଣୀୟ ସହକାରୀ ପରାମର୍ଶଦାତା ଥିଲେ, ଯତୀନ୍ଦ୍ରମୋହନ ସେନଗୁପ୍ତ ମଧ ତାଙ୍କର ଦ୍ୱିତୀୟଶ୍ରେଣୀୟ ପରାମର୍ଶଦାତା-ସହକାରୀ ଭାବରେ ତାଙ୍କ ସହିତ ଯୋଗ ଦେଇଥିଲେ । କୁତୁବ୍‌ଲୋ ମୋକଦ୍ଦମା ସଂକ୍ରାନ୍ତରେ ସେଠାରେ ଚିତ୍ତରଂଜନଙ୍କୁ ଯେଉଁ ଦୁଇ ସପ୍ତାହ ରହିବାକୁ ପଡ଼ିଥିଲା, ସେତେବେଳେ ତାଙ୍କର ନିବାସ ତଥା ବିଚାରାଳୟ ଉଭୟ ସ୍ଥାନରେ ଯତୀନ୍ଦ୍ରମୋହନ ହିଁ ତାଙ୍କର ସବୁଠାରୁ ଅଧିକ ନିକଟବର୍ତ୍ତୀ ହୋଇ ରହିଥିଲେ ।

ଉଭୟ ବୟସ ଏବଂ ଓକିଲାତିର ଅଭିଜ୍ଞତାରେ ସାନ ଥିଲେ ମଧ ଶ୍ରୀଯୁକ୍ତ ସେନଗୁପ୍ତ ସରକାରୀ ସାକ୍ଷୀମାନଙ୍କୁ ଟିକିନିଖି କରି ଜେରା କରିବାରେ କେତେକ କ୍ଷେତ୍ରରେ ଏକ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ତାଙ୍କର ତୀକ୍ଷ୍ଣ ସିଧା ଜବାବଗୁଡ଼ିକ ଥରେ ଜଣେ ବିଚାରକ କମିଶନରଙ୍କୁ ମଧ ଅଡୁଆରେ ପକାଇ ଦେଇଥିଲା (ସେକଥା ଏହି ଲେଖକର ଏବେ ମଧ ମନେଅଛି) । ଘଟଣାଟି ଏହିପରି ଭାବରେ ଘଟିଥିଲା: ଅପରାଧୀମାନେ ଅଭିଯୋଗ କରିଥିଲେ ଯେ, ସେମାନଙ୍କୁ ଗାଧୋଇବା ସାବୁନ ମିଳୁ ନ ଥିଲା । ସରକାରୀ ପକ୍ଷର ଜଣେ ସାକ୍ଷୀଙ୍କୁ ଜେରା କରାଯାଉଥିବାବେଳେ ଜନୈକ କମିଶନର୍ ମନ୍ତବ୍ୟ ଦେଇ କହିଥିଲେ: ''ଆମ ପିଲାଦିନେ ତ ଆମେ କେବେ ସାବୁନ ଛୁଇଁ ବି ନ ଥିଲୁ, ସାବୁନ ବ୍ୟବହାର କରିବା ତ ଆହୁରି ଦୂରର କଥା ।'' ଏପରି ଗୋଟିଏ ସୁଯୋଗକୁ ଯତୀନ୍ଦ୍ରମୋହନ ହାତରୁ ଛାଡ଼ିଦେବାକୁ ଇଚ୍ଛା କରୁ ନ ଥିଲେ । ସିଏ ଛିଡ଼ାହୋଇ ପଡ଼ି ସଙ୍ଗେ ସଙ୍ଗେ ଉତ୍ତର ଦେଲେ, ''ଧର୍ମାବତାର, ଏହା ବିଲ୍‌କୁଲ୍ ସତ କଥା । ବର୍ତ୍ତମାନ ମଧ ବିଲାତରେ ଏପରି କେତେକ ଲୋକ ଅଛନ୍ତି ଯେଉଁମାନେ କି ମଇଳା ରହିବାକୁ ଅଧିକ ପସନ୍ଦ କରନ୍ତି ।'' ବିଚାରାଳୟରେ ଉପସ୍ଥିତ ଥିବା ସମସ୍ତେ ଏକଥା ଶୁଣି ହୋ' ହୋ' ହୋଇ ହସିଉଠିଲେ ଏବଂ କୁରସୀରେ ବସିଥିବା ବିଚାରପତି ମାନଙ୍କ ମୁହଁ ବନ୍ଦ ହୋଇ ଯାଇଥିଲା ।

ଆପଣାର ଟିକିନିଖି ଜେରା ଫଳରେ ଶ୍ରୀ ଦାଶ ମୋକଦ୍ଦମାଟିକୁ ଅତ୍ୟନ୍ତ ସରଳ କରି ଦେଇଥିଲେ, ଅଟକବନ୍ଦୀମାନଙ୍କ ବିରୋଧରେ ଅଣା ଯାଇଥିବା ଅଭିଯୋଗଗୁଡ଼ିକର ମହତ୍ତ୍ୱପୂର୍ଣ୍ଣ ସ୍ଥଳଗୁଡ଼ିକରେ ସାକ୍ଷୀମାନଙ୍କୁ ଅଡୁଆରେ ପକାଇ ଦେଇଥିଲେ ଏବଂ ଯୁକ୍ତି କରି କହିଥିଲେ ଯେ, ଅଟକବନ୍ଦୀମାନେ ପ୍ରକୃତରେ ପଳାଇ ଯାଇ ନାହାନ୍ତି; ସେମାନଙ୍କର ରହିବା ଅବସ୍ଥା ଓ ପ୍ରାପ୍ୟ ପ୍ରଭୃତି ବିଷୟରେ ନିଜର ବୈଧ ପ୍ରକୃତ ଆପତ୍ତିଗୁଡ଼ିକୁ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ପାଖରେ ଜଣାଇବା ଉଦ୍ଦେଶ୍ୟରେ ହିଁ ସେମାନେ ଦ୍ୱୀପରୁ ଚିଟାଗଙ୍ଗ ଆସିଛନ୍ତି । ତେଣୁ ସେହି କ୍ଷେତ୍ରରେ ସେମାନେ ଆଇନ ଭଂଗ ଅଥବା ସେହିଭଳି କିଛି କରିଥିବାର ଆଦୌ କୌଣସି ପ୍ରଶ୍ନ ଉଠୁନାହିଁ । ବିଚାରକ ମଣ୍ଡଳୀ ତଥାପି ସେମାନଙ୍କୁ ଦୋଷୀ ବୋଲି ଘୋଷଣା କଲେ ଓ ସମ୍ଭବତଃ କେବଳ ସାମ୍ରାଜ୍ୟ-ଶାସନର ମାନରକ୍ଷା ଦୃଷ୍ଟିରୁ ସେମାନଙ୍କୁ ଆଉ ତିନିମାସ ଜେଲ୍‌ଦଣ୍ଡରେ ଦଣ୍ଡିତ କରିଥିଲେ ।

ସଂଯୋଗବଶତଃ, ଏହି ରହଣିଟି ବେଳରେ ଚିତ୍ତରଂଜନ ଦାଶ ଚିଟାଗଙ୍ଗର ଜଣେ ପ୍ରମୁଖ ଓକିଲ ତଥା ନାଗରିକ ଯାତ୍ରାମୋହନ ସେନ୍ (ଯତୀନ୍ଦ୍ରମୋହନଙ୍କର ବାପା)ଙ୍କ ଘରେ ଜଣେ ସମ୍ମାନିତ

ଅତିଥି ହୋଇ ରହିଥିଲେ । ଯାତ୍ରାମୋହନ ଚିତ୍ତରଂଜନଙ୍କୁ ଏତେ ଅଧିକ ସମ୍ମାନ କରୁଥିଲେ ଯେ, କୌଣସି ଉଚ୍ଚପଦସ୍ଥ ବ୍ୟକ୍ତି ଅଥବା ଗୁରୁଜନଙ୍କୁ ସମ୍ମାନ ଦେଖାଇବାର ପାରମ୍ପରିକ ବଙ୍ଗୀୟ ପଦ୍ଧତିରେ ସେ ତାଙ୍କର ପଦଧୂଳି ଗ୍ରହଣ କରୁଥିଲେ । (ଦେଶବନ୍ଧୁଙ୍କର ଜୀବନୀଲେଖକ ଏଚ୍. ଏନ୍. ଦାସଗୁପ୍ତଙ୍କୁ ସ୍ୱୟଂ ଯତୀନ୍ଦ୍ରମୋହନ ଏକଥା କହିଥିଲେ)

ସମାନ ଭାବରେ ଉଲ୍ଲେଖଯୋଗ୍ୟ ଆଉ ଗୋଟିଏ କଥା ହେଉଛି ଯେ, ଆଦୌ କୌଣସି ପାରିଶ୍ରମିକ ଗ୍ରହଣ ନ କରି ଚିତ୍ତରଂଜନ ଦାଶ ପ୍ରାୟ ପନ୍ଦରଦିନ ସେଠାରେ ରହି କୁତୁବ୍‌ଦିଆ ମୋକଦ୍ଦମା ଲଢ଼ିଥିଲେ (ଆପଣାର ଆବଶ୍ୟକ ଖର୍ଚ୍ଚ ମେଣ୍ଟାଇବା ପାଇଁ ବସ୍ତୁତଃ ତାଙ୍କୁ ଟଙ୍କା ଧାର କରିବାକୁ ହୋଇଥିଲା) । ବିଚାର ଶେଷରେ ତାଙ୍କୁ ତିନିଚାରୋଟି ଅତି ଜଟିଳ ଫୌଜଦାରୀ ମକଦ୍ଦମାର ବିଚାରରେ ଲଢ଼ିବାପାଇଁ ନିବେଦନ କରାଯାଇଥିଲା; ସେଥିରେ ତାଙ୍କୁ ପାରିଶ୍ରମିକ ରୂପେ ବହୁ ଅର୍ଥ ମିଳିଥାଆନ୍ତା, ପ୍ରାୟ କୋଡ଼ିଏରୁ ତିରିଶି ହଜାର ଟଙ୍କା ମିଳିଥାନ୍ତା । ମାତ୍ର ଶୀଘ୍ର କଲିକତା ଫେରିଯିବା ଲାଗି ଏବଂ ତାଙ୍କର ଭାବନାରେ ସବାଆଗରେ ରହିଥିବା ରାଜନୀତିକ ସମସ୍ୟାଗୁଡ଼ିକର (ପୂର୍ବରୁ ଯେପରି କୁହାଯାଇଛି) ସମ୍ମୁଖୀନ ହେବାଲାଗି ବ୍ୟଗ୍ର ହେଉଥିବାରୁ ସେ ସେଗୁଡ଼ିକୁ ଗ୍ରହଣ କରି ନ ଥିଲେ । ନିଜର ପ୍ରବୀଣ ରାଜନୀତିକ ଗୁରୁଙ୍କର ଏହି ତ୍ୟାଗଭାବନା ତାଙ୍କର ତରୁଣ ଅନୁଗାମୀ ଯତୀନ୍ଦ୍ର ମୋହନଙ୍କ ଉପରେ ଅବଶ୍ୟ ଗଭୀର ପ୍ରଭାବ ପକାଇଥିବ । ସେ ଚିତ୍ତରଂଜନଙ୍କର ଅତ୍ୟନ୍ତ ନିକଟବର୍ତ୍ତୀ ହୋଇ ରହିଥିଲେ ଏବଂ ନିମ୍ନୋକ୍ତ ଆଉ ଦୁଇଟି ବଡ଼ ଘଟଣାରୁ ମଧ୍ୟ ଅତ୍ୟନ୍ତ ଗଭୀର ପ୍ରେରଣା ଲାଭ କରିଥିଲେ ।

### ଦେଶବନ୍ଧୁଙ୍କର ସ୍ମରଣୀୟ ବକ୍ତୃତା

ଜାତୀୟ ମହତ୍ତ୍ୱ ଦୃଷ୍ଟିରୁ ସ୍ମରଣୀୟ ହୋଇ ରହିଥିବା ଚିତ୍ତରଂଜନଙ୍କର ଦୁଇଟି ବକ୍ତୃତା ତାଙ୍କର ଚିଟାଗଙ୍ଗ ରହଣି ସମୟର ଏକ ପ୍ରଧାନ ଘଟଣା । ଭାରତବର୍ଷର ପରବର୍ତ୍ତୀ ରାଜନୀତିକ ନେତୃତ୍ୱରେ ଯେଉଁ ବୃହତ୍ ଓ ପ୍ରଭାବପ୍ରସାରୀ ପରିବର୍ତ୍ତନ ହେବାକୁ ଯାଉଥିଲା, ଗୋଟିଏ ବକ୍ତୃତାରେ ଚିତ୍ତରଂଜନ ତାହାରି ସୂଚନା ଦେଇଥିଲେ ଏବଂ ପରେ ସେହି ବକ୍ତୃତାଟିର ଏକ ସୁଦୂରପ୍ରସାରୀ ପରିଣାମ ମଧ୍ୟ ଦେଖିବାକୁ ମିଳିଲା ।

1918 ମସିହା ଜୁନ୍ 18 ତାରିଖରେ ପ୍ରଥମ ବକ୍ତୃତାଟି ଦିଆ ହୋଇଥିଲା । 'ସାଂପ୍ରତିକ ପରିସ୍ଥିତି' ବିଷୟରେ, ବସ୍ତୁତଃ ମଣ୍ଟଫୋର୍ଡ ସଂସ୍କାର ଯୋଜନା ବିଷୟରେ ପ୍ରଖ୍ୟାତ ବାରିଷ୍ଟର ଚିତ୍ତରଂଜନଙ୍କର ବକ୍ତୃତା ଶୁଣିବାପାଇଁ ସେଦିନ ଚିଟାଗଙ୍ଗ ସହରର ବୁଦ୍ଧିଜୀବୀ ଓ ଛାତ୍ରମାନେ ସଦରଘାଟର ବିଶ୍ୱମ୍ଭର ହଲ୍‌ରେ ବହୁସଂଖ୍ୟାରେ ଆସି ଉପସ୍ଥିତ ହୋଇଥିଲେ । ଚରମପନ୍ଥୀମାନେ ଭାରତବର୍ଷରେ କ୍ରମଶଃ ଜାଗ୍ରତ ହୋଇ ଆସୁଥିବା ଜାତୀୟତାବାଦ ଲାଗି ଏହି ସଂସ୍କାରଯୋଜନାକୁ ଏକ ଆହ୍ୱାନ ବୋଲି ବିଚାର କରୁଥିଲେ । ଆପଣାର ବହୁବ୍ୟସ୍ତ କାର୍ଯ୍ୟନିର୍ଘଣ୍ଟ ଗୁଡ଼ିକରୁ ପ୍ରାୟ ଘଣ୍ଟାଏ ସମୟ ବାହାର କରି ଚିତ୍ତରଂଜନ ଚିଟାଗଙ୍ଗ ଆସୋସିଏସନ ଦ୍ୱାରା ଆହୂତ ଏହି ସାଧାରଣ ସଭାରେ ଭାଷଣ ଦେବାକୁ ଆସିଥିଲେ । ଚିତ୍ତରଂଜନ ଯାହାଙ୍କ ଘରେ ଅତିଥି ହୋଇ ରହିଥିଲେ ସେହି ବୟୋବୃଦ୍ଧ ଯାତ୍ରାମୋହନ ସେନ ଉକ୍ତ ସଭାରେ ସଭାପତିତ୍ୱ କରିଥିଲେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଯତୀନ୍ଦ୍ରମୋହନ ସ୍ୱୟଂ ସଭାପତିର କାର୍ଯ୍ୟ ନିର୍ବାହ କରିବା ଲାଗି ଯାତ୍ରାମୋହନଙ୍କ ନାମ ପ୍ରସ୍ତାବ କରିଥିଲେ ।

ଚିତ୍ତରଂଜନଙ୍କର ବଜ୍ରନିର୍ଘୋଷ ପରି ପ୍ରବଳ ଏହି ବକ୍ତୃତା ପୂରା ଦେଢ଼ଘଣ୍ଟା ଲାଗିଥିଲା । ଭାରତୀୟ ରାଜନୀତିକ ଉଦ୍ଦେଶ୍ୟ ଏବଂ ଆକାଙ୍କ୍ଷାର ପରିପ୍ରେକ୍ଷୀରେ ସେ ସଂପ୍ରତି ଆସିଥିବା ସଂସ୍କାର-ପ୍ରସ୍ତାବ ଗୁଡ଼ିକର ବିଶ୍ଳେଷଣ କରିଥିଲେ ଏବଂ କଠୋରତମ ଭାଷାରେ ସେଗୁଡ଼ିକର ଶୂନ୍ୟଗର୍ଭତାକୁ ଖୋଲି ଦେଖାଇ ଦେଇଥିଲେ । ତଥାକଥିତ 'ସଂସ୍କାର'ଗୁଡ଼ିକୁ ସ୍ୱାଗତ ଜଣାଇ ସୁରେନ୍ଦ୍ରନାଥ ବାନର୍ଜୀ ଯେଉଁ ମତ ପୋଷଣ କରିଥିଲେ, ଚିତ୍ତରଂଜନ ତାହାକୁ ଏକ ଛେଶ-ପରିବର୍ତ୍ତନ ବୋଲି ଘୋଷଣା କରି ଅତ୍ୟନ୍ତ ଦୃଢ଼ ଭାବରେ ତାହା ଉପରେ ଆକ୍ରମଣ ମଧ କରିଥିଲେ । ଶ୍ରୀଯୁକ୍ତ ବାନର୍ଜୀ ଏପର୍ଯ୍ୟନ୍ତ ଯେଉଁ ପ୍ରାଦେଶିକ ସ୍ୱତନ୍ତ୍ରତା ଦାବି କରି ଆସିଥିଲେ, ଶାସନସଂସ୍କାରର ଏହି ପ୍ରସ୍ତାବକୁ ସେ ତାହାର କେବଳ ଏକ ଛାୟା ଏବଂ ପ୍ରତାରଣାକାରୀ ରୂପ ବୋଲି ବର୍ଣ୍ଣନା କରିଥିଲେ । ଶ୍ରୀ ବାନର୍ଜୀ ତାଙ୍କର ମୁଖପତ୍ର 'ଦି ବେଙ୍ଗଲି' କାଗଜରେ ପୂର୍ବରୁ ଯାହାସବୁ ଲେଖିଥିଲେ ଚିତ୍ତରଂଜନ ବିସ୍ତୃତ ଭାବରେ ସେଥିରୁ ଅଂଶମାନ ଉଦ୍ଧାର କରିଥିଲେ ଏବଂ ପରବର୍ତ୍ତୀ କାଳରେ ତାଙ୍କର ଏହି ପରିବର୍ତ୍ତନର ଅଯୌକ୍ତିକତାକୁ ତନ୍ନତନ୍ନ କରି ଦେଖାଇ ଦେଇଥିଲେ । ଅଧିକନ୍ତୁ, ଚିତ୍ତରଂଜନ ଜଣେ ଆଇନଜୀବୀର ମାର୍ଗରେ ଏହି ପ୍ରସ୍ତାବଟିର ଖିନ୍‌ଭିନ୍ ପରୀକ୍ଷା କରିଥିଲେ ଏବଂ ତାଙ୍କର ଅଭ୍ୟାସଗତ ଭାବପ୍ରବଣତା ଦ୍ୱାରା ଏପରି ଆତ୍ମବିସ୍ମୃତ ହୋଇ ଯାଇଥିଲେ ଯେ, ଏପର୍ଯ୍ୟନ୍ତ ତୁଙ୍ଗତମ ରାଜନୀତିକ ବୀରପୁରୁଷ ବୋଲି ପରିଦୃଷ୍ଟ ହୋଇ ଆସିଥିବା (ରାଷ୍ଟ୍ରଗୁରୁ) ସୁରେନ୍ଦ୍ରନାଥଙ୍କୁ ସେ ଜଣେ 'ପ୍ରତାରକ' ବୋଲି କହିଥିଲେ । ସେ ଘୋଷଣା କରିଥିଲେ, "ମୁଁ ଅତ୍ୟନ୍ତ କଠୋର ଭାଷା ପ୍ରୟୋଗ କରି ଏପରି କହିଲି, କାରଣ ମୁଁ ଅତ୍ୟନ୍ତ ଗଭୀର ଭାବରେ ସେହିପରି ଅନୁଭବ କରୁଛି; ମୁଁ ଅନୁଭବ କରୁଛି ଯେ, ଆପଣାର ଏହି ମନୋଭାବ ଦ୍ୱାରା ଜନମତକୁ ଏପରି ଭାବରେ ଅବଜ୍ଞା ପ୍ରଦର୍ଶନ କରିବାଯୋଗୁଁ ସେ ମୋ' ପିଠିରେ ଆସି ଛୁରା ଭୁଷି ଦେଇଛନ୍ତି ।"

ବକ୍ତୃତା-କକ୍ଷଟି ଯେ ଚିତ୍ତରଂଜନଙ୍କର ଅଗ୍ନିମୟ ଭାଷଣରେ କେବଳ ମନ୍ତ୍ରମୁଗ୍ଧ ହୋଇ ରହିଥିଲା ତା' ନୁହେଁ, ସେହି ଭାଷଣ ଦ୍ୱାରା ଆତ୍ମବିସ୍ମୃତ ହୋଇଥିବା ଶ୍ରୋତୃମଣ୍ଡଳୀର ସହର୍ଷ କରତାଳି ଦ୍ୱାରା ତାହା ପ୍ରତିଧ୍ୱନିତ ହୋଇ ଉଠିଥିଲା । ପୁନଶ୍ଚ, ଯେତେବେଳେ ଚିଟାଗଙ୍ଗର ଉଦୀୟମାନ ଗୌରବ ସ୍ୱରୂପ ଯତୀନ୍ଦ୍ରମୋହନ ସେହି ସନ୍ଧ୍ୟାର ବିଶିଷ୍ଟ ଆମନ୍ତ୍ରିତ ବକ୍ତାଙ୍କୁ ଧନ୍ୟବାଦ ଜଣାଇବାକୁ ଉଠି ଛିଡ଼ାହେଲେ, ସେତେବେଳେ ମାତ୍ର କେତୋଟି ସେକେଣ୍ଡ୍ ମଧରେ ସେହି ମନ୍ତ୍ରମୁଗ୍ଧ କକ୍ଷର ସମ୍ମୋହିତ ଜନତା ପ୍ରେରଣାର ଆହୁରି ଏକ ପ୍ରଭାମଣ୍ଡଳ ଦ୍ୱାରା ପରିପ୍ରେରିତ ହୋଇ ଉଠିଥିଲା । ତାଙ୍କର ପୂର୍ବନିର୍ଦ୍ଧାରିତ ଗୁରୁଙ୍କର ପ୍ରଭାବଶାଳୀ ବାଗ୍ମିତା ଦ୍ୱାରା ଅତ୍ୟନ୍ତ ସ୍ପଷ୍ଟ ଓ ଦୃଶ୍ୟମାନ ଭାବରେ ପ୍ରଭାବିତ ହୋଇ ଶ୍ରୀ ଯତୀନ୍ଦ୍ରମୋହନ କହିଲେ ଯେ, ଚିତ୍ତରଂଜନଙ୍କର ଏହି ଘୋଷଣା ଭାରତବର୍ଷର ରାଜନୀତିକ ଅଗ୍ରଗତିରେ ଅଚିରେ ଏକ ନୂତନ ଯୁଗର ପ୍ରବର୍ତ୍ତନ କରାଇବ ଏବଂ ସେ ଅତ୍ୟନ୍ତ ହର୍ଷ ପ୍ରକାଶ କରୁଛନ୍ତି ଯେ, ସେହି ଯୁଗ ତାଙ୍କର ନିଜ ଜନ୍ମସ୍ଥାନ ଚିଟାଗଙ୍ଗରୁ ହିଁ ଆରମ୍ଭ ହୋଇଛି । ବସ୍ତୁତଃ, ଏହା ହେଉଛି ସାଧାରଣ ସଭାରେ ଯତୀନ୍ଦ୍ରମୋହନଙ୍କର ସର୍ବପ୍ରଥମ ବକ୍ତୃତା । ଏବଂ ଏହାର ପ୍ରଭାବ ଅତ୍ୟନ୍ତ ଗଭୀର ଭାବରେ ପଡ଼ିଥିଲା ।

ତାହାର ଚାରିଦିନ ପରେ (22 ଜୁନ୍, 1918) ଚିତ୍ତରଂଜନ ତାଙ୍କର ଦ୍ୱିତୀୟ ବକ୍ତୃତା ଦେଇଥିଲେ । ନରମପନ୍ଥୀମାନଙ୍କୁ ଆହୁରି ଅଧିକ ପଦାରେ ପକାଇଦେଇ, ବିଶେଷତଃ ସୁରେନ୍ଦ୍ରନାଥ ବାନର୍ଜୀଙ୍କର କଠୋର ଟୀକା କରି ସେ କହିଥିଲେ, "କୌଣସି ନେତା ଅପରିହାର୍ଯ୍ୟ ନୁହେଁ । ଅସଲ ବଳ ହେଉଛି ଜାତିର ବଳ । ଯେଉଁମାନେ ପ୍ରକୃତ ପଥଟିକୁ ଜାଣି ଭୁଲ୍ ପଥଟିକୁ ପ୍ରତ୍ୟାଖ୍ୟାନ କରି ଆସନ୍ତି, ସେହିମାନେ ହେଉଛନ୍ତି ଜାତିର ଯଥାର୍ଥ ପ୍ରତିନିଧି ।" ସେ ପୁଣି କହିଥିଲେ, "ଯାହା ଆମର

ସ୍ୱାଭାବିକ ଅଧିକାରକୁ ସ୍ୱୀକାର କରୁନାହିଁ, ଆମେ ତାହାକୁ କଦାପି ଗ୍ରହଣ କରିପାରିବୁ ନାହିଁ । ଯାବତୀୟ ଶାସନସଂସ୍କାରର ଯଥାର୍ଥ ଯୋଜନା ଏହି ଦେଶର ଅଧୀବାସୀମାନଙ୍କର ସ୍ୱାଭାବିକ ଅଧିକାରକୁ ଅବଶ୍ୟ ସ୍ୱୀକାର କରିବ । ମୁଁ କୌଣସି ଅନୁଗ୍ରହ ଭିକ୍ଷା କରୁନାହିଁ, ମାତ୍ର ମୋର ଅଧିକାରଗୁଡ଼ିକୁ ହିଁ ଦାବି କରୁଛି ।

ଉପସଂହାର କରି ଚିତ୍ତରଂଜନ ଯତୀନ୍ଦ୍ରମୋହନ ଓ ତାଙ୍କର ପ୍ରତିଶ୍ରୁତିପୂର୍ଣ୍ଣ ଭବିଷ୍ୟତର ଭୂୟସୀ ପ୍ରଶଂସା କରିଥିଲେ । ସିଏ କହିଥିଲେ ଯେ, ବିଗତ ପନ୍ଦର ଦିନଯାକ ଯତୀନ୍ଦ୍ର ତାଙ୍କର 'ସବୁଠାରୁ ଅଧିକ ନିକଟବର୍ତ୍ତୀ' ହୋଇ ରହିଥିଲେ ଏବଂ ସିଏ ତାଙ୍କୁ ତନ୍ନତନ୍ନ କରି ପରୀକ୍ଷା କରି ଦେଖିବାର ସୁଯୋଗ ଲାଭ କରିଥିଲେ । ସିଏ ତାଙ୍କଲାଗି ଏକ ଉଜ୍ଜ୍ୱଳ ଭବିଷ୍ୟତର କାମନା କରିଥିଲେ । ଏହି ହାର୍ଦ୍ଦିକ ଅଭ୍ୟର୍ଥନା ଓ ସମ୍ମାନ ପ୍ରଦର୍ଶନ ଲାଗି ଚିଟାଗଙ୍ଗର ଅଧିବାସୀମାନଙ୍କୁ ଧନ୍ୟବାଦ ଜ୍ଞାପନ କରି ଚିତ୍ତରଂଜନ କଲିକତା ଗଲେ ।

ଦେଶବନ୍ଧୁଙ୍କର ଜୀବନୀ ଲେଖକ (ଶ୍ରୀ ଦାସଗୁପ୍ତ) ସୂଚନା ଦେଇଛନ୍ତି ଯେ, ତାଙ୍କର ଚିଟାଗଙ୍ଗ ଭାଷଣ ହିଁ ଜଣେ ନେତା ହିସାବରେ ତାଙ୍କ ସାଧାରଣ ଜୀବନର ସୂତ୍ରପାତ କରାଇଥିଲା ଏବଂ ଅଦୂରବର୍ତ୍ତୀ ଏକ ମୁହୂର୍ତ୍ତରେ ଦେଶର ସ୍ୱାଧୀନତା ହାସଲ କରିବା ସକାଶେ ଅଧିକରୁ ଅଧିକ ତ୍ୟାଗସ୍ୱୀକାର କରିବାଲାଗି ତାଙ୍କୁ ପ୍ରସ୍ତୁତ କରାଇ ନେଇଥିଲା । *

## ଗୋଟିଏ ସଂଗ୍ରାମମୟ ବର୍ଷ (1920-21)

ଚଳିତ ଶତାବ୍ଦୀର ଦ୍ୱିତୀୟ ଦଶକର ଆରମ୍ଭରେ ଯେତେବେଳେ ଭାରତୀୟ ରାଜନୀତିର ରଙ୍ଗମଞ୍ଚକୁ ଯତୀନ୍ଦ୍ରମୋହନଙ୍କର ପ୍ରଥମ ପ୍ରବେଶ ଘଟିଲା, ସେତେବେଳେ ଭାରତୀୟ ସ୍ୱାଧୀନତା ସଂଗ୍ରାମର ଇତିବୃତ୍ତଟି ଏକ ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ ଭାବରେ ନାନା ଘଟଣାଦ୍ୱାରା ପୂର୍ଣ୍ଣ ଏକ ପର୍ଯ୍ୟାୟ ମଧ୍ୟଦେଇ ଗତି କରୁଥିଲା ଏବଂ ଭାରତରେ ବ୍ରିଟିଶ ଆଧିପତ୍ୟର ଅବସାନ ଆରମ୍ଭ ହେଉଥିଲା ।

> ''1905-06 ମସିହାରେ ସ୍ୱଦେଶୀ ଆନ୍ଦୋଳନକୁ ହିଁ ଭାରତବର୍ଷରେ ବ୍ରିଟିଶ୍ ଶାସନ ବିରୋଧରେ ଜାତିବ୍ୟାପୀ ଜାଗରଣର ପ୍ରକୃତ ସର୍ବପ୍ରଥମ ଘଟଣା ବୋଲି କୁହାଯିବ । ତତ୍କାଳୀନ ଭାଇସରାୟ ଲର୍ଡ କର୍ଜନଙ୍କ ଦ୍ୱାରା କରାଯାଇଥିବା ବଙ୍ଗ-ବିଚ୍ଛେଦ ଏକ ଅଗ୍ନିକଣା ରୂପେ ଗଣ-ଆନ୍ଦୋଳନର ମହାଶକ୍ତିଶାଳୀ ଅଗ୍ନିକୁ ପ୍ରଜ୍ୱଳିତ କରି ଦେଇଥିଲା । ତିଳକ, ଅରବିନ୍ଦ, ଲାଲା ଲଜପତ ରାୟ, ବିପିନ ଚନ୍ଦ୍ର ଓ ଅନ୍ୟମାନଙ୍କର ବାଣୀକୁ ହିଁ ଏହି ପର୍ଯ୍ୟାୟର ଗୋଟିଏ ଗୋଟିଏ ଶକ୍ତିଶାଳୀ ନିନାଦ ବୋଲି କୁହାଯିବ, ଯାହାକି ଦେଶପ୍ରେମର ଏକ ନୂତନ ବୋଧ ଜାଗ୍ରତ କରାଇ ଆଣିଲା ଏବଂ ସକଳ କଷ୍ଟକୁ ବରଣ କରିବା ଲାଗି ପ୍ରସ୍ତୁତ ହେବାକୁ ଲୋକମାନଙ୍କୁ ଉଦ୍‌ବୁଦ୍ଧ କରିଥିଲା ।''**

## ଅସହଯୋଗର ଜାଲ ଭିତରେ

ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହୋଇଯିବା (1920-21) ପରେ ଭାରତର ସ୍ୱାଧୀନତା-ସଂଗ୍ରାମ ଆଗକୁ ନୂତନ ପାଦ ପକାଇଥିଲା । ''ଗୋଟିଏ ବର୍ଷରେ ସ୍ୱରାଜ'' ର ଦେଶବ୍ୟାପୀ ଜୟଧ୍ୱନି ସମଗ୍ର ଦେଶର କଳ୍ପନାକୁ ବଶ କରି ନେଇଥିଲା । ବିଦେଶୀ ଶାସନ

---

★ ଦେବେନ୍ଦ୍ରନାଥ ଦାସଗୁପ୍ତ : ଦେଶବନ୍ଧୁ ସ୍ମୃତି

★★ ଦ୍ରଷ୍ଟବ୍ୟ: "1921 ଆନ୍ଦୋଳନ, କିଛି ସ୍ମୃତି,'' ପ୍ରକାଶକ- ପବ୍ଲିକେଶନସ୍ ଡିଭିଜନ୍, ଭାରତ ସରକାର, 1971 ଗ୍ରନ୍ଥରେ ଶ୍ରୀ ଆର୍. ଆର୍. ଦିବାକରଙ୍କ ଦ୍ୱାରା ଲିଖିତ ହୋଇଥିବା ''ଦାବିଗୁଡ଼ିକର ବପନ ହେଲା'' ପ୍ରବନ୍ଧ ।

ବିରୋଧରେ ପ୍ରତ୍ୟକ୍ଷ ସଂଗ୍ରାମ ଆରମ୍ଭ କରାଯାଉ ବୋଲି ଏକ ସାମୂହିକ ଉନ୍ମାଦନା ଦେଖା ଦେଇଥିଲା । ଏତିକିବେଳେ, ଭାରତୀୟ ଜାତୀୟ କଂଗ୍ରେସର କଲିକତା ବିଶେଷ ଅଧିବେଶନ (ସେପ୍ଟେମ୍ବର,1920)ର ପ୍ରାୟ ପ୍ରାକ୍ କାଳରେ ଭାରତୀୟ ସ୍ୱାଧୀନତାର ଜଣେ ଅନ୍ୟତମ ବୃହତ୍-ନିର୍ମାତା ଲୋକମାନ୍ୟ ବାଳ ଗଙ୍ଗାଧରଙ୍କର ମୃତ୍ୟୁ ଜାତି ଉପରେ ଏକ ଦାରୁଣ ଆଘାତ ଆଣି ଦେଇଥିଲା ।

ସ୍ୱାଧୀନତା ସଂଗ୍ରାମର ଅଦମ୍ୟ ଯୋଦ୍ଧା ତିଳକ ପ୍ରାୟ ଦୁଇ ଦଶକ କାଳ (1900-1920) ଭାରତର ରାଜନୀତିକ ମଞ୍ଚରେ ସର୍ବପ୍ରଧାନ ହୋଇ ରହିଥିଲେ । ସାର୍ ଭାଲେଣ୍ଟାଇନ୍ ଚିରୋଲ୍ ତାଙ୍କୁ ଯେ ଅତ୍ୟନ୍ତ ଅନୁଚିତ ଭାବରେ 'ଭାରତୀୟ ଅଶାନ୍ତିର ଜନକ' କହି ଭର୍ତ୍ସନା କରିଥିଲେ, * ସେଥିରେ ମଧ୍ୟ କିଞ୍ଚିତ୍ ସତ୍ୟତା ଅବଶ୍ୟ ରହିଥିଲା । ମହାତ୍ମା ଗାନ୍ଧି ତାଙ୍କୁ 'ଆଧୁନିକ ଭାରତର ନିର୍ମାତା'ବୋଲି କହି ପ୍ରଶଂସା କରିଥିଲେ । ବସ୍ତୁତଃ, ଲୋକମାନ୍ୟ ହିଁ ଭାରତୀୟ ଉଗ୍ର ଜାତୀୟତାବାଦର ସର୍ବପ୍ରଧାନ ଯାଜକ ଥିଲେ ଏବଂ ତହିଁ ସଙ୍ଗେ ସଙ୍ଗେ ଭାରତୀୟ ପ୍ରାଚୀନ ବିଦ୍ୟା ଓ ସଂସ୍କୃତିର ଜଣେ ତୁଙ୍ଗ ମନୀଷୀ ମଧ୍ୟ ଥିଲେ । ସର୍ବୋପରି, ସେ ସର୍ବପ୍ରଥମେ ସ୍ୱରାଜ ହିଁ ଭାରତବର୍ଷର ଜନ୍ମଗତ ଦାବି ବୋଲି ଘୋଷଣା କରିଥିଲେ । ତାଙ୍କର ଏହି ଅପ୍ରତିରୋଧ୍ୟ ବ୍ୟାକୁଳତାପୂର୍ଣ୍ଣ ଅନୁଜ୍ଞାଟିକୁ ମହାତ୍ମା ଗାନ୍ଧି ଅସହଯୋଗର କାର୍ଯ୍ୟକ୍ରମ ମାଧ୍ୟମରେ ଏକ ଜନଆନ୍ଦୋଳନର ରୂପ ଦେଇ କାର୍ଯ୍ୟକାରୀ କରିଥିଲେ । ଏକଥା ଆଦୌ ଭୁଲ୍ ନୁହେଁ ଯେ ଗାନ୍ଧିଜୀଙ୍କର ଅସହଯୋଗ କାର୍ଯ୍ୟକ୍ରମ ସହିତ ତିଳକ ସଂପୂର୍ଣ୍ଣ ଭାବରେ ଏକମତ ନ ଥିଲେ, ମାତ୍ର ଏ କଥାଟିକୁ ମଧ୍ୟ ସମସ୍ତେ ବୁଝିଥିଲେ ଯେ, ମହାରାଷ୍ଟ୍ରର ସେହି ପ୍ରବୀଣ ନେତା ଗୁର୍ଜର-ଦେଶର ଏହି ନୂତନ ନାୟକଙ୍କର ପଥରେ କଦାପି ଅନ୍ତରାୟ ହୋଇ ଛିଡ଼ା ହେବେ ନାହିଁ । ମାତ୍ର ସେକଥା ଯାହା ହୋଇଥାଉ ପଛକେ, ଈଶ୍ୱରଙ୍କର ବିଧାନ ଏହିପରି ହୋଇ ରହିଥିଲା ଯେ, ତିଳକଙ୍କର ଯୁଗ ସରିଗଲା ଓ ଗାନ୍ଧିଙ୍କର ଯୁଗ ଆରମ୍ଭ ହେଲା ।

ତଥାପି, ତିଳକଙ୍କର ତିରୋଧାନରେ ଗାନ୍ଧି ଦାରୁଣ ଶୋକରେ ଅଭିଭୂତ ହୋଇ ପଡ଼ିଥିଲେ ।

ତିଳକଙ୍କ ପରେ କିଏ ? - ତାହାହିଁ ବର୍ତ୍ତମାନର ପ୍ରଶ୍ନ ଥିଲା ।

ଏହାର ଅବ୍ୟବହିତ ପରେ ନୂତନ ଆଭିମୁଖ୍ୟଟି ହିଁ ଦେଶର ଅପେକ୍ଷାକୃତ ଅଧିକ ଓଜସ୍ୱୀ ଏବଂ ସକ୍ରିୟ ଗୋଷ୍ଠୀଟିର ସମର୍ଥନ ଲାଭ କରିଥିଲା । ପଣ୍ଡିତ ମୋତିଲାଲ୍ ନେହରୁ ଓ ତାଙ୍କର ପୁଅ ଜବାହରଲାଲ ନେହରୁଙ୍କ ପରି ଦେଶଭକ୍ତମାନଙ୍କର ଏକ ସମୂହ ଜାଲିଆନାୱାଲାବାଗ୍‌ର ହତ୍ୟାକାଣ୍ଡ ପରେ ଆସି ଆବିର୍ଭୂତ ହୋଇଥିଲେ । ଦେଶର ଅନ୍ୟସବୁ ପ୍ରଦେଶରେ ମଧ୍ୟ ଆହୁରି ଅନେକ ପ୍ରଧାନ ବ୍ୟକ୍ତିଙ୍କର ଆବିର୍ଭାବ ଘଟିଥିଲା ।

ଅନ୍ୟ ସବୁ ସ୍ଥାନ ତୁଳନାରେ ବଙ୍ଗପ୍ରଦେଶରୁ ହିଁ ସର୍ବାଧିକ ଅନୁସନ୍ଧନ ପ୍ରକାଶ ପାଇଥିଲା । ଏହି ପ୍ରଦେଶର ବୁଦ୍ଧିଜୀବୀମାନେ ଅସହଯୋଗ ଆନ୍ଦୋଳନରେ ଝାସ ଦେଲେ ଏବଂ ଆତ୍ମୋତ୍ସର୍ଗ, ସେବା ତଥା ତ୍ୟାଗର ଦୃଷ୍ଟାନ୍ତ ହୋଇ ରହିଥିଲେ । କେତେକ ପ୍ରଥମ ଡାକରା ପାଇ ହିଁ ଚାଲି ଆସିଥିଲେ, ଆଉ କେତେକ ପରେ ଆସିଲେ । ସେମାନଙ୍କ ମଧ୍ୟରୁ କେତେ ଅବସର ଗ୍ରହଣ କଲେଣି ଓ ଆଉ କେତେ ସଂସାରରୁ ବିଦାୟ ନେଇ ଚାଲିଯାଇଛନ୍ତି ସତ, ମାତ୍ର ସେମାନଙ୍କର ସେବା ଏବଂ ତ୍ୟାଗର ସ୍ମୃତି ଜାତିର ଭଣ୍ଡାରରେ ଚିରଦିନ ସକାଶେ ସଞ୍ଚିତ ହୋଇ ରହିଛି । "ପୁରୋଭାଗସ୍ଥ ଯେଉଁ ନେତାମାନେ ଚିତ୍ତରଂଜନଙ୍କ ହାତମୁଠାକୁ ଟାଣ କରିଥିଲେ, ସେମାନଙ୍କ ମଧ୍ୟରେ ଆବୁଲ କଲାମ ଆଜାଦ୍, ଯତୀନ୍ଦ୍ରମୋହନ ସେନଗୁପ୍ତ, ସୁଭାଷଚନ୍ଦ୍ର ବୋଷ, ଶ୍ୟାମ ସୁନ୍ଦର ଚକ୍ରବର୍ତ୍ତୀ, ବୀରେନ୍ଦ୍ରନାଥ ସାସମଲ, ପୀର ବାଦଶା ମିଆଁ, ଜିତେନ୍ଦ୍ରଲାଲ ବାନର୍ଜୀ, ନିର୍ମଳଚନ୍ଦ୍ର ଚନ୍ଦ୍ର, ଶରତଚନ୍ଦ୍ର ବୋଷ,

* ଷ୍ଟେଟ୍‌ସ୍‌ମ୍ୟାନ୍ କାଗଜର ସମ୍ପାଦକୀୟ, "ଭାରତ ବିଷୟରେ ରାୟ" ଡିସେମ୍ବର 21, 1910

ତୁଳସୀ ଚରଣ ଗୋସ୍ୱାମୀ, ସତ୍ୟେନ୍ଦ୍ର ଚନ୍ଦ୍ର ମିତ୍ର, ଅନିଲ ବରଣ ରାୟ, ସୁରେଶ ଚନ୍ଦ୍ର ବାନର୍ଜୀ, ସତୀଶଚନ୍ଦ୍ର ଦାସଗୁପ୍ତ, ପ୍ରଫୁଲ୍ଲଚନ୍ଦ୍ର ଘୋଷ, କିରଣ ଶଙ୍କର ରାୟ, ନୃପେନ୍ଦ୍ର ଚନ୍ଦ୍ର ବାନର୍ଜୀ, ହେମନ୍ତ କୁମାର ସରକାର ଓ ଅନ୍ୟମାନଙ୍କର ନାମ ଉଲ୍ଲେଖଯୋଗ୍ୟ ।

ପ୍ରକୃତରେ ଯେପରି ଆଶା କରାଯାଉଥିଲା, ଏହି କ୍ଷେତ୍ରରେ ବଙ୍ଗଦେଶର ଅବଦାନ ସର୍ବାଧିକ ଥିଲା; ସେବା, ତ୍ୟାଗ ଏବଂ ଶାସକଶକ୍ତିକୁ ଆହ୍ୱାନ ଜଣାଇବା କ୍ଷେତ୍ରରେ ବଙ୍ଗ ଅନ୍ୟ ପ୍ରଦେଶଗୁଡ଼ିକ ତୁଳନାରେ ଅନେକ ଆଗରେ ରହିଥିଲା । ଏହା ଲିପିବଦ୍ଧ ହୋଇ ରହିଥିଲା ଯେ, ଭାରତବର୍ଷର ବଙ୍ଗପ୍ରଦେଶରେ ହିଁ ସର୍ବାଧିକ ସଂଖ୍ୟାର ଓକିଲ ନିଜର ଓକିଲାତି ଛାଡ଼ି ଦେଇଥିଲେ । ସମଗ୍ର ଦେଶର 1500 ଓକିଲଙ୍କ ମଧ୍ୟରେ ବଙ୍ଗର ସଂଖ୍ୟା 900 ଥିଲା । ବଙ୍ଗଳାରୁ ହିଁ ସର୍ବାଧିକ ବ୍ୟକ୍ତି ଗିରଫ ହୋଇଥିଲେ ଓ ଜେଲ୍ ଯାଇଥିଲେ । ରଚନାତ୍ମକ କାର୍ଯ୍ୟକ୍ରମ ଗୁଡ଼ିକରେ ମଧ୍ୟ ବଙ୍ଗଳା ସମସ୍ତଙ୍କର ପୁରୋଭାଗରେ ରହିଥିଲା ।*

ବଙ୍ଗଳାର ସବୁ ଜିଲ୍ଲା ମଧ୍ୟରେ ଚିଟାଗଙ୍ଗର ଅନୁଷ୍ଠାନ ଏପରି ଭାବରେ ସବୁଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ଏବଂ ଉଲ୍ଲେଖଯୋଗ୍ୟ ଥିଲା ଯେ, ଗାନ୍ଧିଜୀ ତାଙ୍କର 'ୟଙ୍ଗ ଇଣ୍ଡିଆ' କାଗଜରେ (ଜାନୁଆରୀ 12 ,1922) ଦେଶର ଏହି ସବାପୂର୍ବ ପ୍ରାନ୍ତରେ ଅବସ୍ଥିତ କେନ୍ଦ୍ରଟିର ପ୍ରଭୂତ ପ୍ରଶଂସା କରି ଲେଖିଥିଲେ । "ଚିଟାଗଙ୍ଗ ପୁରୋଭାଗରେ" - ନିଜ ଲେଖାଟିର ସେ ଏହିପରି ଶୀର୍ଷକ ଦେଇଥିଲେ ଆଗରୁ ଯେପରି କୁହାଯାଇଛି, କଲିକତାର ବିଶେଷ କଂଗ୍ରେସ ଅଧିବେଶନର ଅବ୍ୟବହିତ ପରେ ହିଁ ଚିଟାଗଙ୍ଗ ସର୍ବପ୍ରଥମେ ଅସହଯୋଗର କାର୍ଯ୍ୟକ୍ରମକୁ ଗ୍ରହଣ କରି ନେଇଥିଲା । ଏହା ପ୍ରକୃତରେ ଏକ ଉଲ୍ଲେଖଯୋଗ୍ୟ ଘଟଣା: ଏହା ଯେ କାଁ ଭାଁ ଏଠି ସେଠି ଅସଂଲଗ୍ନ ଭାବରେ ଘଟିଲା ତା' ନୁହେଁ, ଏକ ଦୀର୍ଘ ଅନୁକ୍ରମରେ ଅହିଂସ ଉପାୟରେ ଘଟଣାଗୁଡ଼ିକ ସଂଘଟିତ ହୋଇଥିଲା ।

ଅସହଯୋଗର ବାର୍ତ୍ତା ପ୍ରଚାର କରି ଜିଲ୍ଲା ଜିଲ୍ଲା ପରିକ୍ରମା କରୁଥିବା ସମୟରେ ଦେଶବନ୍ଧୁ ଚିଟାଗଙ୍ଗରେ ଆସି ପହଞ୍ଚିଥିଲେ (14 ମାର୍ଚ୍ଚ 1921) । ଯତୀନ୍ଦ୍ରମୋହନ ଓ ନେଲୀ ମଧ୍ୟ ତାଙ୍କ ସହିତ ଥିଲେ । ଚିତ୍ତରଂଜନଙ୍କ ସହିତ ପ୍ରଖ୍ୟାତ ବିଦ୍ୱାନ ଅଧ୍ୟାପକ ହେମନ୍ତ କୁମାର ସରକାର ମଧ୍ୟ ଆସିଥିଲେ, ସିଏ ମଧ୍ୟ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ଚିଟାଗଙ୍ଗ୍ ରହଣି କାଳରେ ଚିତ୍ତରଂଜନ ଯତୀନ୍ଦ୍ରମୋହନ ଓ ନେଲୀଙ୍କର ତାଙ୍କର ପୂର୍ବପରିଚିତ ଘରେ ରହିଲେ । ଚିଟାଗଙ୍ଗକୁ ତାଙ୍କର 1918 ମସିହାରେ ପ୍ରଥମ ଆସିବା କଥା ସେ ମନେ ରଖିଥିଲେ, ଏହିଠାରେ ହିଁ ଚାରିବର୍ଷ ପୂର୍ବେ ସେ ଏକ ନୂତନ ରାଜନୀତିକ ଅଭିଯାନ ଆରମ୍ଭ କରିବାର ଉଦ୍ଦୀପ୍ତ ଉତ୍ସାହ ପାଇଥିଲେ । ଚିଟାଗଙ୍ଗରେ ପହଞ୍ଚି ଚିତ୍ତରଂଜନ ସଙ୍ଗେ ସଙ୍ଗେ ସ୍ଥାନୀୟ ନେତା- ମହିମ ଚନ୍ଦ୍ର ଦାସ,ତ୍ରିପୁରା ଚରଣ ଚୌଧୁରୀ,କାଜେମ୍ ଅଲ୍ଲି, ମନିରଜ୍ଜାମନ୍ ଇସ୍‌ଲାମାବାଦୀ ଓ ଅନ୍ୟମାନଙ୍କ ସହିତ ଏକତ୍ର ମିଳିତ ହେଲେ । କେତେଜଣ ବ୍ୟକ୍ତି ସେମାନଙ୍କର ଓକିଲାତି ଏବଂ ଅନ୍ୟାନ୍ୟ ଧନ୍ଦାକୁ ଛାଡ଼ିଦେଇ ସଂପୂର୍ଣ୍ଣ ଓ ଐକାନ୍ତିକ ଭାବରେ ଜାତୀୟ ସେବାରେ ନିଜକୁ ନିୟୋଜିତ କରିପାରିବେ, ଏବଂ ଦେଶର ମୁକ୍ତି ନିମିତ୍ତ ଦୃଢ଼ ସଂକଳ୍ପର ସହିତ କାର୍ଯ୍ୟ କରିପାରିବେ ଓ ଯାବତୀୟ କଷ୍ଟକୁ ସହ୍ୟ କରିପାରିବେ, ଅସହଯୋଗ ଆନ୍ଦୋଳନର ଏହି ବୈଠକରେ ତାହାରି ହିସାବ କରାଗଲା । ଚିତ୍ତରଞ୍ଜନଙ୍କର ଦୃଷ୍ଟି ଓ ଭାବନା ତାଙ୍କର ପ୍ରିୟ ଯତୀନ୍ଦ୍ରମୋହନଙ୍କ ଉପରେ ଅଧିକତର ପରିମାଣରେ କେନ୍ଦ୍ରିତ ହୋଇ ରହିଥିଲା । ସିଏ ଯେ ତାଙ୍କର ଜଣେ ସବୁଠାରୁ ଅଧିକ ପ୍ରତିଶ୍ରୁତିପୂର୍ଣ୍ଣ ସେନାପତି ରୂପେ ଏହି ଆନ୍ଦୋଳନର ନେତୃତ୍ୱ ଗ୍ରହଣ କରିପାରିବେ, ସେହି ବିଷୟରେ ଚିତ୍ତରଞ୍ଜନଙ୍କର ସର୍ବାଧିକ ଆସ୍ଥା ଓ ବିଶ୍ୱାସ ରହିଥିଲା ।

---

★ ଦ୍ରଷ୍ଟବ୍ୟ - ଅରୁଣଚନ୍ଦ୍ର ଗୁହ : ଭାରତ-ସଂଗ୍ରାମର ପଚିଶିବର୍ଷ, ରବିବାର ସଂସ୍କରଣ, ଅମୃତ ବଜାର ପତ୍ରିକା, ଜାନୁଆରୀ 17, 1971

ଯତୀନ୍ଦ୍ରମୋହନଙ୍କ ମଧ୍ୟରେ ଯେ ମସ୍ତିଷ୍କ ତଥା ହୃଦୟର ଉଚ୍ଚ ଗୁଣଗୁଡ଼ିକ ପୂର୍ଣ୍ଣମାତ୍ରାରେ ରହିଛି ଏବଂ ସିଏ ଯେ ତାଙ୍କର ସ୍ୱନାମଧନ୍ୟ ପିତା ଯାତ୍ରାମୋହନଙ୍କର ଅମର ପରମ୍ପରାଟିକୁ ଅକ୍ଷୁଣ୍ଣ ରଖିପାରିବେ, ବହୁବର୍ଷ ପୂର୍ବରୁ ଚିତ୍ତରଞ୍ଜନଙ୍କର ସେହି ପ୍ରତ୍ୟୟ ହୋଇ ସାରିଥିଲା । ଯତୀନ୍ଦ୍ରମୋହନ ଅନ୍ତତଃ ତିନିମାସ ଲାଗି ଓକିଲାତି ବନ୍ଦ କରିଦିଅନ୍ତୁ ଓ ଆପଣାର ତରୁଣସୁଲଭ ଶକ୍ତି ଲଗାଇ ଏଠାରେ ଅତ୍ୟାବଶ୍ୟକ ପ୍ରାଥମିକ ନେତୃତ୍ୱଟିକୁ ଦିଅନ୍ତୁ, ସେ ଯତୀନ୍ଦ୍ରଙ୍କ ସହିତ ଏହି ବିଷୟରେ ସ୍ୱତନ୍ତ୍ର ଭାବରେ ଆଲୋଚନା କରିଥିଲେ । ଚିତ୍ତରଞ୍ଜନଙ୍କର ବ୍ୟକ୍ତିତ୍ୱ ଓ ଦେଶଲାଗି ତାଙ୍କର ଅତୁଳ ତ୍ୟାଗ ଯତୀନ୍ଦ୍ରମୋହନଙ୍କୁ ବହୁଆଗରୁ ଚୁମ୍ବକ ପରି ଟାଣିନେଇ ସାରିଥିଲେ ମଧ, ସେ ବର୍ତ୍ତମାନ ପ୍ରକୃତରେ ଏକ ଦ୍ୱିଧାରେ ପଡ଼ି ଯାଇଥିଲେ; ଆପଣାର ବୃହତ୍ ପରିବାରଟିର ପାଳନ ପୋଷଣ କରିବାଲାଗି. ତାଙ୍କ ପାଖରେ କେବଳ ଏହି ଗୋଟିଏ ଓକିଲାତି ଧନ୍ଦା ରହିଥିଲା ଓ ସେଥିରେ ସେ କ୍ରମଶଃ ପ୍ରକୃତ ଉନ୍ନତି କରିବେ ବୋଲି ଉଜ୍ଜ୍ୱଳ ସମ୍ଭାବନା ମଧ୍ୟ ଥିଲା । ବର୍ତ୍ତମାନ ସିଏ ତାହାକୁ ଛାଡ଼ିଦେଇ ପାରିବେ କିପରି ? ତଥାପି, ମାତୃଭୂମିର ଆହ୍ୱାନ ଏବଂ ତାଙ୍କ ନେତାଙ୍କର ପ୍ରେରଣା ତାଙ୍କର ଯାବତୀୟ ବ୍ୟକ୍ତିଗତ କୁଣ୍ଠା ଉପରେ ଜୟଲାଭ କରିଥିଲା ଏବଂ ସ୍ୱରାଜ-ସଂଗ୍ରାମରେ ଆପଣାର ସର୍ବସ୍ୱ ଜଳାଞ୍ଜଳି ଦେଇ ବାହାରି ଆସିବାକୁ ନିଷ୍ପତ୍ତି ଗ୍ରହଣ କଲେ ।

ଚିଟାଗଙ୍ଗର ଆନ୍ଦୋଳନରେ ଚିତ୍ତରଞ୍ଜନଙ୍କର ସେଠାକୁ ଆଗମନ ଏକ ପରିବର୍ତ୍ତନକାରୀ ପ୍ରେରକ ରୂପେ କାର୍ଯ୍ୟ କରିଥିଲା । ସ୍ଥାନୀୟ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ସହିତ କଥାବାର୍ତ୍ତା କରି ସେ ସମସ୍ତ କାର୍ଯ୍ୟକ୍ରମଟିକୁ ଏକ ଦୃଢ଼ ଭିତ୍ତି ଉପରେ ଆଣି ସ୍ଥାପିତ କରିବାର ଉପାୟ ଓ ସାଧନଗୁଡ଼ିକୁ ନିର୍ଦ୍ଦିଷ୍ଟ କରି ଦର୍ଶାଇ ଦେଇଥିଲେ ଏବଂ ତଦ୍ୱାରା ଚିଟାଗଙ୍ଗର ଅଧିବାସୀମାନେ ଏହି ଆନ୍ଦୋଳନରେ ବହୁ ସଂଖ୍ୟାରେ ଯୋଗ ଦେଇଥିଲେ । ତା'ପରେ ଏକ ସାଧାରଣ ସଭାରେ ଓଜସ୍ୱିନୀ ଭାଷାରେ ସେ ଏକ ବକ୍ତୃତା ମଧ ଦେଇଥିଲେ । ସମ୍ପ୍ରଦାୟ ନିର୍ବିଶେଷରେ ତରୁଣ ଏବଂ ବୃଦ୍ଧ ସମସ୍ତଙ୍କୁ ଗୋଟିଏ ବର୍ଷରେ ସ୍ୱରାଜ ହାସଲ କରିବାଲାଗି ଗାନ୍ଧିଜୀଙ୍କ ଦ୍ୱାରା ପ୍ରଣୋଦିତ କାର୍ଯ୍ୟକ୍ରମକୁ ସଫଳ କରିବା ଉଦ୍ଦେଶ୍ୟରେ ଚୂଡ଼ାନ୍ତ ସେବା ଏବଂ ତ୍ୟାଗ ଲାଗି ଦେଶର ଆହ୍ୱାନକୁ ଯଥୋପଯୁକ୍ତ ଜବାବ ଦେବା ଲାଗି ନିବେଦନ କରିଥିଲେ । ଅଧ୍ୟାପକ ହେମନ୍ତ କୁମାର ସରକାର ମଧ୍ୟ ନିଜର ଅଗ୍ନିମୟୀ ଭାଷାରେ ସେହି ସଭାରେ ବକ୍ତୃତା ଦେଇଥିଲେ । ଏହାର ପ୍ରଭାବ ବୈଦ୍ୟୁତିକ ସଂଚାର ହେଲାପରି ପଡ଼ିଥିଲା । ମହିମଚନ୍ଦ୍ର ଦାସ, ଉମେଶଚନ୍ଦ୍ର ଗୁହ, ମୋକ୍ଷଦା ରଂଜନ କାନୁନଗୋ, ରମେଶଚନ୍ଦ୍ର ରକ୍ଷିତ ଓ ଅନ୍ୟମାନେ ସେମାନଙ୍କର ଆଇନ ବ୍ୟବସାୟ ତ୍ୟାଗ କରିବାଲାଗି ଘୋଷଣା କରିଥିଲେ ଏବଂ କାଜେମ୍ ଅଲ୍ଲି ମିର୍ଥାଁ ତ୍ରିପୁରାଚରଣ ଚୌଧୁରୀ ମୌନାଲା ମନିର ହ୍ମାମନ୍ ଇସଲାମବାଦୀ, ଅଲ୍ଲି ଅହମ୍ମଦ ୱାଲୀ ପ୍ରଭୃତି ଅନ୍ୟ ବ୍ୟକ୍ତିମାନେ ଏହି ଆନ୍ଦୋଳନରେ ପୂର୍ଣ୍ଣ ସହଯୋଗ କରିବେ ବୋଲି ଆଗଭର ହୋଇ ଆସିଥିଲେ । ଯତୀନ୍ଦ୍ରମୋହନ ମଧ୍ୟ ଓକିଲାତି ବ୍ୟବସାୟ ବନ୍ଦ ରଖିବେ ବୋଲି ଯେତେବେଳେ ଚିତ୍ତରଞ୍ଜନ ଶେଷରେ ଘୋଷଣା କରିଥିଲେ* (ଯତୀନ୍ଦ୍ରମୋହନ ସେହି ସଭାରେ ପରେ ଆସି ପହଞ୍ଚିଥିଲେ) । ସେତେବେଳେ ସେହି ବିରାଟ ଜନସଭା କରତାଳିରେ ଗଗନ କମ୍ପାଇ ଦେଇଥିଲା ।

---

★ଏହାକୁ ପ୍ରକୃତରେ ଏକ ଅଲୌକିକ ଘଟଣା ବୋଲି କୁହାଯିବ ଯେ କଲିକତାର ବିଶେଷ କଂଗ୍ରେସ ଅଧିବେଶନରେ ପ୍ରଥମକାଳୀନ ତୀବ୍ର ମତଭେଦ ସତ୍ତ୍ୱେ (ସେପ୍ଟେମ୍ବର 1920) ଚିତ୍ତରଞ୍ଜନ କଂଗ୍ରେସର ନାଗପୁର ଠାରେ ଅନୁଷ୍ଠିତ ପୂର୍ଣ୍ଣ ଅଧିବେଶନରେ ଏକ ଅଦ୍ଭୁତ ପରିବର୍ତ୍ତନର ପ୍ରମାଣ ଦେଇଥିଲେ (ଡିସେମ୍ବର, 1920) ବଙ୍ଗୀୟ ପ୍ରତିନିଧିମାନଙ୍କର ଏକ ବୃହତ୍ ଦଳକୁ ସଙ୍ଗରେ ଧରି ବୃଦ୍ଧାନ୍ତଭାବେ ଗୃହୀତ ହେବ ବୋଲି ଆଗତ ହେବାକୁ ରହିଥିବା ଅସହଯୋଗ ପ୍ରସ୍ତାବକୁ ପରାଜିତ କରିବା ଉଦ୍ଦେଶ୍ୟରେ ଚିତ୍ତରଞ୍ଜନ ନାଗପୁରଠାରେ ପହଞ୍ଚିଥିଲେ । ମାତ୍ର, ପ୍ରକୃତ ଘଟଣା ଯାହା ଘଟିଲା, ଘରୋଇ ଭାବରେ ଗାନ୍ଧିଜୀଙ୍କ ସହିତ ଦୀର୍ଘ କଥୋପକଥନ ପରେ ଏହି ବିରାଟ ଦେଶଭକ୍ତଙ୍କର ମତରେ ଏକ ପରିପୂର୍ଣ୍ଣ ପରିବର୍ତ୍ତନ ସଂଘଟିତ ହୋଇଥିଲା ।

ତହିଁ ଆରଦିନ ସକାଳେ ଯେତେବେଳେ ଅଧ୍ୟାପକ ନୃପେନ୍ଦ୍ର ଚନ୍ଦ୍ର ବାନାର୍ଜୀ ଚିତ୍ତରଞ୍ଜନଙ୍କୁ ଆସି ଭେଟିଲେ ଏବଂ ସିଏ ଚିଟାଗଙ୍ଗ ସରକାରୀ କଲେଜରେ ଉପାଧ୍ୟକ୍ଷ ପଦରୁ ଇସ୍ତଫା ଦେବାପାଇଁ ନିଷ୍ପତ୍ତି କରିଛନ୍ତି ବୋଲି ଜଣାଇଥିଲେ, ସେତେବେଳେ ପରିସ୍ଥିତି ଆହୁରି ଅଧିକ ଜୀବନ୍ତ ହୋଇ ଉଠିଥିଲା । ଅତୀବ ଆନନ୍ଦିତ ହୋଇ ଚିତ୍ତରଞ୍ଜନ ସେହି ସଂବାଦଟିକୁ ସ୍ୱାଗତ କରିଥିଲେ ଏବଂ ଅଧ୍ୟାପକଙ୍କର ତ୍ୟାଗ ଏବଂ ଦେଶପ୍ରୀତି ଦ୍ୱାରା ପ୍ରଣୋଦିତ ସଂକଳ୍ପ ଲାଗି ତାଙ୍କୁ ଅତ୍ୟନ୍ତ ହାର୍ଦ୍ଦିକତା ସହିତ ଆଲିଙ୍ଗନ କରି ଧରିଥିଲେ । ଉଭୟେ ଅତ୍ୟନ୍ତ ଭାବପ୍ରବଣ ହୋଇଥିବାରୁ ସେମାନଙ୍କର ଆଖିରୁ ଅତ୍ୟନ୍ତ ସ୍ୱତଃସ୍ଫୂର୍ତ୍ତ ଭାବରେ ଆନନ୍ଦାଶ୍ରୁ ବିଗଳିତ ହୋଇ ଆସୁଥିଲା । ଯତୀନ୍ଦ୍ରମୋହନ, ଅଧ୍ୟାପକ ହେମନ୍ତ ସରକାର ପ୍ରଭୃତି ସେଠାରେ ଉପସ୍ଥିତ ଥିବା ସମସ୍ତଙ୍କ ଲାଗି ତାହା ପ୍ରକୃତରେ ଏକ ରୋମାଞ୍ଚକାରୀ ମୁହୂର୍ତ୍ତ ରୂପେ ଅନୁଭୂତ ହୋଇଥିଲା । ବସ୍ତୁତଃ, ସେହି କଲେଜର ସବୁଠାରୁ ଅଧିକ ଲୋକପ୍ରିୟ ଏବଂ ସମ୍ମାନିତ ଅଧ୍ୟାପକ ନୃପେନ୍ଦ୍ର ଚନ୍ଦ୍ରଙ୍କର ପଦତ୍ୟାଗ ଏବଂ ଏହି କ୍ଷେତ୍ରରେ ଯତୀନ୍ଦ୍ରମୋହନଙ୍କର ପ୍ରେରଣାଦାୟକ ପୁରୋଗାମୀ ଦୃଷ୍ଟାନ୍ତ ଛାତ୍ରମାନଙ୍କୁ ଏପରି ଅଦ୍ଭୁତ ଭାବରେ ଉତ୍ପ୍ରେରଣା ଆଣିଦେଲା ଯେ, ସେମାନେ ତା'ପରେ ଦିନେ ବା ଦୁଇ ଦିନ ଭିତରେ ଆପଣାର ଶିକ୍ଷାନୁଷ୍ଠାନ ଗୁଡ଼ିକୁ ଖାଲି କରି ବାହାରି ଆସିଥିଲେ ଏବଂ ସହରର ଚତୁର୍ଦ୍ଦିଗରେ ସେମାନଙ୍କର ଶକ୍ତିମନ୍ତ ଶୋଭାଯାତ୍ରା ଓ ତୁମୁଳ ପ୍ରତିଧ୍ୱନି ସୃଷ୍ଟି କରୁଥିବା ନାଦଗୁଡ଼ିକ ବୃହତ୍ତର ଜନଗଣଙ୍କ ଭିତରେ ଏକ ନୂତନ ଜୀବନର ସଂଚାର କରିପାରିଥିଲା ।

ତିନି ଦିନ ରହିବାପରେ ଚିତ୍ତରଞ୍ଜନ ଚିଟାଗଙ୍ଗ ଛାଡ଼ିଲେ । ଯତୀନ୍ଦ୍ରମୋହନ ଚିଟାଗଙ୍ଗରେ ରହିଲେ । ତା'ପରେ ତାଙ୍କୁ ସେଠାରେ ଆନ୍ଦୋଳନର ଦାୟିତ୍ୱଟିକୁ ଗ୍ରହଣ କରିବାକୁ ପଡ଼ିଥିଲା । ବିକ୍ଷୋଭର ସଂଖ୍ୟା କ୍ରମଶଃ ବୃଦ୍ଧି ପାଇବାକୁ ଲାଗିଲା । ଲୋକମାନଙ୍କର ଉତ୍ସାହ ଓ ସମର୍ଥନର ପ୍ରମାଣମାନ ମଧ୍ୟ ଅଧିକରୁ ଅଧିକ ପରିମାଣରେ ପ୍ରକାଶ ପାଇଲା ଏବଂ ତା'ସହିତ ସେଠାରେ ଏକ ସାଂଗଠନିକ ବ୍ୟବସ୍ଥା ମଧ୍ୟ ଅଚିରେ କାର୍ଯ୍ୟକାରୀ ହୋଇଥିଲା ।

ମାର୍ଚ୍ଚ 20 ତାରିଖରେ ଚିଟାଗଙ୍ଗର ପ୍ରଥମ ଜିଲ୍ଲା କଂଗ୍ରେସ କମିଟିର ଗଠନ ହେଲା ଓ ଯତୀନ୍ଦ୍ରମୋହନ ତାହାର ସଭାପତି ହୋଇଥିଲେ । ଅଧ୍ୟାପକ ନୃପେନ୍ଦ୍ର ବାନର୍ଜୀ ନେତୃତ୍ୱର ଦ୍ୱିତୀୟ ସ୍ଥାନରେ ରହିଲେ ଏବଂ ମହିମଚନ୍ଦ୍ର ଦାସ ସେଥିରେ ସମ୍ପାଦକ ହେଲେ । ମୁଖ୍ୟ ସଦସ୍ୟ ରୂପେ ଯେଉଁମାନେ ରହିଲେ, ସେମାନେ ହେଉଛନ୍ତି, ଶେଖ୍-ଏ-ଚାଟ୍‌ଗାଓଁ କାସିମ୍ ଅଲ୍ଲି, ମହିମଚନ୍ଦ୍ର ଦାସ, ରମେଶଚନ୍ଦ୍ର ରକ୍ଷିତ୍, ରମେଶଚନ୍ଦ୍ର ସେନ୍, ପ୍ରସନ୍ନକୁମାର ସେନ୍, ଯାମିନୀ ରଞ୍ଜନ ବସୁ, ମୋକ୍ଷଦା ରଞ୍ଜନ କାନୁନ୍‌ଗୋ, ହରିଶ୍ଚନ୍ଦ୍ର ସେନ୍, ଉମେଶଚନ୍ଦ୍ର ଗୁହ, କାମିନୀ କୁମାର ଘୋଷ, ନଗେନ୍ଦ୍ର ନାଥ ଦାସଗୁପ୍ତ (ଏମାନେ ସମସ୍ତେ ଓକିଲାତି ଛାଡ଼ି ଦେଇଥିବା ଜଣେ ଜଣେ ନାମଜାଦା ଓକିଲ), ତ୍ରିପୁରା

---

ଏହିପରି ଭାବରେ ସେ ସମସ୍ତଙ୍କୁ ବିସ୍ମିତ ଓ ଉଲ୍ଲସିତ କରି ଦେଇଥିଲେ । ବିରୋଧୀ ପକ୍ଷର ନେତୃତ୍ୱ ନେବା ପରିବର୍ତ୍ତେ ଚିତ୍ତରଞ୍ଜନ ପ୍ରଧାନ ପ୍ରସ୍ତାବଟିକୁ ଆଗତ କରିବାରେ ହିଁ ନେତୃତ୍ୱ ଗ୍ରହଣ କରିଥିଲେ; ଅବଶ୍ୟ ସେଥିଲେ କେତେକ ଆବଶ୍ୟକ ସଂଶୋଧନମାନ ହୋଇଥିଲା ଓ କାର୍ଯ୍ୟକ୍ରମର ଏକ ନିର୍ଦ୍ଦିଷ୍ଟ ଧାରାକୁ ସ୍ପଷ୍ଟ କରି ଦିଆ ଯାଇଥିଲା ।

ତା'ପରେ ଯୁଗାନ୍ତକାରୀ ଘଟଣାମାନ ଘଟିଥିଲା : କଲିକତା ଫେରିବାର ଅବ୍ୟବହିତ ପରେ ଚିତ୍ତରଞ୍ଜନ ତାଙ୍କର ବହୁଆୟକାରୀ ଆଇନ୍ ବ୍ୟବସାୟକୁ ଛାଡ଼ିଦେଲେ । ରାଜାପରି ଯାପନ କରୁଥିବା ଆପଣାର ବିଚିତ୍ର ଓ ବର୍ଣ୍ଣାଢ଼୍ୟ ଅଭ୍ୟାସ ଓ ଜୀବନକୁ ତ୍ୟାଗ କରି ସିଧା ଜନଆନ୍ଦୋଳନ ମଧ୍ୟକୁ ଝାସ ଦେଇଥିଲେ । ତାଙ୍କର ଏହି ମହାନ୍ ତ୍ୟାଗକୁ ଦେଖି ସମଗ୍ର ଦେଶ ଚକିତ ହୋଇ ଯାଇଥିଲା । ତା'ପରେ, ରାଷ୍ଟ୍ରିଜୀଙ୍କର ଉଲ୍ଲେଖଯୋଗ୍ୟ ଅଗ୍ରଗତି ସହିତ ଚିତ୍ତରଞ୍ଜନଙ୍କର ଶକ୍ତିଶାଳୀ ନେତୃତ୍ୱ ଅସହଯୋଗ ଆନ୍ଦୋଳନର ଗତିକୁ ବହୁଗୁଣରେ ତ୍ୱରାନ୍ୱିତ କରି ଦେଇଥିଲା ।

ଚରଣ ଚୌଧୁରୀ, ମନିରଜ୍ଜାମନ୍ ଇସ୍‌ଲାମାବାଦୀ, ଶାହ ବଦିଓ୍ୱାଲ୍ ଆଲମ୍, ଅଲି ଅହମ୍ମଦ ଓ୍ୱାଲି, ଅମାନତ ଖାଁ, ଡ଼ାକ୍ତର ବେଣୀମୋହନ ଦାସ, ଡ଼ାକ୍ତର ମହିମଚନ୍ଦ୍ର ଦାସଗୁପ୍ତ, ସୁରେଶଚନ୍ଦ୍ର ବାନର୍ଜୀ, ସ୍ୱାମୀ ଜ୍ଞାନାନନ୍ଦ ଓ ଅନ୍ୟମାନେ । ଏଥିରେ ଥିବା ମୁଖ୍ୟ ତରୁଣ-ନେତାମାନେ ହେଉଛନ୍ତି; ସୂର୍ଯ୍ୟକୁମାର ସେନ (ପ୍ରଖ୍ୟାତ ମାଷ୍ଟର୍‌ଦା),ଅମ୍ବିକା ଚକ୍ରବର୍ତ୍ତୀ, ଅନନ୍ତଲାଲ ସିଂହ, ଗଣେଶ ଘୋଷ, ନିର୍ମଳ କୁମାର ସେନ୍ (ଏମାନେ ସମସ୍ତେ ପରେ ଚିଟାଗଙ୍ଗ ବିପ୍ଳବୀ ଆନ୍ଦୋଳନର ନେତୃତ୍ୱ ଗ୍ରହଣ କରିଥିଲେ । ଚାରୁବିକାଶ ଦତ୍ତ, ଧୀରେନ୍ଦ୍ର ଲାଲ ଚକ୍ରବର୍ତ୍ତୀ, ଜ୍ୟୋତୀଶ୍ୱର ଚକ୍ରବର୍ତ୍ତୀ, ସତୀଭୂଷଣ ସେନ (ଅନ୍ୟ ପୁରାତନ ବିପ୍ଳବୀମାନଙ୍କ ସହିତ), ସତୀଶଚନ୍ଦ୍ର ନାଗ, ସଂଜୀବ କୁମାର ସେନ, ବରଦା ପ୍ରସାଦ ନନ୍ଦୀ, ଏକରାମ୍-ଉଲ୍-ହକ୍, ଜ୍ୟୋତିଷ ଚନ୍ଦ୍ର କର,ବିନୋଦ କୁମାର ସେନ୍, ଶୁଭେନ୍ଦୁ ବିକାଶ ସେନଗୁପ୍ତ, ସୁଶାନ୍ତ କୁମାର ଚୌଧୁରୀ, ଶଶାଙ୍କ ରଂଜନ ଦାସ, ବିନୋଦ ଦତ୍ତ ଓ ଅନ୍ୟମାନେ ।

ଜିଲ୍ଲା କଂଗ୍ରେସ କମିଟି ଗଢ଼ାହେବାର ପୂର୍ବରୁ ମଧ୍ୟ ସୂର୍ଯ୍ୟ ସେନ, ଗିରିଜା ଶଙ୍କର ଚୌଧୁରୀ, ଅନନ୍ତ ସିଂହ ଏବଂ ଅନ୍ୟମାନେ 'ସ୍ୱରାଜ ସଂଘ' ନାମରେ ଗୋଟିଏ ସ୍ୱେଚ୍ଛାସେବକ ସଂଗଠନର ସ୍ଥାପନା କରିଥିଲେ । ସେମାନେ ବ୍ରିଟିଶ୍ ଜିନିଷ ବର୍ଜନ ଓ ସ୍ୱଦେଶୀ ଜିନିଷ ଗ୍ରହଣ ବିଷୟରେ ପ୍ରଚାର କରୁଥିଲେ । ସଂଗଠନଟି ମଧ୍ୟରେ ସେମାନେ ସ୍ପଷ୍ଟତଃ ଅଧିକ ସକ୍ରିୟ ହୋଇ ରହିଥିଲେ ।

କାର୍ଯ୍ୟକ୍ରମର ଧାରାଟି ଏହିପରି ଥିଲା: ସହର ତଥା ସହରତଳିର ବିଭିନ୍ନ ଅଞ୍ଚଳରେ ପ୍ରତିଦିନ ଶୋଭାଯାତ୍ରାମାନ ବାହାର କରା ଯାଉଥିଲା ଓ ଅସହଯୋଗ, ବିଲାତି କପଡ଼ା ଓ ଜିନିଷର ବର୍ଜନ, ଅରଟରେ ସୂତା କାଟିବା, ଲୁଗା ବୁଣିବା, ସ୍କୁଲ କଲେଜ ବୟକଟ୍ କରିବା, ଅସ୍ପୃଶ୍ୟତା ଏବଂ ମାଦକଦ୍ରବ୍ୟର ସେବନକୁ ତ୍ୟାଗ କରିବା ପ୍ରଭୃତିର ବାର୍ତ୍ତା ପ୍ରଚାର କରା ଯାଉଥିଲା । ଗ୍ରାମାଞ୍ଚଳରେ ମଧ୍ୟ ଅଚିରେ ସେହିଭଳି  କେନ୍ଦ୍ରମାନ ସଂଗଠିତ ହୋଇଥିଲା, ଯେଉଁଠାରେ କି ସ୍ଥାନୀୟ ପ୍ରମୁଖ ବ୍ୟକ୍ତିମାନେ ଓ ବିଶେଷ କରି କେତେଜଣ ଖ୍ୟାତନାମା ଓକିଲ ଓକିଲାତି ଛାଡ଼ି ଦେଇଥିଲେ ଏବଂ ସେହି ଅଗ୍ରଗାମୀ ବାହିନୀରେ ଆସି ଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରେ ଉଲ୍ଲେଖଯୋଗ୍ୟ କେତେକ ବ୍ୟକ୍ତିଙ୍କର ନାମ ହେଉଛି, ଯାମିନୀମୋହନ ବସୁ (ପଟିୟା ଅଞ୍ଚଳ), ପ୍ରସନ୍ନ କୁମାର ସେନ (ମଧ୍ୟାଞ୍ଚଳ), କାମିନୀକାନ୍ତ ଘୋଷ (ଦକ୍ଷିଣାଞ୍ଚଳ) । ଏମାନଙ୍କ ସହିତ ଆହୁରି ଅନ୍ୟମାନେ ମଧ୍ୟ ରହିଥିଲେ । ଅଳ୍ପଦିନ ମଧ୍ୟରେ ଅସହଯୋଗର ଭାବନା ଏବଂ କାର୍ଯ୍ୟକ୍ରମ ସମଗ୍ର ଜିଲ୍ଲା ମଧ୍ୟରେ ପ୍ରସାରିତ ହୋଇ ଯାଇଥିଲା ।

ଚିଟାଗଙ୍ଗ ଜିଲ୍ଲାରେ ମୁସଲମାନମାନେ ହେଉଛନ୍ତି ସଂଖ୍ୟାରେ ଅଧିକ; ଏହି ଜିଲ୍ଲାର ଅସହଯୋଗ ଆନ୍ଦୋଳନରେ ଏକ ଉଲ୍ଲେଖଯୋଗ୍ୟ କଥା ଏପରି ଘଟିଥିଲା ଯେ, ଧର୍ମ, ଗୋଷ୍ଠୀ, ଜାତି ଓ ବିଶ୍ୱାସ ନିର୍ବିଶେଷରେ ସବୁ ଶ୍ରେଣୀର ଲୋକମାନେ ଏଠାରେ ଦେଶପ୍ରେମଜନିତ ଆଦର୍ଶବାଦର ମଞ୍ଚ ଉପରେ ଏକତ୍ର ସମବେତ ହୋଇପାରିଥିଲେ । ଏପରି ଦୃଷ୍ଟିଗୋଚର ହୋଇଥିଲା ଯେ ବର୍ମା ଅଏଲ କମ୍ପାନୀର ଯେଉଁ ବ୍ୟକ୍ତିମାନେ ଯେଉଁ ପ୍ରଥମ ବୃହତ୍ ଧର୍ମଘଟକୁ ସମ୍ଭବ କରିପାରିଥିଲେ (ପରେ ବର୍ଣ୍ଣିତ ହୋଇଛି), ସେମାନଙ୍କ ମଧ୍ୟରେ ଅଧିକାଂଶ ମୁସଲମାନ ଥିଲେ । ସହର ତଥା ଗ୍ରାମ ଉଭୟ ଅଞ୍ଚଳରେ ହିଁ ହିନ୍ଦୁ, ମୁସଲମାନ ଓ ଅନ୍ୟମାନେ କାନ୍ଧକୁ କାନ୍ଧ ମିଳାଇ ଆନ୍ଦୋଳନରେ ଯୋଗ ଦେଇଥିଲେ । ଏପରିକି, ଶିଖ ଏବଂ ପଶ୍ଚିମ ଭାରତର ଅନ୍ୟାନ୍ୟ ଜନଗୋଷ୍ଠୀମାନେ ମଧ୍ୟ ତ୍ୟାଗ, ସେବା ଏବଂ କଷ୍ଟସହନର ଭାବନା ନେଇ ବାହାରି ଆସିଥିଲେ । କୃପାଳଦାସ ଉଦାସୀ, ଗଙ୍ଗାରାମ ପୁଙ୍ଗା, ସାମସୁଦ୍ଦିନ୍ ସସାରାମୀ, ଏବଂ ଅନ୍ୟମାନେ ଆନ୍ଦୋଳନର ବିଭିନ୍ନ ପର୍ଯ୍ୟାୟରେ ବେଶ୍ ପ୍ରମୁଖ ଅଂଶ ଗ୍ରହଣ କରିଥିଲେ ।

କଂଗ୍ରେସ ଅନୁଷ୍ଠାନର ଆନୁକୂଲ୍ୟରେ ଯେଉଁସବୁ ରଚନାତ୍ମକ କାର୍ଯ୍ୟ କରାଯାଇଥିଲା, ସେଥିରେ ଶ୍ରମିକ ଶ୍ରେଣୀମାନଙ୍କର ଦରିଦ୍ର ଅବସ୍ଥାରେ ଉନ୍ନତି ବିଧାନ ମଧ୍ୟ ଅନ୍ତର୍ଗତ ହୋଇ ରହିଥିଲା । ଏଥିରେ କ୍ଷେତମୂଲିଆ, ଦିନମଜୁରିଆ, ଶିଳ୍ପକାରଖାନାର ଶ୍ରମିକ ତଥା ମେହେନ୍ତର, ମୋଚି, ପିଅନ, ଖାନ୍‌ସମା, ଅଡରଲି, ନୌକାବାହକ, କୁଲି ଏବଂ ସେହିପରି ଅନ୍ୟାନ୍ୟ ଶ୍ରେଣୀର ଶ୍ରମିକମାନଙ୍କୁ ସାମିଲ କରା ଯାଇଥିଲା । ସମାଜର ସାଧାରଣ ମଣିଷ ଅନ୍ତତଃ ଯେପରି ଏକ ଜୀବନ ନିର୍ବାହ କରି ପାରିବାଭଳି ମାନକୁ ଉନ୍ନୀତ ହୋଇପାରିବ, ଯତୀନ୍ଦ୍ରମୋହନ ସେହି ଅତ୍ୟାବଶ୍ୟକ କାର୍ଯ୍ୟକ୍ରମଟି ବିଷୟରେ ବିଶେଷ ଧ୍ୟାନ ଦେଉଥିଲେ । ସହରରେ ବାରବାର କରା ଯାଉଥିବା ବୃହତ୍ ଜନସଭାମାନଙ୍କରେ ଭାଷଣ ଦେଇ ସେ କଂଗ୍ରେସର ଆଦର୍ଶ ଏବଂ ଲକ୍ଷ୍ୟଗୁଡ଼ିକ ବିଷୟରେ ବୁଝାଇ ଦେଉଥିଲେ । ସେଠାରେ ବିଦେଶୀ ଲୁଗାଗୁଡ଼ିକରେ ଅଗ୍ନିସଂଯୋଗ ମଧ୍ୟ ହେଉଥିଲା । ତହିଁ ସଙ୍ଗେ ସଙ୍ଗେ ସେ ଶ୍ରମିକଶ୍ରେଣୀ ଓ ତଥାକଥିତ ଲଘୁଜନମାନଙ୍କର ସଭା କରି ସେମାନଙ୍କୁ ଉଦ୍‌ବୋଧନ ଦେଉଥିଲେ, ସେମାନଙ୍କର ଆବର୍ଜନାମୟ ଧ୍ୱସ୍ତବିଧ୍ୱସ୍ତ ଜୀବନ ମଧ୍ୟରେ ନୂତନ ବିଚାର ଏବଂ ନୂତନ ଆଶାର ସଞ୍ଚାର କରାଉଥିଲେ, ଅଦୂର ଭବିଷ୍ୟତରେ ସେମାନଙ୍କ ଲାଗି ଯେ ଏକ ଉଜ୍ଜ୍ୱଳ ଦିନ ଆସୁଛି, ସେମାନଙ୍କ ସମ୍ମୁଖରେ ସେହିପରି ଏକ ଆଶାକୁ ଉଦ୍ଭାସିତ କରି ଧରୁଥିଲେ । ଏହି ଲୋକମାନେ 'ଯତୀନ୍ ବାରିଷ୍ଟର' (ଲୋକେ ଗର୍ବର ସହିତ ତାଙ୍କୁ ସେହି ନାମରେ ସମ୍ବୋଧନ କରୁଥିଲେ)ଙ୍କୁ ସେମାନଙ୍କର ପରିତ୍ରାଣକର୍ତ୍ତା ରୂପେ ଦେଖୁଥିଲେ ଏବଂ ତାଙ୍କୁ ଦିଗ୍‌ଦର୍ଶନକାରୀ ତାରାପ୍ରାୟ ଗ୍ରହଣ କରି ତାଙ୍କର ଅନୁଗମନ କରୁଥିଲେ ।

ଏହି ବିଶେଷ କ୍ରିୟାଶୀଳତାଟିର କ୍ଷେତ୍ରରେ ଯତୀନ୍ଦ୍ରମୋହନ ସ୍ୱରାଜର ରଚନାତ୍ମକ ଆଦର୍ଶଗୁଡ଼ିକୁ ଜନତାରାଜ ରୂପେ କାର୍ଯ୍ୟକାରୀ କରିବାକୁ ପ୍ରୟାସ କରୁଥିଲେ । ଏକଦା ସ୍ୱାମୀ ବିବେକାନନ୍ଦ ତାଙ୍କର ହୃଦୟ-ଆଲୋଡ଼ନକାରୀ ବାଣୀଗୁଡ଼ିକରେ (ଅବଶ୍ୟ ଏକ ଭିନ୍ନ ସନ୍ଦର୍ଭରେ) ଯାହାର କଳ୍ପନା କରିଥିଲେ, ମହାତ୍ମା ଗାନ୍ଧି ଭାରତୀୟ ସମାଜର ସାଧାରଣ ମନୁଷ୍ୟ କହିଲେ ଯେଉଁ ଛବିଟିକୁ ଦେଖୁଥିଲେ, ଦେଶବନ୍ଧୁ ଚିତ୍ତରଂଜନ (ତାଙ୍କର ଭବାନୀପୁର ସମ୍ମିଳନୀର ଭାଷଣ, 1914) ଏବଂ କବିଗୁରୁ ରବୀନ୍ଦ୍ରନାଥ ତାଙ୍କର ପ୍ରସିଦ୍ଧ କବିତା ''ଏବାର୍ ଫିରାଓ ମୋରେ''ରେ ଯେଉଁ ଚିତ୍ର ଦେଖିଥିଲେ, ଆମେ ଏହାକୁ ସେହିଗୁଡ଼ିକ ସହିତ ତୁଳନା କରିପାରିବା ।

## ସର୍ବପ୍ରଥମ ବିଜୟ

ଏହିପରି ଗୋଟିଏ ମୀମାଂସକ ମୁହୂର୍ତ୍ତରେ, ଏବଂ ବସ୍ତୁତଃ, ଏହାର ପୂର୍ବରୁ ମଧ୍ୟ ଚିଟାଗଙ୍ଗରେ ଥିବା ବର୍ମା ଅଏଲ୍ କମ୍ପାନୀ (ପରିଚାଳନାକାରୀ ଏଜେଣ୍ଟ୍ ହିସାବରେ ବୁଲକ୍ ବ୍ରଦର୍ସ ଆଣ୍ଡ କମ୍ପାନୀ)ର କର୍ମଚାରୀ ଓ ଶ୍ରମିକମାନଙ୍କ ମଧ୍ୟରେ ନାନା ଅସନ୍ତୋଷ ବୃଦ୍ଧି ପାଇବାରେ ଲାଗିଥିଲା । ସେମାନେ ନିଜର ବେତନ ହାରରେ ସଂଶୋଧନ ଚାହୁଁଥିଲେ ଏବଂ କର୍ମସର୍ତ୍ତ ଗୁଡ଼ିକରେ ଉନ୍ନତି ଲାଗି ଆକାଙ୍କ୍ଷା ରଖିଥିଲେ । ସେମାନେ ଯତୀନ୍ଦ୍ରମୋହନଙ୍କୁ ଏକଥା କହିଲେ ଏବଂ ସେ ସଙ୍ଗେ ସଙ୍ଗେ ସେହି ସମସ୍ୟାଟିକୁ ଭଲ ଭାବରେ ଅଧ୍ୟୟନ କରିବାଲାଗି ସମ୍ମତି ଦେଇଥିଲେ । କାରଣ, ସେଇଟି ପ୍ରତି ଉଚିତ ଧ୍ୟାନ ନ ଦେଲେ ଶ୍ରମିକମାନେ ଆହୁରି ଅଧିକ ପରିମାଣରେ ନୈରାଶ୍ୟର ପଙ୍କ ଭିତରେ ଯାଇ ବୁଡ଼ିଯିବାର ଏବଂ ବହୁସଂଖ୍ୟକ ପରିବାର ଅନାଗତ ଦୀର୍ଘ କାଳଲାଗି ସେହିପରି କଷ୍ଟ ଭୋଗ କରିବାର ମଧ୍ୟ ଏକ ନିଶ୍ଚିତ ଆଶଙ୍କା ରହିଥିଲା । ସେ ଶ୍ରମିକମାନଙ୍କୁ ଏକଜୁଟ ହୋଇ ଏକ 'ଶ୍ରମିକ ଇଉନିଅନ'

ଗଠନ କରିବାର ତାତ୍କାଳିକ ଆବଶ୍ୟକତା ବିଷୟରେ ବୁଝାଇ ଦେଉଥିଲେ ଓ ଆପଣାର ସଂଗଠନକୁ ମଜବୁତ କରିବାଲାଗି ପରାମର୍ଶ ଦେଉଥିଲେ । ଯେଉଁ କର୍ତ୍ତୃପକ୍ଷ ଏହିଭଳି ଏକ ଦୁଃଖଦାୟକ ପରିସ୍ଥିତି ଲାଗି ଦାୟୀ, ସେମାନଙ୍କୁ ତାହା ଉପଲବ୍ଧି କରାଇବାର ଏକାନ୍ତ ଆବଶ୍ୟକତା ରହିଥିଲା । ଜଣେ ବୟୋଜ୍ୟେଷ୍ଠ କର୍ମଚାରୀ ବିନୋଦ ଚକ୍ରବର୍ତ୍ତୀ ମଧ ସେହି ସଭାରେ ଭାଷଣ ଦେଉଥିଲେ ଏବଂ ସେନଗୁପ୍ତ ଦେଉଥିବା ପରାମର୍ଶ ଅନୁସାରେ ସଙ୍ଗେସଙ୍ଗେ କାର୍ଯ୍ୟ କରିବାଲାଗି ତାଙ୍କର ସାଥୀ ଅନ୍ୟାନ୍ୟ କର୍ମଚାରୀ ଏବଂ ଶ୍ରମିକମାନଙ୍କୁ ନିବେଦନ କରିଥିଲେ । ସେହି ଅନୁସାରେ ସେଦିନ ସଭାସ୍ଥଳରେ ହିଁ ବର୍ମା ଅଏଲ୍ କମ୍ପାନୀ କର୍ମଚାରୀ ଏବଂ ଶ୍ରମିକ ଇଉନିଅନ ଗଠିତ ହେଲା ଏବଂ ଯତୀନ୍ଦ୍ରମୋହନ ତାହାର ସଭାପତିରୂପେ ନିର୍ବାଚିତ ହୋଇଥିଲେ । ଚତୁର୍ଦ୍ଦିଗରେ ଆନନ୍ଦ ଓ ଆଶାର ସଂଚାର ହୋଇଗଲା ଏବଂ ଆପଣାର ଏହି ଦୀର୍ଘ କାଳର ଦୁର୍ଗତିରେ ଅବଶ୍ୟ ସତ୍ୱର ଏକ ଅବସାନ ଘଟିବ ବୋଲି ସେମାନେ ଅତ୍ୟନ୍ତ ଆଶାନ୍ୱିତ ହୋଇଥିଲେ ।

ମାତ୍ର, ଏହା ଆଦୌ ସହଜ କାର୍ଯ୍ୟ ନ ଥିଲା । ଏପରି ଏକ ସଭା ହେଲା ଏବଂ 'ଇଉନିଅନ' ଗଠିତ ହେଲା ବୋଲି ସଂବାଦ ପାଇ କମ୍ପାନୀର ପରିଚାଳନା କର୍ତ୍ତାମାନେ ଅଶାନ୍ତ ବୋଧ କରିଥିଲେ । ଠିକ୍ ତହିଁ ଆରଦିନ ଏଜେଣ୍ଟ ବିନୋଦବାବୁଙ୍କୁ ଡକାଇ ପଠାଇଲେ ଓ ଇଉନିଅନ୍ ଗଢ଼ିଥିବା ଏବଂ କମ୍ପାନୀର ସ୍ୱାର୍ଥ ଓ ପରିଚାଳନା ବିରୋଧରେ ଅନ୍ୟ କର୍ମଚାରୀ ତଥା ଶ୍ରମିକମାନଙ୍କୁ ମତାଇଥିବାର ଆଚରଣ ଲାଗି ତାଙ୍କୁ କୈଫିୟତ ମଗାଗଲା । ବିନୋଦବାବୁ ଶାନ୍ତ ଭାବରେ ସ୍ୱୀକାର କଲେ ଯେ ସେ ଶ୍ରମିକ ଇଉନିଅନ୍‌ର ଗଠନରେ ଅଂଶଗ୍ରହଣ କରିଛନ୍ତି । ଏପରି କରାଯିବାର ଏକ ମହତ୍ତ୍ୱ ରହିଛି ବୋଲି ସେ ବୁଝାଇବାକୁ ଚେଷ୍ଟା କଲେ, ମାତ୍ର ତଦ୍ୱାରା ସେ ପରିଚାଳନା-କର୍ତ୍ତୃପକ୍ଷଙ୍କର ସ୍ୱାର୍ଥ ବିରୋଧରେ କାର୍ଯ୍ୟ କରିଥିବାର ଅଭିଯୋଗକୁ ସ୍ୱୀକାର କଲେ ନାହିଁ । ଏଜେଣ୍ଟ ମାର୍ଟିନ୍ ସାହେବ ତାଙ୍କୁ ବିନା ସର୍ତ୍ତରେ କ୍ଷମାପ୍ରାର୍ଥନା କରିବାଲାଗି ଆଦେଶ ଦେଲେ, ମାତ୍ର ବିନୋଦବାବୁ ତାହା କରିବାକୁ ରାଜି ହେଲେ ନାହିଁ । ସେତେବେଳର ଯେକୌଣସି ଗୋରା ସାହେବଙ୍କ ପରି ଏଜେଣ୍ଟ ଏଥିରେ ଅତ୍ୟନ୍ତ କଠୋର ମନୋଭାବ ଗ୍ରହଣ କରିଥିଲେ । ବିନୋଦବାବୁଙ୍କ ବିରୋଧରେ ଚରମ ବିଶୃଙ୍ଖଳା ଘଟାଇଥିବାର ଅଭିଯୋଗ ଅଣାଗଲା ଏବଂ ତାଙ୍କୁ ସଙ୍ଗେସଙ୍ଗେ କାର୍ଯ୍ୟରୁ ଅନ୍ତର କରି ଦିଆଯିବାର ନିର୍ଦ୍ଦେଶନାମା ଦିଆଗଲା । ଅଳ୍ପ କେତେ ଘଣ୍ଟା ମଧ୍ୟରେ ତାଙ୍କୁ କମ୍ପାନୀ ତରଫରୁ ତାଙ୍କର ଯାବତୀୟ ପ୍ରାପ୍ୟ ଦେଇ ଦିଆଗଲା । ଚକ୍ରବର୍ତ୍ତୀ ଯେଉଁ କମ୍ପାନୀର ପୂର୍ଣ୍ଣ ଆନୁଗତ୍ୟ ଏବଂ ନିଷ୍ଠାର ସହିତ ଏତେଦିନ ସେବା କରି ଆସିଥିଲେ, ସେହି କମ୍ପାନୀର ହତା ଛାଡ଼ି ବାହାରି ଆସିଲେ ।

ବିନୋଦବାବୁଙ୍କୁ ଏପରି ହଠାତ୍ କାର୍ଯ୍ୟରୁ ବାହାର କରି ଦିଆଯିବା ଫଳରେ କମ୍ପାନୀର ସବୁ କର୍ମଚାରୀ ତଥା ଶ୍ରମିକଙ୍କ ମଧ୍ୟରେ ତୀବ୍ର ଅସନ୍ତୋଷ ବ୍ୟାପି ଯାଇଥିଲା । ସେମାନେ ଇଉନିଅନ ତରଫରୁ ସଙ୍ଗେ ସଙ୍ଗେ ଏକ ପ୍ରତିବାଦ ସଭାରେ ଏକତ୍ରିତ ହେଲେ ଏବଂ ସର୍ବସମ୍ମତି କ୍ରମେ ଏପ୍ରିଲ ସତର ତାରିଖ ଦିନ ଏକ ଧର୍ମଘଟର କରାଯିବ ବୋଲି ନିଷ୍ପତ୍ତି ଗ୍ରହଣ କଲେ । ବିନୋଦ ଚକ୍ରବର୍ତ୍ତୀଙ୍କୁ ଏପରି ଅପ୍ରତ୍ୟାଶିତ ଭାବରେ କାର୍ଯ୍ୟରୁ ବାହାର କରି ଦିଆଯାଇଛି ଏବଂ ଇଉନିଅନ୍ ସର୍ବସମ୍ମତିକ୍ରମେ ଧର୍ମଘଟ କରିବାଲାଗି ନିଷ୍ପତ୍ତି ନେଇଛି, ଯତୀନ୍ଦ୍ରମୋହନ ସେହି ସମ୍ବାଦ ପାଇଲେ । ଇଉନିଅନ୍‌ର ସଭାପତି ହିସାବରେ ସେ ଉକ୍ତ ନିଷ୍ପତ୍ତିକୁ ସମର୍ଥନ ଜଣାଇଥିଲେ ଏବଂ ଅସହଯୋଗ ଆନ୍ଦୋଳନର ଏହି ଅତ୍ୟନ୍ତ ଅନୁକୂଳ ମୁହୂର୍ତ୍ତଟିରେ ଧର୍ମଘଟର ନେତୃତ୍ୱ ଗ୍ରହଣ କରିବାର ଦାୟିତ୍ୱ ସ୍ୱୀକାର କରିନେଲେ । ଭାରତର ଇତିହାସରେ ସମ୍ଭବତଃ ଏହାହିଁ ହେଉଛି ସର୍ବପ୍ରଥମ ଶ୍ରମିକ-ଧର୍ମଘଟ । ତେଣୁ ସମଗ୍ର

ଦେଶ ଓ ବିଶେଷ ଭାବରେ ଶ୍ରମିକଶକ୍ତି ଓ କର୍ମଚାରୀ ସଂଗଠନମାନେ ଅତ୍ୟନ୍ତ ଆଗ୍ରହର ସହିତ ଏହାର ଅନେକ ମୁଖ୍ୟ ତାତ୍ପର୍ଯ୍ୟକୁ ଲକ୍ଷ୍ୟ କରି ଦେଖୁଥିଲେ । ଏହି ଧର୍ମଘଟ ଯେ ଗୋଟିଏ ବୃହତ୍ ବ୍ରିଟିଶ୍ ଶିଳ୍ପସଂସ୍ଥାର କାର୍ଯ୍ୟକୁ ସଂପୂର୍ଣ୍ଣ ଭାବରେ ଅଚଳ କରିଦେବ ଏବଂ ଶାସକ କର୍ତ୍ତୃପକ୍ଷ ଅଥବା ପ୍ରତ୍ୟକ୍ଷ ଭାବରେ କମ୍ପାନୀକୁ ଯେ ଅବଶ୍ୟ ସାହାଯ୍ୟ କରିବେ, ଯତୀନ୍ଦ୍ରମୋହନ ତାହାର ସେହି ସୁଦୂରପ୍ରସାରୀ ପରିଣାମଗୁଡ଼ିକୁ ହୃଦୟଙ୍ଗମ କରିଥିଲେ । ସେ ସଂପୃକ୍ତ ସମସ୍ତଙ୍କୁ ବିଚାର, ବାକ୍ୟ ତଥା କର୍ମରେ ଅହିଂସ ରହିବାପାଇଁ ନିବେଦନ କରିଥିଲେ, ଯେପରିକି ଆଇନ୍ ଏବଂ ଶୃଙ୍ଖଳାର ତତ୍ତ୍ୱାବଧାରକମାନେ ସେମାନଙ୍କୁ ଓଲଟା ଆଘାତ କରିବା ସକାଶେ ଆଦୌ କୌଣସି ଆଳ ବାହାର କରିପାରିବ ନାହିଁ ।

ନେତାଙ୍କର ଡାକରାକୁ ସମ୍ପୂର୍ଣ୍ଣ ଅନୁମୋଦନ ଜଣାଇ ବର୍ମା ଅଏଲ୍ କମ୍ପାନୀର ପ୍ରାୟ ଦୁଇହଜାର କର୍ମଚାରୀ ନିର୍ଦ୍ଧାରିତ ଦିନଟିରେ ଆପଣାର ସେହି ଯୁଗାନ୍ତକାରୀ ଧର୍ମଘଟକୁ ଆରମ୍ଭ କରି ଦେଇଥିଲେ ଏବଂ ତଦ୍ଦ୍ୱାରା ଏକ ବୃହତ୍ତମ ଇଉରୋପୀୟ ବ୍ୟବସାୟ ସଂସ୍ଥାର ମୂଳକୁ ଦୋହଲାଇ ଦେଇଥିଲେ । ଏହା ଫଳରେ କେତେ କେତେ ଆଡ଼େ ଉତ୍ତେଜନା ବ୍ୟାପିଗଲା । ଯତୀନ୍ଦ୍ରମୋହନ ଯେ କେବଳ ଧର୍ମଘଟର ଦୈନନ୍ଦିନ ଅଗ୍ରଗତିର ତତ୍ତ୍ୱାବଧାନ କରୁଥିଲେ ତା ନୁହେଁ, ମାତ୍ର ଅଭାବଗ୍ରସ୍ତ ଶ୍ରମିକମାନଙ୍କ ଲାଗି ଆର୍ଥିକ ସାହାଯ୍ୟର ବନ୍ଦୋବସ୍ତ କରିବାକୁ ମଧ୍ୟ ସେ ଯଥାସାଧ୍ୟ ତତ୍ପର ରହିଥିଲେ ।

ଧର୍ମଘଟକାରୀ ସାହାଯ୍ୟପାଣ୍ଠି ଖୋଲାଗଲା । ବର୍ମା ଅଏଲ୍ କମ୍ପାନୀର ଶ୍ରମିକ ଇଉନିଅନ୍ ତାହାର ତତ୍ତ୍ୱାବଧାନରେ ରହିଲା ଏବଂ ଜିଲ୍ଲା କଂଗ୍ରେସ କମିଟି ତାହାକୁ ଆର୍ଥିକ ସାହାଯ୍ୟ ପ୍ରଦାନ କଲା । ସାଧାରଣ ଦାନ ଓ ଚାନ୍ଦାମାନ ସଂଗୃହୀତ ହେବାକୁ ଲାଗିଲା ।

ଧର୍ମଘଟ ତା'ର ସର୍ବୋଚ୍ଚ ସୀମାରେ ପହଞ୍ଚିବା ବେଳକୁ ଅପ୍ରତ୍ୟାଶିତ ଭାବରେ ଆଉ ଗୋଟିଏ ଘଟଣା ଘଟିଲା । ବର୍ମା ଅଏଲ୍ କମ୍ପାନୀର ଯାତ୍ରୀ ଓ ମାଲ୍ ବହନ କରୁଥିବା 'ଲଙ୍କା' ନାମକ ଏକ ଜାହାଜ ଆସି ଚିଟାଗଙ୍ଗ ବନ୍ଦରରେ ଲାଗିଲା । ଧର୍ମଘଟକାରୀ ଶ୍ରମିକମାନଙ୍କ ପ୍ରତି ସକ୍ରିୟ ସହାନୁଭୂତି ପ୍ରକାଶ କରି ଜେଟି ଶ୍ରମିକ ଓ ସଂପୃକ୍ତ ଅନ୍ୟମାନେ, ଏପରିକି କୁଲି ଓ ନୌକାବାହକମାନେ ମଧ୍ୟ ନଙ୍ଗର ପକାଇଥିବା ଜାହାଜକୁ ଯାଇ ମାଲ୍ ଖଲାସ କରିବାକୁ ଏବଂ ଯାତ୍ରୀମାନଙ୍କୁ କୂଳ ପର୍ଯ୍ୟନ୍ତ ବାହି ଆଣିବାକୁ ମନା କରିଦେଲେ । ସେହି ସମୟର ଲୋକପ୍ରିୟ ଧ୍ୱନି 'ବନ୍ଦେ ମାତରମ୍' ଏବଂ 'ଆଲ୍ଲା-ହୋ-ଆକବର' ବାୟୁମଣ୍ଡଳକୁ ପ୍ରକମ୍ପିତ କରି ଦେଉଥିଲା । ଏପରିକି ଜାହାଜର ନାବିକମାନେ ମଧ୍ୟ ଏହି ଅସହଯୋଗ ସହିତ ଯୋଗ ଦେଲେ; ସେମାନେ ପାଣିକୁ ଡେଇଁ ପଡ଼ିଲେ, ପହଁରି ପହଁରି କୂଳକୁ ଚାଲି ଆସିଲେ ଏବଂ ଜାହାଜଟିକୁ ତା'ର ଭାଗ୍ୟ ହାତରେ ଛାଡ଼ିଦେଇ ଆସିଲେ । ଅପ୍ରତ୍ୟାଶିତ ଭାବରେ ଏକ ଅଚଳ ଅବସ୍ଥା ସୃଷ୍ଟି ହୋଇଗଲା । ଯତୀନ୍ଦ୍ରମୋହନ ସ୍ୱୟଂ ନଦୀ କୂଳରେ ଓ ଜେଟି ପାଖରେ ଉପସ୍ଥିତ ରହିଥିଲେ ଏବଂ ଧର୍ମଘଟର ଡାକରା ଯେ ପ୍ରକୃତରେ ଏପରି ବୈଦ୍ୟୁତିକ ପ୍ରତିକ୍ରିୟା ଜାଗ୍ରତ କରାଇପାରିଛି, ସେଥିରେ ଅତ୍ୟନ୍ତ ଉତ୍ସାହିତ ଅନୁଭବ କରୁଥିଲେ ।

'ଭଦ୍ରା' ନାମରେ ଆଉ ଗୋଟିଏ ଜାହାଜ ମଧ୍ୟ ସେହି କମ୍ପାନୀର ମାଲ ଆଣି ସେତେବେଳେ ଚିଟାଗଙ୍ଗ ପୋତାଶ୍ରୟ ଅଞ୍ଚଳର ନିକଟବର୍ତ୍ତୀ ହେଉଥିଲା । ଜାହାଜର କପ୍ତାନ ବିପଦର ଘ୍ରାଣ କରିପାରିଲେ ଏବଂ ଚିଟାଗଙ୍ଗ ବନ୍ଦରରେ ମାଲ୍ ଓହ୍ଲାଇବାଜନିତ ଆଶଙ୍କାଟିକୁ ଏଡ଼ି ସେ ଜାହାଜକୁ ଆକାୟାବ ଫେରି ଯିବାଲାଗି ନିର୍ଦ୍ଦେଶ ଦେଇଥିଲେ । ସାହସ ଅପେକ୍ଷା ବିବେକ ହିଁ ଅଧିକ ସମୀଚୀନ ବୋଧ ହୋଇଥିଲା ।

ଏହି ଘଟଣା ମଇ ମାସ ପହିଲାଦିନ ଘଟିଲା । ଧର୍ମଘଟ ଆରମ୍ଭ ହେବାର ପ୍ରାୟ ଦୁଇ ସପ୍ତାହ ହୋଇ ଯାଇଥାଏ । ଆନ୍ଦୋଳନର ଅଗ୍ରଗତିରେ ଧର୍ମଘଟକାରୀମାନେ ଉତ୍ସାହିତ ଅନୁଭବ କରୁଥାନ୍ତି ସତ, ମାତ୍ର, ସେମାନେ ଯେଉଁ ବୃହତ୍ ପଦକ୍ଷେପଟି ଗ୍ରହଣ କରିଛନ୍ତି, ତାହାର ସର୍ବଶେଷ ପରିଣତି ଯେ ପ୍ରକୃତରେ କ'ଣ ହେବ, ସେହି ବିଷୟରେ ଚିନ୍ତା କରି ଆତଙ୍କ ବି ଅନୁଭବ କରୁଥାନ୍ତି । ଅନ୍ୟ ପକ୍ଷରେ, କମ୍ପାନୀର ଦିନ ପରେ ଦିନ ଘୋର କ୍ଷତି ହେବାରେ ଲାଗିଥାଏ, ତଥାପି ତାହା ନିଜର ଅନମନୀୟ ଦୃଷ୍ଟିଭଙ୍ଗୀରେ ଅଟଳ ହୋଇ ରହିଥାଏ । ଅସହଯୋଗ ଆନ୍ଦୋଳନକୁ ଅଧିକ ବଳ ଯୋଗାଇ ଦେଉଥିବା ଏହି ଅପ୍ରତ୍ୟାଶିତ ଘଟଣାର ମୋଡ଼ଟି ଜିଲ୍ଲାଶାସନର କର୍ତ୍ତୃପକ୍ଷଙ୍କୁ କ୍ରମେ ଭାରି ଅସ୍ଥିର କରି ପକାଉଥାଏ । ଧର୍ମଘଟ ସଂପୂର୍ଣ୍ଣ ଭାବରେ ଶାନ୍ତିପୂର୍ଣ୍ଣ ହୋଇ ରହିଥିଲେ ମଧ୍ୟ ଜିଲ୍ଲା ମାଜିଷ୍ଟ୍ରେଟ୍ ଯତୀନ୍ଦ୍ରମୋହନ ଓ ତାଙ୍କର ଏଗାର ଜଣ ଅନ୍ୟ ସହକର୍ମୀଙ୍କ ଉପରେ ଫୌଜଦାରୀ ଆଇନର 144 ଧାରା ବଳରେ ଏକ ନୋଟିସ୍ ଜାରି କଲେ । ସହର ତଥା ସହରତଳି ଅଞ୍ଚଳରେ କୌଣସି ସଭା କରିବା କିମ୍ବା ଶୋଭାଯାତ୍ରା ବାହାର କରିବାକୁ ନିଷିଦ୍ଧ ବୋଲି ଘୋଷଣା କଲେ ଏବଂ ଆଉ ଏକ ନିଷେଧାଜ୍ଞା ବଳରେ ଜିଲ୍ଲା କର୍ମକର୍ତ୍ତାଙ୍କର ଲିଖିତ ଅନୁମତି ବିନା କେହି କୌଣସି ସଭା କରି ପାରିବ ନାହିଁ ଓ ଭାଷଣ ଦେଇପାରିବ ନାହିଁ ବୋଲି ଆଦେଶ ଦେଇଥିଲେ ।

ସରକାରଙ୍କର ଏହି ସଂପୂର୍ଣ୍ଣ ଭାବରେ ଅକାରଣ ହସ୍ତକ୍ଷେପ ଯେ ପରୋକ୍ଷ ଭାବରେ ବ୍ରିଟିଶ୍ ବ୍ୟବସାୟୀ କମ୍ପାନୀର ପକ୍ଷରେ ଯାଉଥିଲା, ସେଥିରେ ଆଦୌ କୌଣସି ସନ୍ଦେହ ରହିଲା ନାହିଁ । ସାଧାରଣଙ୍କ ତରଫରୁ ତାହାର ତୀବ୍ର ପ୍ରତିବାଦ ହୋଇଥିଲା । ଯତୀନ୍ଦ୍ରମୋହନଙ୍କ ନେତୃତ୍ୱରେ ଅନ୍ୟ ନେତାମାନେ ସରକାରୀ ଆଦେଶକୁ ଅମାନ୍ୟ କରି ତାହାର ଅବିବେକିତା ବିରୋଧରେ ପ୍ରତିବାଦ କରିବାକୁ ନିଷ୍ପତ୍ତି କଲେ । ନିଷେଧାଜ୍ଞା ରହିଥିବା ସତ୍ତ୍ୱେ ଏକ ବିରାଟ ଜନସଭା ଆହୂତ ହୋଇଥିଲା । ଯତୀନ୍ଦ୍ରମୋହନ ତଥା ଅନ୍ୟ ଏଗାର ଜଣ ନେତୃସ୍ଥାନୀୟ ବ୍ୟକ୍ତି ସଭାରେ ଭାଷଣ ଦେଇ ସରକାରୀ ଆଦେଶର ଯୁକ୍ତିଯୁକ୍ତତାକୁ ଆହ୍ୱାନ ଦେଇଥିଲେ ଏବଂ ପ୍ରତିବାଦ ସ୍ୱରୂପ ଏକ ସାଧାରଣ ପୂର୍ଣ୍ଣ ହରତାଳ ପାଇଁ ଡାକରା ଦେଲେ । ଲୋକମାନେ ଯେ ସେମାନଙ୍କର ଅହିଂସ ଆନ୍ଦୋଳନକୁ ଅଧିକ ଅଗ୍ରସର କରାଇ ନେବାକୁ ସଂକଳ୍ପବଦ୍ଧ, ସେମାନେ ଏହାଦ୍ୱାରା ସେହି ସୂଚନା ଦେଇଥିଲେ । ଧର୍ମଘଟର ମେରୁଦଣ୍ଡକୁ ଭାଙ୍ଗି ଦେବାଲାଗି ଯେ ସରକାର ଏହିସବୁ କାର୍ଯ୍ୟପନ୍ଥା ଗ୍ରହଣ କରିଛନ୍ତି ଓ ତାହାକୁ ଯେ ନିଷ୍ଫଳ କରିଦେବାକୁ ପଡ଼ିବ, ସେମାନେ ତାହା ଘୋଷଣା କରିଥିଲେ ।

ମଇ ଚାରିତାରିଖ ଦିନ ସେପର୍ଯ୍ୟନ୍ତ ଅନୁଷ୍ଠିତ ସର୍ବବୃହତ୍ ହରତାଳଟି ପାଳିତ ହୋଇଥିଲା । ସହରର ଜୀବନ ସଂପୂର୍ଣ୍ଣ ଭାବରେ ଅଚଳ ହୋଇଗଲା; ସରକାରୀ ଓ ବେସରକାରୀ ସବୁ ଅଫିସ୍ ଖାଲି ପଡ଼ିଲା । ରାସ୍ତାରେ ଆଦୌ କୌଣସି ଯାନବାହନ ବା ଗାଡ଼ିମୋଟର ଚାଲିଲା ନାହିଁ, ରେଳଗାଡ଼ି ବନ୍ଦ ହୋଇଗଲା, ଏପରିକି ନୌକା ଓ ଜାହାଜ ଚଳାଚଳ ମଧ୍ୟ ବନ୍ଦ ହେଲା । ବଜାରରେ କୌଣସି ଦୋକାନ ଖୋଲି ନ ଥିଲା । ଏପରିକି ୟୁରୋପୀୟ ହାକିମମାନଙ୍କର ରାନ୍ଧୁଣୀଆ ଓ ଅଡ଼ର୍‌ଲିମାନେ ହରତାଳରେ ଯୋଗ ଦେଇଥିଲେ ଏବଂ ସେଦିନ ଏହିପରି ଅନେକ ବଙ୍ଗଳାରେ ଚୁଲି ଜଳି ନଥିଲା । କୌଣସି ଖାଦ୍ୟ ରନ୍ଧା ଅଥବା ପରଷା ହୋଇ ନ ଥିଲା । ଏକ ବିରାଟ ଶୋଭାଯାତ୍ରା ଓ ଶାନ୍ତିପୂର୍ଣ୍ଣ ବିକ୍ଷୋଭ ପ୍ରଦର୍ଶନ ଦ୍ୱାରା ସଫଳ ହରତାଳର ଉଦ୍‌ଯାପନ କରାଗଲା; ଯତୀନ୍ଦ୍ରମୋହନ, ମହିମ ଚନ୍ଦ୍ର, ନୃପେନ୍ଦ୍ରଚନ୍ଦ୍ର, କାସିମ୍ ଅଲ୍ଲି, ଇସ୍‌ଲାମାବାଦୀ ସାହେବ ଏବଂ ଅନ୍ୟ ପ୍ରମୁଖ ବ୍ୟକ୍ତିମାନେ ସେଥିରେ ନେତୃତ୍ୱ ନେଇଥିଲେ । ତରୁଣ-ଶାଖାଟି ଚନ୍ଦ୍ରଶେଖର ଦେ, ଗିରିଜାଶଙ୍କର ଚୌଧୁରୀ,

ଅନନ୍ତ ସିଂହ ଓ ଅନ୍ୟମାନଙ୍କର ଦାୟିତ୍ୱରେ ରହିଥିଲା । ସେମାନେ ଜାରି ହୋଇଥିବା 144 ଧାରାର ଆଦେଶକୁ ସଂପୂର୍ଣ୍ଣ ଭାବରେ ନାକଚ କରି ଦେଇଥିଲେ । କାହାକୁ ଗିରଫ କରାଯାଇ ନ ଥିଲା, ମାତ୍ର ଏକ ନିର୍ଦ୍ଦିଷ୍ଟ ତାରିଖରେ ନେତାମାନଙ୍କୁ ମାଜିଷ୍ଟ୍ରେଟ୍‌ଙ୍କ କଚେରିରେ ହାଜର ହେବାଲାଗି ନିର୍ଦ୍ଦେଶ ହୋଇଥିଲା । ସେମାନେ ସେହି ଆଦେଶଟିକୁ ମଧ୍ୟ ପାଳନ କରି ନ ଥିଲେ ।

ହରତାଳ ଓ ତତ୍ ପରବର୍ତ୍ତୀ ଘଟଣାମାନ ବର୍ମା ଅଏଲ୍ କମ୍ପାନୀର କର୍ତ୍ତାମାନଙ୍କୁ ଓ ଜିଲ୍ଲା କର୍ତ୍ତୃପକ୍ଷଙ୍କୁ ସଂପୂର୍ଣ୍ଣ ଭାବରେ ବିଚଳିତ କରି ଦେଇଥିଲା । ଏହି ପରିସ୍ଥିତିରେ ଯେ ସେମାନଙ୍କର ସମ୍ମାନହାନି ହୋଇଥିଲା ତା'ନୁହେଁ, ମାତ୍ର ଏହାଦ୍ୱାରା ସେମାନଙ୍କର ଅସ୍ତିତ୍ୱ ମଧ୍ୟ ବିପନ୍ନ ହୋଇ ପଡ଼ିଥିଲା । ଏଥିରୁ ମୁକୁଳି ଆସିପାରିବାର ଉପାୟ ସ୍ଥିର କରିବାଲାଗି ସେମାନେ ଅତ୍ୟନ୍ତ ବ୍ୟସ୍ତତ୍ରସ୍ତ ଭାବରେ ଅନତିବିଳମ୍ବେ ଆପଣା ଭିତରେ କଥାବାର୍ତ୍ତା ଆରମ୍ଭ କରିଦେଇଥିଲେ । ବର୍ମା ଅଏଲ୍ କମ୍ପାନୀର ଏଜେଣ୍ଟ ଏବଂ ଚିଟାଗଙ୍ଗ ମ୍ୟୁନିସିପାଲିଟିର ତତ୍କାଳୀନ ଚେୟାରମ୍ୟାନ୍ ମାର୍ଟିନ୍ ସାହେବ ତହିଁ ଆରଦିନ ସକାଳେ ଶ୍ରୀଯୁକ୍ତ ସେନଗୁପ୍ତଙ୍କ ପାଖକୁ ଏକ ପତ୍ର ଲେଖି ପଠାଇଥିଲେ ଏବଂ ମିଉନିସିପାଲ୍ ଅଫିସ୍‌ରେ କଥାବାର୍ତ୍ତା କରିବାପାଇଁ ତାଙ୍କୁ ସେଠାକୁ ନିମନ୍ତ୍ରଣ କରିଥିଲେ । ସମଗ୍ର ନାଟକଟିର ନାୟକରୂପେ ସେନଗୁପ୍ତ ସେହି କଥାବାର୍ତ୍ତାରେ ଯୋଗ ଦେଇଥିଲେ ଏବଂ ଧର୍ମଘଟରେ ସମାଧାନ ସକାଶେ ସେ ଯେତେଗୁଡ଼ିଏ ସର୍ତ୍ତର ଉପସ୍ଥାପନା କଲେ, କମ୍ପାନୀର ମୁଖ୍ୟ ସେଗୁଡ଼ିକୁ ଆପାତତଃ ସ୍ୱୀକାର କରି ନେଇଥିଲେ । ଏହି କଥାବାର୍ତ୍ତାର ନିଷ୍ପତ୍ତିଗୁଡ଼ିକୁ ପରେ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ସହିତ ଏକାଠି ବସି ଚୂଡ଼ାନ୍ତ କରିବାକୁ ସ୍ଥିର କରାଗଲା । ହରତାଳ ଦିନ (ମଇ 4 ତାରିଖ) ରାତିରେ ମାଜିଷ୍ଟ୍ରେଟ ମଧ୍ୟ ସେନଗୁପ୍ତଙ୍କ ପାଖକୁ ପତ୍ର ଲେଖିଥିଲେ ଏବଂ ପରଦିନ ଅପରାହ୍ନରେ ଡିଭିଜନାଲ୍ କମିଶନର୍‌ଙ୍କର ସମ୍ମିଳନୀ କକ୍ଷରେ ହେବାକୁ ଯାଉଥିବା ଏକ ସାଲିଶ୍ କଥାବାର୍ତ୍ତାରେ ସେ ଏବଂ ତାଙ୍କର ସହକର୍ମୀମାନେ ଉପସ୍ଥିତ ରହିବାକୁ ତାଙ୍କୁ ଅନୁରୋଧ ଜଣାଇଥିଲେ । ସଦର ଏସ୍. ଡି. ଓ. ଏସ୍. ସି. ଘଟକ ନିଜେ ଆସି ଯତୀନ୍ଦ୍ରମୋହନଙ୍କୁ ତାଙ୍କ ଘରେ ସେହି ଚିଠି ଦେଇ ଯାଇଥିଲେ । ନିମନ୍ତ୍ରଣ ସ୍ୱୀକୃତ ହୋଇଥିଲା ।

କମିଶନର୍‌ଙ୍କ ଅଫିସ୍‌ରେ ହୋଇଥିବା ସମ୍ମିଳନୀରେ ସବୁ ପକ୍ଷର ପ୍ରତିନିଧିମାନେ ଯୋଗ ଦେଇଥିଲେ । ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ୍ ଏଫ୍. ଡବ୍ଲିଉ. ଷ୍ଟ୍ରଙ୍ଗ, ବର୍ମା ଅଏଲ୍ କମ୍ପାନୀର ଏଜେଣ୍ଟ ଶ୍ରୀଯୁକ୍ତ ମାର୍ଟିନ୍, ଶ୍ରୀ ସେନଗୁପ୍ତ ଓ ଅନ୍ୟ ନେତୃସ୍ଥାନୀୟ କଂଗ୍ରେସ ଲୋକମାନଙ୍କ ବ୍ୟତୀତ ଚିଟାଗଙ୍ଗ ପୋର୍ଟ୍ କମିଶନର ଏବଂ ଆସାମ ବେଙ୍ଗଲ ରେଲ୍‌ୱେ ପ୍ରତିନିଧିବୃନ୍ଦ, ଇଉରୋପୀୟ ଅନ୍ୟ ବ୍ୟବସାୟୀ ସଂସ୍ଥାଗୁଡ଼ିକର ଏଜେଣ୍ଟ ଏବଂ ମ୍ୟାନେଜରମାନେ ତଥା ଆହୁରି ଅଳ୍ପ କେତେଜଣ କର୍ମଚାରୀ ମଧ୍ୟ ସେଥିରେ ଯୋଗ ଦେଇଥିଲେ । ଏପରି ଗୋଟିଏ ରାଜିନାମା ହେଲା ଯେ, 144 ଧାରା ଅନୁସାରେ ନେତାମାନଙ୍କୁ କୌଣସି ଏକ ବିଚାରାଳୟରେ ହାଜର ହେବାଲାଗି ସେମାନଙ୍କ ଉପରେ ଜାରି ହୋଇଥିବା ନିଷେଧାଜ୍ଞା ଏବଂ ସେମାନଙ୍କ ପାଇଁ ରହିଥିବା କେତେକ କଟକଣାକୁ ସଙ୍ଗେ ସଙ୍ଗେ ପ୍ରତ୍ୟାହାର କରି ନିଆଯିବ । ଅନ୍ୟପକ୍ଷରେ ବର୍ମା ଅଏଲ୍ କମ୍ପାନୀ ୟୁନିଅନ୍ ଶ୍ରମିକମାନଙ୍କର ଧର୍ମଘଟକୁ ପ୍ରତ୍ୟାହାର କରିନେବେ ଓ ସେମାନଙ୍କ ଉପରେ କୌଣସିପ୍ରକାର ପ୍ରତିଶୋଧମୂଳକ ଶାସ୍ତିବିଧାନ ହେବାର ଭୟ ନରଖି ଶ୍ରମିକମାନେ ତହିଁ ଆରଦିନ (ମଇ 5 ତାରିଖ) କାର୍ଯ୍ୟରେ ଯାଇ ଯୋଗ ଦେବେ । ଏହିପରି ଭାବରେ ଅଚଳ ଅବସ୍ଥାଟିର ଏକ ସୁଖକର ସମାଧାନ ହୋଇ ଯାଇଥିଲା । ଶ୍ରୀଯୁକ୍ତ ସେନଗୁପ୍ତ ଏବଂ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ମଧ୍ୟରେ ଏହି ସାକ୍ଷାତ ଆରମ୍ଭରୁ ହିଁ ଆଗ୍ରହୋଦ୍ଦୀପକ

ହୋଇ ରହିଥିଲା । ଯତୀନ୍ଦ୍ରମୋହନ ଏକାଧାରରେ ଜଣେ ରାଜନୀତିଜ୍ଞର ସୁଯୋଗ୍ୟ ମନୋଭାବ ଏବଂ ତାଙ୍କ ବିଚକ୍ଷଣ ଆଇନ୍ ଜ୍ଞାନର ପ୍ରଦର୍ଶନ କରିଥିଲେ ଏବଂ ତାହା ଷ୍ଟୁଙ୍ଗ୍ ସାହେବଙ୍କ ମନରେ ତାଙ୍କ ବିଷୟରେ ଏକ ଉଚ୍ଚ ଧାରଣା ସୃଷ୍ଟି କରିଥିଲା । କଥାବାର୍ତ୍ତା ପରେ ଯେତେବେଳେ ସେମାନେ ବିଦାୟ ନେଲେ, ଜଣେ ଜନନେତା ହିସାବରେ ତାଙ୍କର ଚମତ୍କାର ଦକ୍ଷତାଲାଗି ଜିଲ୍ଲା ମାଜିଷ୍ଟ୍ରେଟ୍ ସେନଗୁପ୍ତଙ୍କର ପ୍ରଶଂସା କରିଥିଲେ ।

ଚିଟାଗଙ୍ଗ୍‌ର ଘଟଣାବଳୀ ଏବଂ ତରୁଣ ଯତୀନ୍ଦ୍ରମୋହନଙ୍କର ଏହି ତାତ୍ପର୍ଯ୍ୟପୂର୍ଣ୍ଣ ଜୟଲାଭ କଲିକତାର ଖବରକାଗଜ ମାନଙ୍କରେ ସବା ଉପର ଧାଡ଼ିମାନଙ୍କରେ ବଡ଼ ଅକ୍ଷରରେ ବାହାରିଲା । ଜାତୀୟତାବାଦୀ ଦୈନିକ ସଂବାଦପତ୍ରମାନେ ତାଙ୍କୁ ଏଥିଲାଗି ହାର୍ଦ୍ଦିକ ଅଭିନନ୍ଦନମାନ ଜଣାଇଲେ ଓ 'ଦି ସର୍ଭାଣ୍ଟ' 'ଝାଡୁଦାର ମାନଙ୍କର ରାଜା' ଶୀର୍ଷକରେ ଗୋଟିଏ ଅଗ୍ରଲେଖା ମଧ୍ୟ ପ୍ରକାଶ କରିଥିଲେ, ମାତ୍ର ଆଙ୍ଗ୍ଲୋ-ଇଣ୍ଡିଆନ୍ କାଗଜମାନେ ଏହି ଘଟଣା ଉପରେ ଏକ ସମାଲୋଚନାତ୍ମକ ଦୃଷ୍ଟିକୋଣ ଗ୍ରହଣ କରିଥିଲେ । ଏହି ଗୋଷ୍ଠୀର ଗୋଟିଏ ସଂବାଦପତ୍ର ଶ୍ରୀଯୁକ୍ତ ସେନଗୁପ୍ତଙ୍କୁ ଚିଟାଗଙ୍ଗ୍‌ର ଦୁର୍ଦ୍ଧର୍ଷ ଶିଶୁ (Infant terrible) ବୋଲି ବର୍ଣ୍ଣନା କରିଥିଲା । ପ୍ରକାଶିତ ଲେଖାଟି ନିମ୍ନ ପ୍ରକାର :-

*ଝାଡୁଦାର ମାନଙ୍କର ରାଜା କହିଲେ*

''ସିଏ (ସେନଗୁପ୍ତ) ଜଣେ ସାହସୀ, କର୍ତ୍ତବ୍ୟ ପରାୟଣ ଏବଂ ସାଧୁ ମଣିଷ । କୌଣସି କାମକୁ ସିଏ ଅଧାପନ୍ତରିଆ ନିଷ୍ଠା ବା ଉତ୍ସାହ ଦେଇ କରନ୍ତି ନାହିଁ । ଯେଉଁ କାର୍ଯ୍ୟରେ ହାତ ଦିଅନ୍ତି ତାହାକୁ ସଂପୂର୍ଣ୍ଣ କରି ଛାଡ଼ନ୍ତି । ତାଙ୍କ ନିଜ ଭିତରେ ଜଣେ ପ୍ରକୃତ ନେତାର ସମ୍ଭାବନା ନିହିତ ହୋଇ ରହିଛି । ସେ ନୀରବ ଥାଆନ୍ତି, ବାହାରକୁ କିଛି ଦେଖାଇ ହୁଅନ୍ତି ନାହିଁ, ଏବଂ ଆପଣାର ସଂକଳ୍ପରେ ଦୃଢ଼ ହୋଇ ରହିଥାନ୍ତି । ତାଙ୍କ ଚରିତ୍ରର ସବୁଠାରୁ ଅଧିକ ପ୍ରଭାବଶାଳୀ ଲକ୍ଷଣ ହେଉଛି ଯେ, ସିଏ କୌଣସି ଭୁଲ୍ ପାଖରେ କଦାପି ନତମସ୍ତକ ନ ହେବାଲାଗି ସଂକଳ୍ପବଦ୍ଧ ହୋଇ ରହିଥାନ୍ତି । ସିଏ ହେଉଛନ୍ତି ମହାତ୍ମା ଗାନ୍ଧିଙ୍କର ଜଣେ ଉପଯୁକ୍ତ ଅନୁଗାମୀ । ବୟସରେ ତରୁଣ ହେଲେ ମଧ୍ଯ ଜନସମୂହର ମନୋବିଜ୍ଞାନ ଉପରେ ତାଙ୍କର ଅସାଧାରଣ ଦଖଲ ରହିଛି । ଶ୍ରୀ ସେନଗୁପ୍ତ ପୋଲିସ୍ ସୁପରିଣ୍ଟେଣ୍ଡେଣ୍ଟଙ୍କର ଆଦେଶକୁ ଯେ ଅମାନ୍ୟ କଲେ, ତାହା ତାଙ୍କର ଉଚ୍ଛୃଙ୍ଖଳତାର ଆଦୌ ଏକ ନିଦର୍ଶନ ନୁହେଁ । ମାତ୍ର ସିଏ ଯେ ଆଇନ୍ ଓ ଶୃଙ୍ଖଳାର ଯଥାର୍ଥ ମର୍ମଟିକୁ ଉପଲବ୍ଧ କରିଛନ୍ତି ଏହା ତାହାରି ସୂଚନା ହିଁ ଦେଇଥାଏ । ତାଙ୍କ ଭିତରେ ଅନ୍ତର୍ନିହିତ ହୋଇ ସମଞ୍ଜସତାର ଯେଉଁ ବୋଧ ରହିଛି, ତାହା ଯାବତୀୟ ପ୍ରକାରର ଅନଧିକାର ହସ୍ତକ୍ଷେପ-ସେହି ହସ୍ତକ୍ଷେପ ଯେଉଁଠାରୁ ଅଥବା ଯାହାଦ୍ୱାରା ହେଉଥାଉ ପଛକେ, ବିରୋଧରେ ସ୍ୱତଃ ବିଦ୍ରୋହ କରି ଉଠିଥାଏ ।

''ସାଧାରଣ ଜନସମୂହ ଏପର୍ଯ୍ୟନ୍ତ କୌଣସି ଶୃଙ୍ଖଳାରେ ଅଭ୍ୟସ୍ତ ହୋଇ ନଥିଲେ ମଧ୍ୟ, ଶ୍ରୀଯୁକ୍ତ ସେନଗୁପ୍ତଙ୍କର ସେମାନଙ୍କର ମାନସ ଉପରେ ଯେ ଏତେ ଅଧିକ ପରିମାଣରେ ଅଭିଆର ରହିଥାଏ, ତାହାର କାରଣ ହେଉଛି ଯେ, ସିଏ ସେମାନଙ୍କୁ ଅତୀବ ଭଲପାଆନ୍ତି । ସାଧାରଣ ଲୋକେ ସେମାନଙ୍କର ପ୍ରକୃତ ବନ୍ଧୁ କିଏ ସେ ବିଷୟରେ ଆଦୌ କୌଣସି ଭୁଲ୍ କରନ୍ତି ନାହିଁ । ସେହି କାରଣରୁ ହିଁ ମହାତ୍ମାଜୀଙ୍କର ନାମର ସେମାନଙ୍କ ପାଖରେ ଏତେ ଅଧିକ ଆକର୍ଷଣ

ରହିଛି, ସେମାନେ ତାଙ୍କୁ କେବେହେଲେ ଦେଖି ନଥିଲେ ଅଥବା ଘନିଷ୍ଠ ଭାବରେ ଜାଣି ନଥିଲେ ମଧ୍ୟ ସେହି ଆକର୍ଷଣ ରହିଛି । ଯେଉଁମାନଙ୍କର ଦାବି ପୂରଣ ଲାଗି ସେନଗୁପ୍ତ ସଂଗ୍ରାମ କରିଥିଲେ, ସେମାନଙ୍କ ପ୍ରତି ତାଙ୍କର ନିଶ୍ଚୟ ପ୍ରକୃତ ଶ୍ରଦ୍ଧା ରହିଥିବ । ତା' ନହେଲେ ବର୍ତ୍ତମାନ ତାଙ୍କଠାରୁ ସାମୟିକ ଭାବରେ ବିଚ୍ଛିନ୍ନ ହୋଇ ଯାଇଛନ୍ତି ବୋଲି ଲୋକେ ସେମାନଙ୍କ ତରଫରୁ ମଧ୍ୟ ଯେପରି ଭାବରେ ତାଙ୍କପ୍ରତି ଶ୍ରଦ୍ଧାଭାବ ଅନୁଭବ କରୁଛନ୍ତି, ତାହା କଦାପି ସମ୍ଭବ ହୁଅନ୍ତା ନାହିଁ । ଜନସାଧାରଣଙ୍କ ସହିତ ଏତେ କମ୍ ଦିନ ସଂପର୍କରେ ଆସି ଯେଉଁ ବ୍ୟକ୍ତି ସେମାନଙ୍କର ହୃଦୟରେ ଏପରି ଗୋଟିଏ ସାମ୍ରାଜ୍ୟର ପ୍ରତିଷ୍ଠା କରି ପାରିଛି, ସିଏ ନିଶ୍ଚୟ ସେମାନଙ୍କର ସ୍ୱାର୍ଥ ସହିତ ନିଜକୁ ସଂପୂର୍ଣ୍ଣ ଭାବରେ ଏକାତ୍ମକ କରି ରଖିଥିବ । ଯେଉଁ କିସମର ବ୍ୟକ୍ତିମାନେ ଏକ ମନ୍ଦ ମହତ୍ତ୍ୱାକାଙ୍କ୍ଷା ଦ୍ୱାରା ପ୍ରେରିତ ହୋଇ ନିଜର ସ୍ୱାର୍ଥସିଦ୍ଧି ସକାଶେ ସାଧାରଣ ଜନଆନ୍ଦୋଳନ ଗୁଡ଼ିକରୁ ଫାଇଦା ଉଠାଇବାକୁ ଯାଆନ୍ତି, ଯତୀନ୍ଦ୍ରମୋହନଙ୍କର ସେହି କିସମର ଲୋକମାନଙ୍କ ସହିତ କୌଣସି ସାମଞ୍ଜସ୍ୟ ନଥିଲା । ଜଣେ ଯଥାର୍ଥ ଜନସେବକର ଯେଉଁ ସାହସ ଏବଂ ବୀରତ୍ୱ ରହିଥିବା ଆବଶ୍ୟକ, ତାଙ୍କ ପାଖରେ ତାହା ସବୁବେଳେ ରହିଥିଲା । ଶ୍ରୀଯୁକ୍ତ ସେନଗୁପ୍ତ ତାଙ୍କ ଜାତିର ସମ୍ମାନକୁ ଆହୁରି ଉପରକୁ ଉଠାଇ ପାରିଛନ୍ତି ଓ ତାଙ୍କର ଉତ୍ତମ ଗୁଣ ଓ ମହାନତା ବିଷୟରେ କିଛିଅଦ୍ ବର୍ଣ୍ଣନା କରି କହିବାର ଏକ କ୍ଷୀଣ ପ୍ରୟାସ କରି ଆମେ ଏହିଠାରେ ହିଁ ତାଙ୍କଠାରୁ ବିଦାୟ ନେଉଛୁ ।''

ବର୍ତ୍ତମାନ ଯତୀନ୍ଦ୍ରମୋହନ ସାଧାରଣ ଜୀବନର ରାଜରାସ୍ତା ଉପରେ ଆସି ଦଣ୍ଡାୟମାନ ହେଲେ । ବିଦେଶୀ ଶାସନ ଆଗରେ ଏପରି ଏକ ଅଭୂତପୂର୍ବ ସାହସ ସହିତ ଆହ୍ୱାନ ଦେଇ ସେ ତାଙ୍କ ଜୀବନରେ ଲାଭ କରିଥିବା ଏହି ପ୍ରଥମ ସଫଳତାରେ ପ୍ରକୃତରେ ଉଜ୍ଜ୍ୱଳ ହୋଇ ଉଠିଥିଲେ ।

## ଧର୍ମଘଟର ପ୍ଲାବନ

ଏହାର ପରେ ଆହୁରି ଏକାଧିକ ଧର୍ମଘଟର ଏକୁ ପ୍ଲାବନ ଆସିଲା ଏବଂ ସେଥିରେ ଯତୀନ୍ଦ୍ର ମୋହନଙ୍କର ବିକାଶମାନ ବ୍ୟକ୍ତିତ୍ୱ ତଥା ପ୍ରବୀଣ ନେତୃତ୍ୱ ଆହୁରି ଅଧିକ କଠୋର ପରୀକ୍ଷାର ସମ୍ମୁଖୀନ ହୋଇଥିଲା । ବିଶେଷ କରି ଉପରେ ଯେଉଁ ତିନିଗୋଟି ଘଟଣାର ଉଲ୍ଲେଖ କରାଯାଇଛି, ତାହା ଚିଟାଗଙ୍ଗକୁ ନିଜର ସ୍ନାୟୁକେନ୍ଦ୍ର ରୂପେ ବ୍ୟବହାର କରି ପ୍ରାୟ ଯୁଗପଦ୍ ଭାବରେ ପୂର୍ବବଙ୍ଗ ଏବଂ ଆସାମକୁ ଯୁକ୍ତ କରୁଥିବା ଏକ ବିସ୍ତୃତ ଅଞ୍ଚଳକୁ ପ୍ରକମ୍ପିତ କରି ଦେଇଥିଲା ।

ଆସାମର ପ୍ରାୟ ସବୁ ଚାହାବଗିଚା ଇଉରୋପୀୟ ବାଗାନ - ମାଲିକମାନଙ୍କର ନ୍ୟସ୍ତସ୍ୱାର୍ଥର ପେଣ୍ଠ ହୋଇ ରହିଥିଲା ଏବଂ ସେମାନଙ୍କର ପରିଚାଳନାଧୀନରେ ବିଭିନ୍ନ ପ୍ରଦେଶର ଦରିଦ୍ର କିମ୍ବା ବେକାର ଜନସାଧାରଣଙ୍କ ମଧ୍ୟରୁ ଶ୍ରମିକମାନଙ୍କୁ ସଂଗ୍ରହ କରି ଅଣା ଯାଉଥିଲା । ସେଥିଲାଗି ସେମାନଙ୍କୁ ଉତ୍ତମ ବେତନ ଏବଂ ବିଭିନ୍ନ ସୁବିଧା ଦେବାର ଲୋଭ ଦେଖା ଯାଉଥିଲା; ମାତ୍ର ଯେଉଁ ଅସମ୍ମାନକର ଚୁକ୍ତି ଦ୍ୱାରା ସେମାନଙ୍କୁ କର୍ମରେ ଆବଦ୍ଧ କରି ରଖୁଥିଲା, ତାହା ସେହି ସବୁକିଛିକୁ ନିଷ୍ଫଳ କରି ଦେଉଥିଲା । ତଦ୍ଦ୍ୱାରା ସେମାନେ ଗୁଡ଼ିଏ 'ଗୋଡି ଶ୍ରମିକ'ଙ୍କ ପରି ବାସ କରିବାକୁ ଓ କାର୍ଯ୍ୟ କରିବାକୁ ବାଧ୍ୟ ହେଉଥିଲେ, ଅତ୍ୟନ୍ତ ଅମାନୁଷିକ ବ୍ୟବହାର ସହ୍ୟ କରୁଥିଲେ, ଶାରୀରିକ ନିର୍ମମ ଦଣ୍ଡ ଭୋଗ କରୁଥିଲେ ଏବଂ ଆର୍ଥିକ କ୍ଷେତ୍ରରେ ଶୋଷିତ ହେଉଥିଲେ । ମନଇଚ୍ଛା କେଉଁଆଡ଼େ

ଯିବାଲାଗି ଓ ଏପରିକି ନିଜ ଘରକୁ ଯିବାଲାଗି ମଧ୍ୟ ସେମାନଙ୍କର କୌଣସି ସ୍ୱାଧୀନତା ନଥିଲା । ଉତ୍ତରୋତ୍ତର ବୃଦ୍ଧି ପାଉଥିବା ସେମାନଙ୍କର ଦୁଃଖ ଓ କଷ୍ଟର କାହାଣୀକୁ ଶୁଣିବାଲାଗି କେହି ନଥିଲେ, ସେଗୁଡ଼ିକ ଲାଗି କୌଣସି ପ୍ରତିକାର କିମ୍ବା ପ୍ରତିବିଧାନ ଖୋଜି ବାହାର କରିବା ତ ଆହୁରି ଦୂରର କଥା ।

ସୁବିଦିତ ଜନହିତୈଷୀ ଏବଂ ଭାରତବର୍ଷ ଲାଗି ଅଗାଧ ଶ୍ରଦ୍ଧା ଥିବା ଦୀନବନ୍ଧୁ ସି. ଏଫ୍. ଆଣ୍ଡ୍ରୁଜ୍ (ଭାରତର ମୁକ୍ତିସଂଗ୍ରାମ ଲାଗି ଯିଏ ନିଜ ଜୀବନକୁ ଉତ୍ସର୍ଗ କରି ରଖିଥିଲେ) ଆସାମର ଚାହାବଗିଚାରେ କାର୍ଯ୍ୟ କରୁଥିବା ଶ୍ରମିକମାନଙ୍କ ବିଷୟରେ ବ୍ୟକ୍ତିଗତ ଭାବରେ ଯେଉଁ ଅଧ୍ୟୟନ କରିଥିଲେ ଏବଂ ଅନୁଭୂତି ଲାଭ କରିଥିଲେ, ତାହାକୁ ଭିତ୍ତିକରି ସେ କହିଥିଲେ ଯେ, ବିଶ୍ୱ - ମହାଯୁଦ୍ଧ ପରେ (1918 ଠାରୁ ଆରମ୍ଭକରି) ଏହି ବାଗାନସବୁର ଚାହା-ଶିଳ୍ପ ସହସା ବୃଦ୍ଧିଲାଭ କରିଥିଲା । ମାତ୍ର ଏକଥା ମଧ୍ୟ ଅଚିରେ ଜାଣିବାକୁ ମିଳିଥିଲା ଯେ, ଚାରଗୋଲା ଉପତ୍ୟକା (ନିମ୍ନ ଆସାମ)ରେ ଅବସ୍ଥିତ ଚାହାବଗିଚା ମାନଙ୍କରେ ଆବଶ୍ୟକ ଠାରୁ ଅନେକ ଅଧିକ ସଂଖ୍ୟାରେ ଶ୍ରମିକମାନେ କାର୍ଯ୍ୟ କରୁଛନ୍ତି । ସେତେବେଳେ 1920 ମସିହା ସରି 1921 ମସିହା ଆରମ୍ଭ ହେଉଥାଏ । ପ୍ରଥମେ ଇଉରୋପୀୟ ଅଫିସରମାନଙ୍କର ସଂଖ୍ୟା ହ୍ରାସ କରାଗଲା ଏବଂ ତା'ପରେ ଭାରତୀୟ ଶ୍ରମିକମାନଙ୍କର ଛଟେଇ ହେଲା । ବାଗାନଗୁଡ଼ିକର ଅବସ୍ଥା ଅଧିକ ଖରାପ ହୋଇ ଆସିବାପରେ, କାର୍ଯ୍ୟରେ ନିଯୁକ୍ତ ହୋଇ ରହିଥିବା ଅବଶିଷ୍ଟ କୁଲିମାନଙ୍କର ବେତନ ଏକ ପୂରାଦିନର କାର୍ଯ୍ୟଲାଗି ମାତ୍ର ଚାରିଅଣାକୁ ଖସି ଆସିଥିଲା । ଅବଶ୍ୟ ଏକଥା ମଧ୍ୟ ସତ ଯେ ସେମାନେ "ଖୁବ୍ କ୍ୱଚିତ୍ କ୍ଷେତ୍ରରେ ପ୍ରକୃତରେ ତା'ର ଅଧେ ପରିମାଣ ପଇସା ମଧ ପାରିଶ୍ରମିକ ରୂପେ ପାଇଥିଲେ ।" ଏହା ଫଳରେ ଅସନ୍ତୋଷ ସର୍ବବ୍ୟାପୀ ହୋଇ ରହିଥିଲା ।

ଅସହଯୋଗ ଆନ୍ଦୋଳନ ଆରମ୍ଭ ହେବା ପରେ ସ୍ୱେଚ୍ଛାସେବୀ କେତେଜଣ କର୍ମୀ, ଅଧିକାଂଶତଃ ଧର୍ମଘଟକାରୀ ଛାତ୍ରମାନେ, ଶ୍ରମିକମାନଙ୍କର ଅବସ୍ଥା ବିଷୟରେ ସେମାନେ କରୁଥିବା ଏକ ସର୍ବେକ୍ଷଣରେ ହୃଦୟହୀନ ଏବଂ ଉଦ୍ଧତ ବିଦେଶୀ ମାଲିକମାନଙ୍କ ଦ୍ୱାରା ନିର୍ଯାତନା ଭୋଗ କରୁଥିବା ଚାହାବାଗାନର ଶ୍ରମିକମାନଙ୍କ ସମ୍ପର୍କରେ ମଧ ଆସିଥିଲେ । ଏଥିରେ ମାଲିକମାନେ ପ୍ରମାଦ ଗଣିଲେ ଓ ଚାହାବାଗାନ ମାନଙ୍କରେ କଂଗ୍ରେସ କର୍ମୀମାନଙ୍କର ପ୍ରବେଶକୁ ଅବୈଧ ବୋଲି ଘୋଷଣା କଲେ ଏବଂ ଶ୍ରମିକମାନଙ୍କୁ ଦଣ୍ଡ ଦିଆଯିବ ଓ କାମରୁ ବାହାର କରି ଦିଆଯିବ ବୋଲି ନାନା ଭୟ ମଧ ଦେଖାଇଲେ । ଏଥିରେ ଶ୍ରମିକମାନେ ଭାରି ଉତ୍ତେଜିତ ହୋଇ ଉଠିଲେ ଏବଂ ବର୍ଷ ବର୍ଷ ଧରି ସେମାନଙ୍କ ଉପରେ ହୋଇ ଆସୁଥିବା ଅମାନୁଷିକ ବ୍ୟବହାରକୁ ଏଣିକି ଆଉ ସହ୍ୟ କରିବେ ନାହିଁ ବୋଲି ଏକ ନିଷ୍ପତ୍ତି ଗ୍ରହଣ କଲେ । ସେମାନେ ଚିରଦିନ ସକାଶେ ଚାହାବାଗାନ ଛାଡ଼ି ନିଜ ନିଜ ଘରକୁ ଚାଲିଯିବା ସକାଶେ ଠିକ୍ କଲେ । ଶ୍ରମିକମାନେ ଯେଉଁସବୁ ଋଣ କରିଛନ୍ତି ଓ ଯେଉଁସବୁ ଚୁକ୍ତିରେ ଆବଦ୍ଧ ହୋଇଛନ୍ତି, ବାଗାନ ଛାଡ଼ି ଘରକୁ ଚାଲିଗଲେ ତାହାର ପରିଣାମ ଯେ କ'ଣ ହେବ, ମାଲିକମାନେ ସେମାନଙ୍କୁ ସେହି ବିଷୟରେ ସତର୍କ କରିଦେଇଥିଲେ । ମାତ୍ର ତାହାର କୌଣସି ଫଳ ହେଲାନାହିଁ । ଶହ ଶହ ହଜାର ହଜାର ଶ୍ରମିକ ବାଗାନ ଛାଡ଼ି କରିମଗଞ୍ଜ ରେଳଷ୍ଟେସନକୁ ପଳାଇ ଆସିଲେ, ମାତ୍ର ରେଳଗାଡ଼ିରେ ଯିବାଲାଗି ସେମାନଙ୍କୁ ଟିକେଟ ଦିଆଗଲା ନାହିଁ । ଏହିସବୁ ଚୁକ୍ତିବଦ୍ଧ 'କୁଲିମାନେ' ଯେପରି ବାଗାନକୁ ଫେରି ଆସିବାଲାଗି ବାଧ ହେବେ, ସେଥିଲାଗି ସେମାନଙ୍କୁ ଟିକେଟ ନ ଦେବା ସକାଶେ ବାଗାନର ମାଲିକମାନେ ପୂର୍ବରୁ ରେଳବାଇ କର୍ତ୍ତୃପକ୍ଷକୁ ଅନୁରୂପ ଭାବରେ ପ୍ରବର୍ତ୍ତାଇ ରଖିଥିଲେ ।

## ଚାନ୍ଦପୁରର ଅଗ୍ନିପରୀକ୍ଷା

କରିମଗଞ୍ଜ କଂଗ୍ରେସ କର୍ମୀମାନେ କାଳବିଳମ୍ବ ନ କରି ଚିଟାଗଙ୍ଗରେ ଥିବା ଯତୀନ୍ଦ୍ରମୋହନ ସେନଗୁପ୍ତ ଏବଂ କୁମିଲ୍ଲାର ଅଖିଳ ଚନ୍ଦ୍ର ଦତ୍ତଙ୍କ ପାଖକୁ ଜରୁରୀ ତାରବାର୍ତ୍ତାମାନ ପଠାଇଲେ ଏବଂ ସେମାନଙ୍କୁ କରିମଗଞ୍ଜ ଆସିବାଲାଗି ନିବେଦନ କରିଥିଲେ । ଯତୀନ୍ଦ୍ରମୋହନ ସେଠାରେ ଯଥାଶୀଘ୍ର ଆସି ପହଞ୍ଚିଲେ ଏବଂ ସେହି ସ୍ଥାନର ଦୁଃଖଦ ପରିସ୍ଥିତି ବିଷୟରେ ତାଙ୍କୁ ଅବଗତ କରାଯାଇଥିଲା । ସେ ସଙ୍ଗେ ସଙ୍ଗେ ଆସାମ ବଙ୍ଗଳା ରେଳବାଇ କର୍ତ୍ତୃପକ୍ଷଙ୍କ ସହିତ ତାରଦ୍ୱାରା କଥାବାର୍ତ୍ତା କଲେ । ଅବଶ୍ୟ ରେଳବାଇ କର୍ତ୍ତୃପକ୍ଷ ତତ୍‌କ୍ଷଣାତ୍ ତାହାର ଉତ୍ତର ଦେଲେ ଏବଂ ଅଟକି ରହିଥିବା ଶ୍ରମିକମାନଙ୍କୁ ଟିକେଟ ଦିଆଯିବାକୁ ଆଦେଶ ଦେଇଥିଲେ । ଅନେକ ଶ୍ରମିକ ସେତେବେଳକୁ ବହୁ ଦୂର ପାଦରେ ଚାଲି ଚାଲି ଚାନ୍ଦପୁର ପର୍ଯ୍ୟନ୍ତ ଚାଲି ଆସିଥିଲେ । ଚାନ୍ଦପୁର ରେଲ୍‌ଷ୍ଟେସନର ଗୋଦାମ ଏବଂ ୟାର୍ଡ଼ମାନ ଏହି ଅସହାୟ ଓ ନିରାଶ୍ରୟ ଲୋକମାନଙ୍କ ଦ୍ୱାରା ପୂର୍ଣ୍ଣ ହୋଇ ରହିଥିଲା । ଏହିପରି ଭାବରେ ମାତ୍ର ଅଳ୍ପ କେତେଦିନ ମଧ୍ୟରେ କେତେ ହଜାର ଶ୍ରମିକ ଚାନ୍ଦପୁରଠାରେ ଆସି ଜମା ହୋଇଥିଲେ । ନିମ୍ନ ଆସାମରୁ ଶ୍ରମିକମାନଙ୍କର ଏହି ପଳାଇ ଆସିବାର ପରିପ୍ରେକ୍ଷୀରେ ଦୀନବନ୍ଧୁ ଆଣ୍ଡ୍ରୁଜ ଚାନ୍ଦପୁରକୁ 'ବୋତଲର ମୁହଁ' ବୋଲି ବର୍ଣ୍ଣନା କରିଥିଲେ । ଆସାମ ବଙ୍ଗଳା ରେଲବାଇର ଏକ ମହତ୍ତ୍ୱପୂର୍ଣ୍ଣ ଷ୍ଟେସନ ହେବା ସଙ୍ଗେ ସଙ୍ଗେ ଏଣେ ପଳାଇ ଆସି ଏହାପରେ ଗୋଆଲନ୍ଦ ଠାରେ ନଦୀ ପାରହେବା ସକାଶେ ଚାନ୍ଦପୁର ହିଁ ଶ୍ରମିକମାନଙ୍କର ଏକମାତ୍ର ରାସ୍ତା ହୋଇ ରହିଥିଲା । କଲିକତା ଓ ପଶ୍ଚିମ ଭାରତକୁ ଯିବାକୁ ହେଲେ ଏହି ଜଙ୍କସନ୍ ଠାରୁ ରେଳ ଓ ଷ୍ଟିମର ଯୋଗେ ଯାତ୍ରା କରିବାକୁ ପଡୁଥିଲା ।

ପ୍ରଥମ ପର୍ଯ୍ୟାୟରେ ଅଳ୍ପ କେତେ ଶହ ଶ୍ରମିକ କଲିକତା ଯିବା ଉଦ୍ଦେଶ୍ୟରେ ଯେକୌଣସି ପ୍ରକାରେ ଆସି ଗୋଆଲନ୍ଦଠାରେ ପହଞ୍ଚି ସାରିଥିଲେ । ଏଠାରେ ମଧ ସ୍ଥାନୀୟ ପୋଲିସ୍ କର୍ତ୍ତୃପକ୍ଷ ଚାହାବାଗାନର ଏଜେଣ୍ଟମାନଙ୍କ ସହିତ ଏକାଠି ହୋଇ ବାଗାନରୁ ପଳାଇ ଆସିଥିବା ଓ ଘରକୁ ଫେରିଯିବାକୁ ଚାହୁଁଥିବା ଶ୍ରମିକମାନଙ୍କୁ ଅଟକାଇ ରଖିବାଲାଗି ସ୍ରୋତର ମୁହଁକୁ ଓଗାଳିବାକୁ ଚେଷ୍ଟା କରିଥିଲେ, ମାତ୍ର ପାରିଲେ ନାହିଁ । ତା'ପରେ କର୍ତ୍ତାମାନେ ପୂର୍ବବଙ୍ଗର ଷ୍ଟିମର୍ କମ୍ପାନୀମାନଙ୍କ ସହିତ ସଲାସୁତୁରାକରି ଶ୍ରମିକମାନଙ୍କର ଗତିରୋଧ ନିମନ୍ତେ ନଦୀରାସ୍ତାଗୁଡ଼ିକୁ ବନ୍ଦ କରିଦେଲେ । ଆସାମର ଉଭୟ ଉପତ୍ୟକାରେ ଥିବା ଚାହାବଗିଚା ଗୁଡ଼ିକରୁ ଘରକୁ ପଳାଇ ଯିବାର ଏହି ଆନ୍ଦୋଳନ ବ୍ୟାପିଯିବାକୁ ବସିବାରୁ ଅବସ୍ଥା ଆହୁରି ଜଟିଳ ହୋଇ ପଡ଼ିଥିଲା । ଚାହାବାଗାନର ମାଲିକମାନେ ଏଥିରେ ହତାଶ ଓ ଆତଙ୍କିତ ହୋଇ ପଡ଼ିଲେ ଏବଂ ବଙ୍ଗଳା ସରକାର ଏଥିରେ ହସ୍ତକ୍ଷେପ କରନ୍ତୁ ବୋଲି ନିବେଦନ କଲେ । ସେତେବେଳେ ଗ୍ରୀଷ୍ମନିବାସ ଦାର୍ଜିଲିଂ ଠାରେ ସରକାରଙ୍କର ମହକୁମା ଥିଲା । ଗଭର୍ଣ୍ଣର ଓ ତାଙ୍କର ପରାମର୍ଶମଣ୍ଡଳୀଙ୍କୁ ଶ୍ରମିକମାନେ ଯେପରି ସେମାନଙ୍କର ଯାତ୍ରାରେ ଅଧିକ ଅଗ୍ରସର ହୋଇ ନ ପାରିବେ, ସେଥିଲାଗି ସେମାନଙ୍କୁ ଅଟକାଇବା ଲାଗି ପ୍ରବର୍ତ୍ତା ଯାଇଥିଲା । ସ୍ଥାନୀୟ କର୍ମଚାରୀମାନେ ଅତ୍ୟନ୍ତ ଅସହିଷ୍ଣୁ ଭାବରେ ଆସାମରୁ ବାହାରକୁ ଯାଉଥିବା ଶ୍ରମିକମାନଙ୍କୁ ଆହୁରି ଆଗକୁ ବାହାରି ଚାଲିଯିବା ଲାଗି କୌଣସି ପ୍ରକାର ସୁବିଧା ନ ଦେବା ସକାଶେ ଷ୍ଟିମର୍ ଓ ରେଲ୍‌ବାଇ କମ୍ପାନୀମାନଙ୍କଠାରୁ ପ୍ରତିଶ୍ରୁତି ମାଗି ଆଣିଥିଲେ । ରେଭରେଣ୍ଡ ସି. ଏଫ୍. ଆଣ୍ଡ୍ରୁଜ୍‌ଙ୍କ ଭାଷାରେ, ''ଏସବୁ ଦେଖି ମୋତେ ବୋଧ ହେଲା ଯେ, ବଙ୍ଗ ସରକାର ଶ୍ରମିକମାନଙ୍କର ଏହି ଚାଲିଯିବାକୁ ସମ୍ପୂର୍ଣ୍ଣ ଭାବରେ ବନ୍ଦ କରିଦେବା ଲାଗି ବଦ୍ଧପରିକର ହୋଇ ରହିଥିଲେ...... ଏହା ହିଁ ଚାନ୍ଦପୁରରେ ସୃଷ୍ଟି ହୋଇଥିବା ଅଚଳ ଅବସ୍ଥାର ପ୍ରଥମ ପର୍ଯ୍ୟାୟ ଥିଲା ।''★

★ Oppression of the Poor, ଲେଖକ - ସି.ଏଫ୍.ଆଣ୍ଡ୍ରୁଜ, (ଗଣେଶ ଆଣ୍ଡ୍ କମ୍ପାନୀ, ମାନ୍ଦ୍ରାଜ)

ଚାହାବଗିଚା ଗୁଡ଼ିକୁ ଫେରିଯାଇ କଦାପି ମୃତ୍ୟୁର ସମ୍ମୁଖୀନ ନ ହେବାକୁ କୁଲି ଶରଣାର୍ଥୀମାନଙ୍କର ଦୃଢ଼ ସଂକଳ୍ପ ଏବଂ ସେମାନଙ୍କର ଗତିପଥକୁ ରୋକିବା ନିମନ୍ତେ ସରକାରୀ କର୍ତ୍ତୃପକ୍ଷଙ୍କର ଆପ୍ରାଣ ଚେଷ୍ଟା- ଏହି ଦୁଇ ଶକ୍ତି ମଧ୍ୟରେ ଲାଗିଥିବା ଟଣା କଷାକଷି ଦିନକୁ ଦିନ ଅଧିକ ଖରାପ ଆକାର ଧାରଣ କରୁଥିଲା । ଚାରି ହଜାରରୁ ଅଧିକ ଶ୍ରମିକଙ୍କୁ ଏହିପରି ଭାବରେ ସେମାନଙ୍କର ଭାଗ୍ୟ ହାତରେ ଛାଡ଼ିଦିଆ ଯାଇଥିଲା ଏବଂ ନିରାଶ୍ରୟ ଭାବରେ ସେମାନେ ଅଭାବ ଏବଂ କ୍ଷୁଧା ମଧ୍ୟରେ ଏପାଖ ସେପାଖ ହେବାରେ ଲାଗିଥିଲେ । ଚାନ୍ଦପୁର ଷ୍ଟେସନ ହତା ଭିତରେ ସେମାନେ ରେଳବାଇ ଗୋଦାମଶାଳା ଗୁଡ଼ିକରେ ଆଶ୍ରୟ ନେଇ ରହିଥିଲେ । ବର୍ଷାଦିନ ଆରମ୍ଭ ହେବାକୁ ଯାଉଥାଏ । ପୋଲିସ୍ ଏବଂ ସାମରିକ ବାହିନୀର ନିର୍ମମତାର ନିତି ସାମନା କରିବାକୁ ପଡୁଥାଏ । ସାନ ଚାନ୍ଦପୁର ସହରଟି ସତେଅବା ଗୋଟିଏ ସାମରିକ ଛାଉଣିର ଆକାର ଧାରଣ କରିଥାଏ; ଏହି ଦରିଦ୍ର, ନିରୀହ, ଅସହାୟ ଓ ଆଶ୍ରୟହୀନ ଚାହାବାଗାନ ଶ୍ରମିକମାନଙ୍କ ବିରୋଧରେ ସତେଯେପରି ଅଚିରେ ଏକ କ୍ଷୁଦ୍ର ଯୁଦ୍ଧ ହେବାକୁ ସଜବାଜ ହେଉଛି, ସେଥିଲାଗି ସୈନ୍ୟମାନେ ଚାରିଆଡ଼େ ବିଛାଇ ହୋଇ ରହିଥିଲେ । ଚାନ୍ଦପୁରର ଲୋକ ସାଧାରଣ ଓ କଂଗ୍ରେସକର୍ମୀ ମାନଙ୍କର ସେବା ଓ ତ୍ରାଣର କାର୍ଯ୍ୟ, କେବଳ ତାହାହିଁ ଏକମାତ୍ର ଆଶାର ଲକ୍ଷଣ ହୋଇ ରହିଥାଏ । ସେମାନେ ଖାଦ୍ୟ ଦେଉଥାନ୍ତି, ପାନୀୟଜଳ ଦେଉଥାନ୍ତି, ଯଥାସାଧ୍ୟ ସାହାଯ୍ୟ କରିବାକୁ ଇଚ୍ଛା କରୁଥାନ୍ତି, ମାତ୍ର ଏପରି ଭାବରେ ଆଉ କେତେଦିନ ଚାଲିଥାନ୍ତା ? ଜଟିଳତା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଅରାଜକତା ମଧ୍ୟ ବୃଦ୍ଧି ପାଇବାରେ ଲାଗିଥାଏ ।

**ଅଚଳ ଅବସ୍ଥା**

ଏହିପରି ଏକ ସଂକଟମୟ ସ୍ଥିତିରେ, ସତେଅବା ଦୁର୍ଗତିକୁ ଆହୁରି ଦୁର୍ଗତିପୂର୍ଣ୍ଣ କରିବାର ଅଭିପ୍ରାୟ ନେଇ, ଡିଭିଜନାଲ୍ କମିଶନର୍ ଆସି ସେଠାରେ ପହଞ୍ଚି ଯାଇଥିଲେ । ସି. ଏଫ୍. ଆଣ୍ଡ୍ରୁଜ୍‌ଙ୍କ ଭାଷାରେ; "...ଦାର୍ଜିଲିଂରୁ ଆସିଥିବା ନିର୍ଦ୍ଦେଶ ଅନୁସାରେ କାର୍ଯ୍ୟାନୁଷ୍ଠାନ କରି ସେ ଯେପରି ଚାନ୍ଦପୁରରୁ ନଦୀ-ଷ୍ଟିମର ଯୋଗେ ଆଉ ଶରଣାର୍ଥୀମାନେ ବାହାରି ଯାଇ ନ ପାରିବେ, ତାହାକୁ ତତ୍‌କ୍ଷଣାତ୍ କାର୍ଯ୍ୟକାରୀ କରିବାକୁ ଆରମ୍ଭ କରିଦେଲେ । ଷ୍ଟିମର ଧରିବାକୁ ଯେପରି ଆଉ ତ କେହିହେଲେ ଧାଇଁ ନ ପାରିବେ, ସେଥିଲାଗି ସେ ଶରଣାର୍ଥୀମାନଙ୍କୁ ରେଳବାଇ ହତାରୁ ସଂପୂର୍ଣ୍ଣ ଭାବରେ ବାହାରକୁ ବାହାର କରିଦେଲେ ଏବଂ ସେମାନଙ୍କୁ ଷ୍ଟିମରର ନଦୀଘାଟଠାରୁ ବେଶ୍ କିଛି ଦୂରରେ ଅବସ୍ଥାପିତ କରି ରଖିଲେ । ମାତ୍ର, ଏସବୁର ପରିଣାମ ଯେ କ'ଣ ହେବ, ଅକ୍ଷମଣୀୟ ଭାବରେ ସେଥିପ୍ରତି କୌଣସି ଦୃଷ୍ଟି ନଦେଇ କମିଶନର୍ ଏପରି ଭାବରେ ଉକ୍ତ କାର୍ଯ୍ୟଟିକୁ ସମ୍ପନ୍ନ କଲେ, ଯାହା ପ୍ରତ୍ୟକ୍ଷ ଭାବରେ ନାନା ନୃଶଂସ ଏବଂ ଅମାନୁଷିକ କାର୍ଯ୍ୟକୁ ସଂଘଟିତ କରାଇଥିଲା ।"★

ଶରଣାର୍ଥୀମାନଙ୍କ ଲାଗି ଏକ ବିକଳ୍ପ ଆଶ୍ରୟର ବ୍ୟବସ୍ଥା ନ କରି କର୍ତ୍ତୃପକ୍ଷ ଚରମ ଉଦାସୀନତା ସହିତ ସେମାନଙ୍କୁ ବାହାର କରିଦେବା ଲାଗି କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲେ । ସେମାନଙ୍କୁ "ଜବରଦସ୍ତି କରି" ଯେଉଁ ଫୁଟବଲ ପଡ଼ିଆକୁ ନିକାଲି ଦିଆଗଲା, ସେଠାରେ ମୁଣ୍ଡ ଉପରେ ମୁକ୍ତ ଆକାଶ ଛଡ଼ା ଆଉ କିଛି ନ ଥିଲା । ବର୍ଷାଦିନ ଆରମ୍ଭ ହେବାରୁ ସେଠାରେ ପାଣି ଭର୍ତ୍ତି ହୋଇଗଲା । ମାତ୍ର, ତାହାଠାରୁ ଆହୁରି ଅଧିକ ଦୁର୍ଭାଗ୍ୟପୂର୍ଣ୍ଣ ଯାହା ହେଲା, ଜାଣିଶୁଣି ସେଠାରେ ଜଳୁଥିବା ଆଲୁଅଗୁଡ଼ିକୁ

---

★ ତତ୍ରୈବ

ଲିଭାଇ ଦିଆଯାଇ ଦିନେ ଅଧରାତିରେ ଗୋଟାସୁଦ୍ଧା ଅନ୍ଧାର ଭିତରେ, ଶାନ୍ତିରେ ନିଦ୍ରା ଯାଇଥିବା ଅନାହାର ଓ ଅବହେଳାକ୍ଲିଷ୍ଟ ନିର୍ଦ୍ଦୋଷ କୁଲିମାନଙ୍କ ଉପରେ ଗୁର୍ଖା ସୈନ୍ୟମାନଙ୍କୁ ଆଣି ଚଢ଼ାଉ କରି ଦିଆଗଲା । ସେମାନଙ୍କ ଉପରେ ଯେ କେବଳ ଆଖିବୁଜା ଲାଠି ଚାଲିଲା ତା' ନୁହେଁ, ମାତ୍ର ରାଇଫଲ୍ ଅଗରେ ସେମାନଙ୍କୁ ଭୁଷି ଦିଆଗଲା ଓ ରୀତିମତ ଆକ୍ରମଣ କରାଗଲା । ଏପରିକି ରୁଗ୍ଣ ନାରୀ ଓ ଶିଶୁମାନଙ୍କୁ ମଧ୍ୟ ବାଦ୍ ଦିଆ ଗଲାନାହିଁ । ଦୀନବନ୍ଧୁ ଆଣ୍ଡ୍ରୁଜ୍ ଏହାକୁ ଏକ ନୃଶଂସ ଆକ୍ରମଣ ବୋଲି ବର୍ଣ୍ଣନା କରିଛନ୍ତି । ଏହି ଆକ୍ରମଣ ଲାଗି ଅପର ପକ୍ଷରୁ ଆଦୌ କୌଣସି କାରଣ ସୃଷ୍ଟି କରାଯାଇ ନ ଥିଲା । ରେଳବାଇ ହତା ଭିତରୁ କୁଲିମାନଙ୍କୁ ଜବରଦସ୍ତି ବାହାର କରିଦେବା ଉଦ୍ଦେଶ୍ୟରେ ହିଁ ଏହା ଆଚରିତ ହୋଇଥିଲା ।

ଚାନ୍ଦପୁରର ଏହି ଅତ୍ୟାଚାର (ମଇ 20, 1921)ର ସମ୍ବାଦ ଦାବାନଳ ପରି ଚାରିଆଡ଼େ ବ୍ୟାପି ଯାଇଥିଲା । ରୁଗ୍ଣ, ଅସମର୍ଥ ଏବଂ ଅସହାୟ ନରନାରୀଙ୍କ ଉପରେ ହୋଇଥିବା ଏହି ବର୍ବର ଆକ୍ରମଣରେ କ୍ରୋଧ ପ୍ରକାଶ କରି ସ୍ୱତଃସ୍ଫୂର୍ତ୍ତ ଭାବରେ ଏକ ହରତାଳ ପାଳନ କରାଯାଇଥିଲା । ଚାନ୍ଦପୁର, କୁମିଲ୍ଲା ଏବଂ ଚିଟାଗଙ୍ଗ ଚାରିଆଡ଼େ ଏହାର ଘୋର ନିନ୍ଦା କରାଗଲା । ସେହି ଦାରୁଣ ରାତ୍ରିର ଅବଶିଷ୍ଟ ଘଟିକାଗୁଡ଼ିକ ପାଇଁ ସ୍ଥାନୀୟ କଂଗ୍ରେସ କର୍ମୀମାନେ ଦୁର୍ଗତମାନଙ୍କୁ ଯଥାସାଧ୍ୟ ସହାୟତା ଆଣି ଦେଇଥିଲେ ଏବଂ ସ୍ଥାନୀୟ ଗୃହମାନଙ୍କରେ ସେମାନଙ୍କ ଲାଗି ଅସ୍ଥାୟୀ ଆଶ୍ରୟସ୍ଥଳ ତିଆରି କରି ଦେଇଥିଲେ । କଂଗ୍ରେସର ମୁଖ୍ୟ ହରୟାଲ ନାଗ ଯତୀନ୍ଦ୍ରମୋହନଙ୍କ ପାଖକୁ ଏକ ଜରୁରୀ ତାରବାର୍ତ୍ତା ପଠାଇଲେ । ଯତୀନ୍ଦ୍ରମୋହନ ସଙ୍ଗେ ସଙ୍ଗେ ଚିଟାଗଙ୍ଗରୁ ଧାଇଁ ଆସିଥିଲେ ଏବଂ ଚାନ୍ଦପୁରର ସେହି 'ପ୍ରବୀଣ ବୃଦ୍ଧବ୍ୟକ୍ତି'ଙ୍କର ସହାୟତା କଲେ । ସ୍ଥାନୀୟ କଂଗ୍ରେସଲୋକଙ୍କ ସହିତ ମିଶି ଚିଟାଗଙ୍ଗରୁ ତରତର ଭାବରେ ଆସି ପହଞ୍ଚିଥିବା ସାହାଯ୍ୟ ସାମଗ୍ରୀ ବ୍ୟତୀତ ଅଧିକ ଅର୍ଥ ଓ ତ୍ରାଣପଦାର୍ଥ ଆଣିବାର ବ୍ୟବସ୍ଥା କଲେ । ଜାଲିଆନ୍‌ୱାଲା ହତ୍ୟାକାଣ୍ଡ ସହିତ ଅତୀବ ସାଦୃଶ୍ୟ ରଖିଥିବା ଏହିସବୁ ଅତ୍ୟାଚାରକୁ ଆହୁରି ଅଧିକ ପରିମାଣରେ ନିନ୍ଦା କରା ଯାଇଥିଲା, କାରଣ, ଚାନ୍ଦପୁରର ସବ୍‌ଡିଭିଜନାଲ୍ ମାଜିଷ୍ଟ୍ରେଟ୍ ଏବଂ ଚିଟାଗଙ୍ଗ ଡିଭିଜନ୍‌ର କମିଶନରଙ୍କର ଆଖି ଆଗରେ ହିଁ ସେହି ଅତ୍ୟାଚାରକୁ ଘଟା ଯାଇଥିଲା । ଏହି ଦୁଇଜଣଯାକ ଆଇ.ସି.ଏସ୍. ଅଫିସର୍★ ଭାରତୀୟ ଥିଲେ । ସେମାନଙ୍କର ଚାକିରି ସହିତ ଯେଉଁ କଳଙ୍କ ଲାଗି ରହିଥିଲା, ସେମାନେ ତାହାକୁ ସତ୍ୟ ବୋଲି ପ୍ରମାଣିତ କରି ଦେଇଥିଲେ । ବ୍ରିଟିଶ୍ ଅମଲାତନ୍ତ୍ରର ଏହି ଅଭାରତୀୟ ଏବଂ ଜାତୀୟତା-ବିରୋଧୀ 'ଲୌହବାଡ଼'କୁ ସମସ୍ତେ ଘୃଣାଚକ୍ଷୁରେ ଦେଖୁଥିଲେ । ଜଣେ ପ୍ରବୀଣ ଦେଶଭକ୍ତ ଏବଂ କୁଶଳୀ ଆଇନଜୀବୀ କୁମିଲ୍ଲାର କଂଗ୍ରେସନେତା ଅଖିଳଚନ୍ଦ୍ର ଦତ୍ତଙ୍କର କମିଶନର୍‌ଙ୍କ ସହିତ ଏହି ବିଷୟରେ ଗରମ ବାକ୍ୟବିନିମୟ ମଧ୍ୟ ହୋଇଥିଲା । ଚାନ୍ଦପୁର ଘଟଣାଗୁଡ଼ିକ ଲାଗି ତାଙ୍କୁ ଦାୟୀ କରି, କରାଯାଇଥିବା ଅଭିଯୋଗଗୁଡ଼ିକର କମିଶନର୍ ଆଦୌ କୌଣସି ଉତ୍ତର ଦେଇପାରି ନ ଥିଲେ । ଏହି ଭୟଙ୍କର ଘଟଣାଗୁଡ଼ିକ ଉପରେ କଲିକତାର ଜାତୀୟତାବାଦୀ ସଂବାଦପତ୍ରମାନେ ଅତ୍ୟନ୍ତ ସମାଲୋଚନାତ୍ମକ ଭାବରେ ଟୀକା କରିଥିଲେ ।

---

★ ଡିଭିଜନାଲ୍ କମିଶନର୍ କେ.ସି.ଡେ, ସି.ଆଇ.ଇ., ଆଇ.ସି.ଏସ୍., ସବ୍ ଡିଭିଜନାଲ୍ ମାଜିଷ୍ଟ୍ରେଟ୍ ମାନନୀୟ ଏସ୍.କେ. ସିହ୍ନା, ଆଇ.ସି.ଏସ୍.

## ଚିଟାଗଙ୍ଗରେ ପ୍ରତିକ୍ରିୟା

ପୂର୍ବରୁ ଅସହଯୋଗ ବିପ୍ଳବର କେନ୍ଦ୍ରସ୍ଥଳ ହିସାବରେ ଆପଣାର ଭୂମିକା ଗ୍ରହଣ କରି ସାରିଥିବା ଚିଟାଗଙ୍ଗରେ ଚାନ୍ଦପୁର ଅତ୍ୟାଚାରର ତୀବ୍ର ପ୍ରତିକ୍ରିୟା ହୋଇଥିଲା । ଚାନ୍ଦପୁରର ସଂବାଦଟି ସେଠାରେ ଆସି ପହଞ୍ଚିବା ମାତ୍ରକେ, ସେତେବେଳେ 'ଜିଲ୍ଲା କଂଗ୍ରେସର ଦାୟିତ୍ୱରେ ଥିବା' ଅଧ୍ୟାପକ ନୃପେନ୍ଦ୍ର ଚନ୍ଦ୍ର ବାନର୍ଜୀ ତତ୍‌କ୍ଷଣାତ୍ ପନ୍ଦରଦିନ ସକାଶେ କୋର୍ଟ କଚେରିଗୁଡ଼ିକର ବୟକଟ୍ ପାଇଁ ଆହ୍ୱାନ ଦେଇଥିଲେ (କାରଣ, ଖୋଦ୍ ଡିଭିଜନାଲ୍ କମିଶନର୍ ଏପରି ଆଇନ୍‌ଗର୍ହିତ କାର୍ଯ୍ୟମାନ କରିସାରିବା ପରେ ସେହି ଅଞ୍ଚଳରେ ଆଉ ଆଇନ୍ ବୋଲି ପ୍ରକୃତରେ କ'ଣ ରହିଥିଲା ?) । କଂଗ୍ରେସ ସ୍ୱେଚ୍ଛାସେବକମାନେ ଏକ ପ୍ରତିବାଦ ବୟକଟ୍ ପାଳନ କରିବାଲାଗି ଜିଲ୍ଲା କଂଗ୍ରେସ କମିଟିର ବ୍ୟାକୁଳ ନିବେଦନ ପତ୍ରକୁ ବାଣ୍ଟୁଥିବା ସମୟରେ ସହରର ଅଧିବାସୀମାନେ ଧର୍ମ ଓ ଗୋଷ୍ଠୀ ନିର୍ବିଶେଷରେ ଚାନ୍ଦପୁରଠାରେ ଦରିଦ୍ର ଜନଗଣଙ୍କ ଉପରେ କରା ଯାଇଥିବା ଘୃଣ୍ୟ ଅତ୍ୟାଚାରର ସଂପୂର୍ଣ୍ଣ ନିନ୍ଦା କରି ତୀବ୍ର ପ୍ରତିବାଦ କରିବାକୁ ଆରମ୍ଭ କଲେ । ସେମାନେ ସଙ୍ଗେ ସଙ୍ଗେ ସେହି ନିବେଦନର ଅନୁସନ୍ଦନ ଜଣାଇଥିଲେ । ଅନ୍ତତଃ ସପ୍ତାହକ ପାଇଁ ବିଚାରାଳୟଗୁଡ଼ିକ ଅଚଳ ହୋଇ ଯାଇଥିଲା । ସେଠାରେ କଂଗ୍ରେସ ସଂଗଠନର ଶକ୍ତି ଏପରି ଥିଲା ଯେ, ଏପରିକି ସହର ବାହାରୁ ଆସୁଥିବା ଡାକକୁ ମଧ୍ୟ ବିତରଣ କରାଯାଇ ପାରିଲା ନାହିଁ । ଦିନକରୁ ଅଧିକ କାଳ ସହରର ସାଧାରଣ ଜୀବନ ଅଚଳ ହୋଇ ଯାଇଥିଲା ।

## ଆଣ୍ଡ୍ରୁଜ୍ ଚିଟାଗଙ୍ଗ ଆସିଲେ

ଯତୀନ୍ଦ୍ରମୋହନ ସେନଗୁପ୍ତ ଏବଂ ତାଙ୍କର ସାଥୀମାନଙ୍କ ସକାଶେ ରହିଥିବା ତାଙ୍କର ଉଚ୍ଚ ଧାରଣା ଯୋଗୁଁ ହିଁ ରେଭ୍‌ରେଣ୍ଡ୍ ଆଣ୍ଡ୍ରୁଜ୍ ଦୁଇଦିନ (ଜୁନ୍, 3-4) ପାଇଁ ଚିଟାଗଙ୍ଗ ଆସିଥିଲେ । ନଗଦ ଟଙ୍କା ଏବଂ ସାମଗ୍ରୀ ଆକାରରେ ସାହାଯ୍ୟ-ଦ୍ରବ୍ୟର ଭିକ୍ଷା କରି ସେ ସହରର ଚାରିଆଡ଼େ ବୁଲିଥିଲେ । ଏହି ମହାନ୍ ବ୍ୟକ୍ତି ସହରର ଯେଉଁ ସ୍ଥାନକୁ ଯାଇଥିଲେ, ସେଠାରେ ତାଙ୍କର ହାର୍ଦ୍ଦିକ ଅଭ୍ୟର୍ଥନା କରା ଯାଇଥିଲା ଏବଂ ତ୍ରାଣକାର୍ଯ୍ୟ ଲାଗି ସାହାଯ୍ୟମାନ ଅଜାଡ଼ି ହୋଇ ପଡ଼ୁଥିଲା । ଏକ ସାଧାରଣ ସଭାରେ ଭାଷଣ ଦେଇ ଦୀନବନ୍ଧୁ ଚାନ୍ଦପୁର ଘଟଣାର ବର୍ଣ୍ଣନା କରି ସେଠାରେ ଥିବା କୁଲି-ଶରଣାର୍ଥୀମାନଙ୍କର ଦୁର୍ଗତ ଅବସ୍ଥାଗୁଡ଼ିକର ଉପସ୍ଥାପନା କରୁଥିଲେ । ଏଠାରେ ମଧ୍ୟ ତାଙ୍କର ଶ୍ରୋତାମାନେ ସହାନୁଭୂତି-ପ୍ରେରିତ ହୋଇ ତାଙ୍କ ହାତରେ ପ୍ରଚୁର ପରିମାଣରେ ଖାଦ୍ୟ, ବସ୍ତ୍ର ଓ ନଗଦ ଅର୍ଥ ଆଣି ଦାନ କରିଥିଲେ । ଭାଷଣ ପରେ ତାଙ୍କର କୁର୍ତ୍ତା, କଲମ ଏବଂ ଫୁଲମାଳକୁ ନିଲାମ କରାଗଲା ଓ ସେଥିରୁ ବେଶ୍ ଏକ ବୃହତ୍ ପରିମାଣ ଅର୍ଥ ସଂଗୃହୀତ ହୋଇଥିଲା । ତଦ୍ୱାରା ୧୩୦୦ ଟଙ୍କାରୁ ଅଧିକ ଆଦାୟ ହୋଇଥିଲା । ଏହା ଆଂଶିକ ଭାବରେ ସାହାଯ୍ୟପାଣ୍ଠି ପାଇଁ ଏବଂ ଆଂଶିକ ଭାବରେ ଧର୍ମଘଟକାରୀ ଆସାମ ବଙ୍ଗଳା ରେଳବାଇ କର୍ମଚାରୀମାନଙ୍କ ପାଇଁ (ଚାନ୍ଦପୁର ଅତ୍ୟାଚାରର ପରଦିନ ଏହି ଧର୍ମଘଟ ଆରମ୍ଭ ହୋଇଥିଲା) ସଂଗୃହୀତ ହୋଇଥିଲା ।

ଆପଣାର ଚିଟାଗଙ୍ଗ ପରିଦର୍ଶନ ବିଷୟରେ ସି. ଏଫ୍. ଆଣ୍ଡ୍ରୁଜ୍ ଯାହା କହିଥିଲେ, ଏଠାରେ ତାହାକୁ ଉଦ୍ଧାର କରିବାର ଲୋଭ ସଂବରଣ କରି ହେଉନାହିଁ:

"ମୋତେ ବର୍ତ୍ତମାନ ନାଟକର ଦୃଶ୍ୟଟିକୁ ଚାନ୍ଦପୁରଠାରୁ ଚିଟାଗଙ୍ଗକୁ ନେଇଯିବାକୁ ପଡ଼ିବ... ପ୍ରତ୍ୟକ୍ଷ ଭାବରେ ଜାତିର ସେବା କରିବାଲାଗି ଦିଆ ଯାଇଥିବା ଆହ୍ୱାନରୁ ହିଁ ଦରିଦ୍ରର ସେବା କରିବା ଲାଗି ଏହି ନୂତନ ଆନ୍ତରିକତାଟି ଜନ୍ମଲାଭ କରିଛି । 'ବନ୍ଦେ ମାତରମ୍' ଧ୍ୱନି କେବଳ ରାସ୍ତାରେ ବୁଲି ଚିତ୍କାର କରିବାପାଇଁ କେତୋଟି ଶବ୍ଦମାତ୍ର ହୋଇ ରହି ନାହିଁ, ଏଠାରେ ତାହା ଦୈନନ୍ଦିନ ଜୀବନରେ ମଧ୍ୟ ଏକ ପ୍ରେରଣାରେ ପରିଣତ ହୋଇପାରିଛି....ମୁଁ ସ୍ପଷ୍ଟ ଭାବରେ ଲକ୍ଷ୍ୟ କରି ଦେଖୁଛି ଯେ, ଏହି ଭାବନାଟି ସତେଅବା ଏକ ବନ୍ୟାର ପ୍ଳାବନ ପରି ଅଗ୍ରସର ହୋଇ ଧାଇଁବାରେ ଲାଗିଛି ଏବଂ ଦୀର୍ଘ ପରାଧୀନତା ହେତୁ ଘୋଟି ରହିଥିବା କେତେକେତେ ଜର୍ଜରତାକୁ ତାହା ଧୌତ କରିଦେଇ ପାରୁଛି..."★

## ଦେଶବନ୍ଧୁ ଆସି ପହଞ୍ଚିଲେ

ଚାହାବାଗାନର ଶ୍ରମିକପରିସ୍ଥିତି ଏବଂ ରେଳବାଇ ତଥା ଷ୍ଟିମର୍ ଧର୍ମଘଟରୁ ଉପୁଜିଥିବା ଚାନ୍ଦପୁରର ଜଟିଳ ଅବସ୍ଥାଟି ବିଷୟରେ ଯତୀନ୍ଦ୍ରମୋହନ କଲିକତାକୁ ଖବର ପଠାଇ ଦେଶବନ୍ଧୁ ଚିତ୍ତରଞ୍ଜନଙ୍କୁ ଜଣାଇ ଦେଇଥିଲେ । ତାହା ଚିତ୍ତରଂଜନର ମନକୁ ଗଭୀର ଭାବରେ ଆଚ୍ଛନ୍ନ କରି ପକାଇଥିଲା । ତେଣୁ, ଆଦୌ କୌଣସି କାଳବିଳମ୍ବ ନ କରି ଏବଂ ଶ୍ରୀମତି ବାସନ୍ତୀ ଦେବୀ ଓ ସତ୍ୟେନ୍ଦ୍ର ଚନ୍ଦ୍ର ମିତ୍ର, ସୁପ୍ରଭା ଦେବୀ ଓ ଅନ୍ୟ କେତେଜଣ ସହକର୍ମୀଙ୍କୁ ସାଙ୍ଗରେ ନେଇ ଦେଶବନ୍ଧୁ ଗୋଆଲନ୍ଦ ଯାତ୍ରା କରିଥିଲେ (ଜୁନ୍ 5) । ସେତେବେଳେ ନଦୀରେ କୌଣସି ଷ୍ଟିମର ଚଳାଚଳ ହେଉ ନ ଥିଲା । ଷ୍ଟିମର କମ୍ପାନୀର କର୍ମଚାରୀମାନେ ଧର୍ମଘଟ କରୁଥିଲେ । ସେତେବେଳେ ପ୍ରବଳ ବର୍ଷା ହେଉଥାଏ ଓ ଏକ ଝଡ଼ ଆସନ୍ନ ହୋଇ ଆସୁଥାଏ । ପ୍ରଖରସ୍ରୋତା ବନ୍ୟାସ୍ଫୀତା ପଦ୍ମାନଦୀ କରାଳ ମୂର୍ତ୍ତି ଧାରଣ କରିଥାଏ । ଏହି ଭୟଙ୍କର ନଦୀକୁ ପାର ହେବାର ବିପଦ ବରଣ ନ କରିବା ଲାଗି ସହକର୍ମୀମାନଙ୍କର ପରାମର୍ଶ କିମ୍ବା ସତର୍କବାଣୀ ଦେଶବନ୍ଧୁ ଆଦୌ ମାନି ନ ଥିଲେ । ଚାନ୍ଦପୁରର ଦୁର୍ଗତ ଲୋକମାନଙ୍କ ପାଖରେ ପହଞ୍ଚି ସ୍ୱଚକ୍ଷୁରେ ସକଳ ଅବସ୍ଥା ଦେଖିବା ସକାଶେ ସେ ବ୍ୟାକୁଳ ହୋଇପଡ଼ିଲେ । ଦୁଇଜଣ ଗ୍ରାମ୍ୟ ନୌକାଚାଳକ ବାହାରିପଡ଼ିଲେ ଏବଂ ଦେଶର ପ୍ରିୟ ନେତା ଓ ତାଙ୍କର ସଙ୍ଗୀମାନଙ୍କୁ ନଦୀ ପାର କରିଦେବା ପାଇଁ ସମ୍ମତ ହେଲେ । ଯେଉଁ ପଥ ଅତିକ୍ରମ କରିବାକୁ ସାଧାରଣତଃ ସାତଘଣ୍ଟା ସମୟ ଲାଗେ, ଏହି ଦୁଃସମୟରେ ସେଥିଲାଗି 72 ଘଣ୍ଟା ଲାଗିଲା । ଦେଶବନ୍ଧୁ ଚାନ୍ଦପୁରଠାରେ ପହଞ୍ଚିବା ମାତ୍ରକେ ତାଙ୍କୁ ବିପୁଳ ଅଭ୍ୟର୍ଥନା ଜ୍ଞାପନ କରା ଯାଇଥିଲା ।

ଚାହାବଗିଚା ଶ୍ରମିକ, ରେଳବାଇ କର୍ମଚାରୀ ଓ ଷ୍ଟିମର କମ୍ପାନୀ- ଏହିପରି ତ୍ରିପକ୍ଷୀୟ ଏହି ଧର୍ମଘଟଟି ବିଦେଶୀ ଶାସକ ତଥା ବାଣିଜ୍ୟକାରୀ ସଂସ୍ଥାଗୁଡ଼ିକର ସାମ୍ରାଜ୍ୟବାଦୀ କୌଶଳଖେଳର ପରିଣତି ସ୍ୱରୂପ ଏକ ବିସ୍ତୃତ ଜନଜାଗରଣର ରୂପ ଧାରଣ କରିଥିଲା । ଆପଣାର ବିଚକ୍ଷଣତା ବଳରେ ଦେଶବନ୍ଧୁ ଅବସ୍ଥାଟିକୁ ଯଥାର୍ଥ ଭାବରେ ଉପଲବ୍ଧି କରିପାରିଲେ ଓ ସ୍ପଷ୍ଟ ଭାବରେ ଆପଣାର ମନ୍ତବ୍ୟ ଦେଇଥିଲେ :

"ମୋର ସାମର୍ଥ୍ୟ ଅନୁସାରେ ସମସ୍ତ ଗୁରୁତ୍ୱ ଦେଇ ମୁଁ ବାଧହୋଇ କହୁଛି ଯେ, ଏହି ଧର୍ମଘଟଗୁଡ଼ିକୁ ଆଦୌ କେବଳ ଶ୍ରମିକ-ଧର୍ମଘଟ ବୋଲି କୁହାଯିବ ନାହିଁ । ସେଗୁଡ଼ିକ ରାଜନୀତିକ

---

★ ସି.ଏଫ୍.ଆଣ୍ଡ୍ରୁଜ୍‌ଙ୍କ ଦ୍ୱାରା ଲିଖିତ Oppression of the Poor (ଗଣେଶ ଏଣ୍ଡ୍ କମ୍ପାନୀ, ମାଡ୍ରାଜ ୧୯୨୨) । ଲେଖକ ସେତେବେଳେ ଚିଟାଗଙ୍ଗରେ ଥିଲେ, ଆଣ୍ଡ୍ରୁଜ୍ ଭାଷଣ ଦେଇଥିବା ସେହି ସଭାରେ ମଧ୍ୟ ଉପସ୍ଥିତ ଥିଲେ ।

ଧର୍ମଘଟ ବି ନୁହେଁ, ସେଗୁଡ଼ିକ ଜାତୀୟ ଧର୍ମଘଟ । ଯେଉଁ ପ୍ରେରଣା ଓ ଭାବନା ସହିତ ଦେଶବ୍ୟାପୀ ସ୍ୱରାଜ ଦଳର ସଂଗ୍ରାମଟି ଲଢ଼ାଯାଉଛି, ଏହି ସଂଗ୍ରାମ ମଧ୍ୟ ତାହାରି ଦ୍ୱାରା ହିଁ ପ୍ରେରିତ ହୋଇଛି ଏବଂ ଏହାକୁ ପ୍ରକୃତରେ ସେହି ସାଧାରଣ ଅସହଯୋଗ ଆନ୍ଦୋଳନର ଗୋଟିଏ ଅଂଶ ବୋଲି ହିଁ କୁହାଯିବ ।''

ଦେଶବନ୍ଧୁ ମୁକ୍ତକଣ୍ଠରେ ଯତୀନ୍ଦ୍ରମୋହନଙ୍କର ବୃହତ୍ ହୃଦ୍‌ବତ୍ତା, ଅକ୍ଳାନ୍ତ କର୍ମଶୀଳତା ଏବଂ ପ୍ରଭୂତ ବ୍ୟକ୍ତିଗତ ତ୍ୟାଗ ସ୍ୱୀକାର କରି ତିନୋଟିଯାକ ଧର୍ମଘଟରେ ଏକ ପୁରୋଭୂମିକା ଗ୍ରହଣ କରିଥିବାରୁ ଉଚ୍ଚ ପ୍ରଶଂସା କରିଥିଲେ । ତାଙ୍କର ନିର୍ଦ୍ଦେଶକ୍ରମେ ତିଲକ ସ୍ୱରାଜ ପାଣ୍ଠିରୁ ଦେଢ଼ଲକ୍ଷ ଟଙ୍କା ଧର୍ମଘଟକାରୀମାନଙ୍କର ସାହାଯ୍ୟ ସକାଶେ ପ୍ରାପ୍ତ ହୋଇଥିଲା । ଧର୍ମଘଟକାରୀମାନଙ୍କର ସହାୟତା ଲାଗି ଯତୀନ୍ଦ୍ରମୋହନ ଯେଉଁ ବୃହତ୍ ପରିମାଣର ଏକାଧିକ ଋଣ କରିଥିଲେ, କିଭଳି ଭାବରେ ଯେ ସେଗୁଡ଼ିକର ପରିଶୋଧ ସମ୍ଭବ ହେବ, ସେଥିଲାଗି ସେ ଉଦ୍‌ବେଗ ପ୍ରକାଶ କରିଥିଲେ । ଏକ ସ୍ଥାନୀୟ ବ୍ୟାଙ୍କରୁ ଚାଳିଶ ହଜାର ଟଙ୍କା କରଜ କରି ଯତୀନ୍ଦ୍ରମୋହନ ତା' ବଦଳରେ ନିଜ ଭୂସମ୍ପତ୍ତିର ଏକ ବୃହତ୍ ଅଂଶ ଏବଂ ଚିଟାଗଙ୍ଗର ଗୋଟିଏ କୋଠାକୁ ବନ୍ଧକ ରଖିଥିଲେ ।

## ଆସାମ-ବଙ୍ଗଳା ରେଳବାଇ ଧର୍ମଘଟ

ଚାନ୍ଦପୁର ଦୁଃଖଦ ଘଟଣାଟିର ତାତ୍କାଳିକ ଭାବରେ ଏହି ପ୍ରଭାବଟି ପଡ଼ିଥିଲା ଯେ, ତାହା ଆସାମ-ବଙ୍ଗଳା ରେଳବାଇର କର୍ମଚାରୀମାନଙ୍କୁ ମଧ୍ୟ ଏହାର ପ୍ରତିକ୍ରିୟା ସ୍ୱରୂପ କିଛି କରିବା ଲାଗି ପ୍ରେରଣା ଦେଇଥିଲା । ଚାନ୍ଦପୁର ଓ ନିକଟବର୍ତ୍ତୀ ଲକ୍‌ଷମ୍ ଷ୍ଟେସନ ଦୁଇଟି ସେହି ରେଳବାଇର ଗୋଟିଏ ଗୋଟିଏ ମୁଖ୍ୟ ଜଙ୍କସନ୍ ଥିଲା । ସେଠାରେ ଥିବା ରେଳବାଇ କର୍ମଚାରୀମାନେ ମଇ 24 ତାରିଖରେ ଅସଂଗଠିତ ଭାବରେ ଏକ ପ୍ରତିବାଦ ଦିବସ ପାଳନ କରିଥିଲେ ଏବଂ ଦିନେ ଦୁଇଦିନ ଭିତରେ ତାହା ଚିଟାଗଙ୍ଗ ଠାରୁ ଆସାମର ତିନସୁକିଆ ପର୍ଯ୍ୟନ୍ତ ସେହି ରେଳବାଇର ଏକ ବିସ୍ତୃତ ଅଞ୍ଚଳକୁ ବ୍ୟାପି ଯାଇଥିଲା । କର୍ମଚାରୀମାନଙ୍କର ଅବଶ୍ୟ ନିଜର ଦାବିମାନ ରହିଥିଲା; ଭାରତର ଅନ୍ୟ ରେଳବାଇ ଗୁଡ଼ିକ ତୁଳନାରେ ସେମାନେ ଅତ୍ୟନ୍ତ କମ୍ ମଜୁରି ପାଉଥିଲେ । ସେମାନେ ସତ୍ୱର ରେଳବାଇର ମୁଖ୍ୟ ମହକୁମା ଚିଟାଗଙ୍ଗଠାରେ ଏକ ଅଧିବେଶନରେ ସମ୍ମିଳିତ ହୋଇଥିଲେ ଏବଂ ସଙ୍ଗେ ସଙ୍ଗେ ଏକ ସାଧାରଣ ଧର୍ମଘଟ କରିବାକୁ ନିଷ୍ପତ୍ତି ଗ୍ରହଣ କରିଥିଲେ । ଚାହାବଗିଚାର କୁଲିମାନଙ୍କ ପ୍ରତି ସହାନୁଭୂତି ଜଣାଇ ତଥା ନିଜର କର୍ମଗତ ସ୍ଥିତି ଓ ବେତନରେ ଉନ୍ନତି କରାଯାଉ ବୋଲି ଦାବି କରି ଏହି ଧର୍ମଘଟର ଆହ୍ୱାନ ଦିଆ ଯାଇଥିଲା । ଦୁର୍ଗତ ମନୁଷ୍ୟମାନଙ୍କର ନେତାରୂପେ ସୁବିଦିତ ଯତୀନ୍ଦ୍ରମୋହନଙ୍କୁ ସର୍ବସମ୍ମତିକ୍ରମେ ଆସାମ-ବଙ୍ଗଳା ରେଳବାଇ କର୍ମଚାରୀ ଇଉନିଅନ ଭାବରେ ଗ୍ରହଣ କରାଗଲା । ରେଳବାଇ ଧର୍ମଘଟ ଠିକ୍ ନିଆଁ ପରି ବ୍ୟାପିବାକୁ ଲାଗିଲା, ଏବଂ ଏହି ଘଟଣାର ପ୍ରାୟ ଅବ୍ୟବହିତ ପରେ ଚାନ୍ଦପୁର, ନାରାୟଣଗଞ୍ଜ ଓ ଗୋଆଲନ୍ଦ ମଧ୍ୟରେ ଜାହାଜ ଚଳାଉଥିବା ନଦୀ ଷ୍ଟିମର କମ୍ପାନୀର ଜାହାଜମାନଙ୍କରେ ସବୁଯାକ ପାହ୍ୟାର କର୍ମଚାରୀମାନେ ବି ଧର୍ମଘଟ ଆରମ୍ଭ କରିଦେଲେ । ଦୁଇ ଦିନରେ ହିଁ ସ୍ଥଳ ଓ ଜଳ ଉଭୟ ମାର୍ଗର ସମସ୍ତ ଗମନାଗମନ ବ୍ୟବସ୍ଥା ଅଚଳ ହୋଇ ପଡ଼ିଥିଲା । ପ୍ରାୟ 25000 ଧର୍ମଘଟକାରୀ ଓ ସେମାନଙ୍କର ପରିବାର ରେଳବାଇ ତଥା ଜାହାଜଗୁଡ଼ିକର କର୍ମଚାରୀ ଏବଂ ବାଟରେ ଅଟକ ହୋଇ ରହିଥିବା ଚାହାବଗିଚାର କୁଲି- ଏହି ସମସ୍ତଙ୍କର ଦାୟିତ୍ୱ ଆସି ଯତୀନ୍ଦ୍ରମୋହନଙ୍କ କାନ୍ଧରେ ପଡ଼ିଲା । ଯତୀନ୍ଦ୍ରମୋହନ ଏହି ସ୍ଥିତିର ସମ୍ମୁଖରେ ଅଦ୍‌ଭୁତ ଧୈର୍ଯ୍ୟ ଏବଂ ବୁଝିବା ଶକ୍ତିର ପରିଚୟ ଦେଇଥିଲେ । ତାଙ୍କର କର୍ମକୌଶଳ, ସଂଗଠନର ସାମର୍ଥ୍ୟ ସହିତ ତାଙ୍କର ଗତିଶୀଳ ବ୍ୟକ୍ତିତ୍ୱ ମଧ୍ୟ ଏଥିରେ ତାଙ୍କୁ ଅନେକ ସାହାଯ୍ୟ କରିଥିଲା ।

ଏହି ପୁସ୍ତକର ଲେଖକ ମଧ୍ୟ ଚିଟାଗଙ୍ଗର ସେହି ଉତ୍ତେଜନାମୟ ଦୃଶ୍ୟଗୁଡ଼ିକୁ ଦେଖିବାର ସୌଭାଗ୍ୟ ଲାଭ କରିଥିଲା । ଚିଟାଗଙ୍ଗ ହିଁ ପ୍ରାୟ ଯୁଗପତ୍ ଭାବରେ ଘଟିଥିବା ସେହି ବହୁ ଘଟଣାର ସ୍ନାୟୁକେନ୍ଦ୍ର ପରି ହୋଇ ରହିଥିଲା । କଲିକତାର ଜଣେ ଆଡ଼ଭୋକେଟ୍ ଅଜିତ୍ କୁମାର ଦତ୍ତ ଦ୍ୱିତୀୟ ଦଶକର ପ୍ରଥମ ଭାଗରେ ଜଣେ ଯୁବନେତା ଥିଲେ ଓ ସିଏ ସେତେବେଳେ ଘଟିଥିବା ଘଟଣା ଗୁଡ଼ିକର ଜଣେ ପ୍ରତ୍ୟକ୍ଷ ଦ୍ରଷ୍ଟା ଥିଲେ । ତାଙ୍କରି ଭାଷାରେ କହିବାକୁ ଗଲେ, ''ସେହି ଦୃଶ୍ୟ ପ୍ରକୃତରେ ଅବିସ୍ମରଣୀୟ । ସେନଗୁପ୍ତ ଦୁର୍ଗତ ଜନଗଣଙ୍କର ପୁରୋଭାଗରେ ରହିଥିଲେ । ଚାନ୍ଦପୁର ଠାରେ ହଜାର ହଜାର କୁଲିଙ୍କର ଧର୍ମଘଟ ଚାଲିଥିଲା, ପ୍ରାୟ ୧୫୦ ମାଇଲ ଦୀର୍ଘ ଏକ ରେଳବାଇ କ୍ଷେତ୍ରର କର୍ମଚାରୀ ମଧ୍ୟ ଆଉଗୋଟିଏ ଧର୍ମଘଟ ଚଳାଇଥିଲେ ଓ ସେମାନଙ୍କର ପରିବାରବର୍ଗ ତଥା ଜାହାଜରେ କାମ କରୁଥିବା ଶହ ଶହ ବ୍ୟକ୍ତି ନଦୀକୂଳରେ ଯାଇ ବସି ରହିଥିଲେ । ଏଥି ସହିତ ସମ୍ବନ୍ଧିତ ଆହୁରି ଅନେକ ଜଟିଳତା ଏବଂ ସମସ୍ୟାମାନ ବି ରହିଥିଲା । ଦଣ୍ଡେ ସୁଦ୍ଧା ବିଶ୍ରାମ ନ ନେଇ ଅକ୍ଳାନ୍ତ ପ୍ରଚେଷ୍ଟା ଦ୍ୱାରା, ପ୍ରତ୍ୟହ ପ୍ରାୟ ଅଠରଘଣ୍ଟା କାର୍ଯ୍ୟ କରି ସେନଗୁପ୍ତ ଶିବିରରୁ ଶିବିର ଯିବାରେ ଲାଗିଥିଲେ, ଷ୍ଟେସନରୁ ଷ୍ଟେସନକୁ ଯାଉଥିଲେ, ତାଙ୍କର ଦୈନନ୍ଦିନ କାର୍ଯ୍ୟକ୍ରମରେ କେତେ କେତେ ଲୋକଙ୍କୁ ଭେଟୁଥିଲେ ଏବଂ କେତେକେତେ ଲୋକଙ୍କୁ ଆବଶ୍ୟକ ପରାମର୍ଶମାନ ବି ଦେଉଥିଲେ । ତାଙ୍କର ଏହି ଚମତ୍କୃତକାରୀ କର୍ମମୟତା ତାଙ୍କର ସମ୍ପର୍କରେ ଆସୁଥିବା ସମସ୍ତଙ୍କୁ ଅନେକ ପ୍ରେରଣା ଦେଉଥିଲା ଏବଂ ସବୁଠାରୁ ଅଧିକ ଆଶ୍ଚର୍ଯ୍ୟର କଥା ହେଉଛି ଯେ, ଅଧିକରୁ ଅଧିକ ପ୍ରତିହତକାରୀ ମୁହୂର୍ତ୍ତଗୁଡ଼ିକରେ ମଧ୍ୟ ସେ ହୃଦୟ ଉଛୁଳାଇ ହସି ପାରୁଥିଲେ ଏବଂ ବିନୋଦ ମଧ୍ୟ କରିପାରୁଥିଲେ ।'' ପୁନଶ୍ଚ ଯତୀନ୍ଦ୍ରମୋହନ ସେନଗୁପ୍ତଙ୍କର ବହୁବିଭାବ ଯୁକ୍ତ ବ୍ୟକ୍ତିତ୍ୱ ଏବଂ କୃତିତ୍ୱର ଆଲୋଚନା କରି ଦତ୍ତ ଏକଥା ମଧ୍ୟ କହିଥିଲେ ଯେ, ଏହି ଜନନାୟକଙ୍କର ସବୁଠାରୁ ଅଧିକ ଉଲ୍ଲେଖଯୋଗ୍ୟ ଗୁଣ ଏହା ହିଁ ଥିଲା ଯେ, ସିଏ ନିଜର ଜୀବନସାରା ''ନିର୍ଭୀକ ଏବଂ ନିଷ୍କଳଙ୍କ ଭାବରେ ଜଣେ ଯୋଦ୍ଧା'' ହୋଇ ରହି ପାରିଥିଲେ । *

ଏହା ପ୍ରକୃତରେ ଅତ୍ୟନ୍ତ ଆଶ୍ଚର୍ଯ୍ୟର କଥା ଯେ, ତାଙ୍କରି ପ୍ରେରଣା ଦ୍ୱାରା ଅନୁପ୍ରାଣିତ ହୋଇ ଏକ ସ୍ୱେଚ୍ଛାସେବକଦଳ,- ସେଥିରେ ଅନନ୍ତ ସିଂହ, ଗଣେଶ ଘୋଷ ଏବଂ ତାଙ୍କର ସାଥୀମାନଙ୍କ ପରି ଅଧିକାଂଶ କଠିନ ଶ୍ରମଲାଗି ପ୍ରସ୍ତୁତ ଯୁବକମାନେ ରହିଥିଲେ, - ରେଳବାଇ ଧର୍ମଘଟ ଚାଲିଥିବା ସମୟରେ ଚାନ୍ଦପୁରଠାରୁ ଚିଟାଗଙ୍ଗ ମଧ୍ୟରେ (ପ୍ରାୟ 120 ମାଇଲ ବାଟ) ବିଭିନ୍ନ ରେଳଷ୍ଟେସନ ମଧ୍ୟରେ ଡାକ ସରବରାହର କାର୍ଯ୍ୟ ମଧ୍ୟ କରିଥିଲେ ।

ମାସକଠାରୁ ଅଧିକକାଳ ଧର୍ମଘଟ ଚାଲିଲା । ପରିସ୍ଥିତି ସଂପୂର୍ଣ୍ଣ ଭାବରେ ଅହିଂସ ଓ ଶାନ୍ତିପୂର୍ଣ୍ଣ ରହିବ ବୋଲି ଶ୍ରୀଯୁକ୍ତ ସେନଗୁପ୍ତ ସବୁଠାରୁ ଅଧିକ ଗୁରୁତ୍ୱ ଏବଂ ଦୃଷ୍ଟି ଦେଉଥିଲେ । ସମସ୍ତେ ପୂର୍ଣ୍ଣ ଶୃଙ୍ଖଳାର ସହିତ ତାଙ୍କର ନିର୍ଦ୍ଦେଶକୁ ପାଳନ କରୁଥିଲେ । ମାତ୍ର ତଥାପି ସ୍ଥାନୀୟ କର୍ତ୍ତାପକ୍ଷଟି ଆଦୌ ସ୍ଥିର ରହିପାରିଲା ନାହିଁ । ଶ୍ରୀ ସେନଗୁପ୍ତ ଓ ତାଙ୍କର ସାଥୀମାନଙ୍କ ଉପରେ 144 ଧାରା ଅନୁସାରେ ଆଦେଶ ଜାରି କରାଗଲା ଓ ସେମାନଙ୍କ ଲାଗି କୌଣସି ପ୍ରକାର ସଭା କରିବା କିମ୍ବା ଶୋଭାଯାତ୍ରା ବାହାର କରିବା ନିଷିଦ୍ଧ କରି ରଖାଗଲା । ଚିଟାଗଙ୍ଗଠାରୁ ପାଞ୍ଚମାଇଲ ଦୂରରେ ଅବସ୍ଥିତ ଆସାମ-

* 'ଭାବୀ କାଳ' ପତ୍ରିକାର ଦେଶପ୍ରିୟ ସ୍ମୃତିସଂଖ୍ୟାରେ ଅଜିତ କୁମାର ଦତ୍ତଙ୍କ ଲିଖିତ ''ଯତୀନ୍ଦ୍ରମୋହନଙ୍କୁ ମୁଁ ଯେପରି ଜାଣିଥିଲି'' ବଙ୍ଗଳା ପ୍ରବନ୍ଧ ।

ବଙ୍ଗଳା ରେଲବାଇର ମୁଖ୍ୟ କାରଖାନା ରହିଥିବା ସହର ପାହାଡ଼ତାଲିଠାରେ ଧର୍ମଘଟକାରୀ କର୍ମଚାରୀମାନଙ୍କ ଉପରେ ଅତ୍ୟନ୍ତ କଠୋରତାର ସହିତ ବ୍ୟବହାର କରାଯାଉଥିଲା । ଧର୍ମଘଟକାରୀମାନଙ୍କୁ ସେମାନଙ୍କର ବସାଘର ଛାଡ଼ି ଚାଲିଯିବାକୁ କୁହାଗଲା, ମାତ୍ର ସେମାନଙ୍କୁ ଆପଣାର କୌଣସି ଜିନିଷପତ୍ର ସାଙ୍ଗରେ ନେବାକୁ ଅନୁମତି ଦିଆଗଲା ନାହିଁ । ଏହି ଭୟ ପ୍ରଦର୍ଶନ ଧର୍ମଘଟରେ ଯୋଗ ଦେଉଥିବ । କର୍ମଚାରୀମାନଙ୍କ ଲାଗି ନୂତନ ସମସ୍ୟା ସୃଷ୍ଟି କଲା । ଆଦୌ କୌଣସି ବିଳମ୍ବ ନ କରି ଚିଟାଗଙ୍ଗ କଂଗ୍ରେସ କମିଟି ପାହାଡ଼ତାଲିର ସଂପୃକ୍ତ କର୍ମଚାରୀ ଓ ସେମାନଙ୍କର ପରିବାରବର୍ଗଙ୍କୁ ସହାୟତା କରିବା ଲାଗି ଗୋଟିଏ ସ୍ୱେଚ୍ଛାସେବକ ଦଳ ପଠାଇ ଦେଇଥିଲେ । କଂଗ୍ରେସ କର୍ମୀମାନଙ୍କର ପ୍ରଥମ ଦଳରେ ଯେଉଁମାନେ ଥିଲେ, ସେମାନେ ହେଉଛନ୍ତି ସୁଖେନ୍ଦୁବିକାଶ ସେନଗୁପ୍ତ, ମହମ୍ମଦ ହାରୁନ୍, ପ୍ରେମାନନ୍ଦ ଦତ୍ତ, ମହମ୍ମଦ ସିରାଜୁଲ୍ ହକ୍, ସାମସୁଦ୍ଦିନ୍ ସାସାରାମିଂ, ଗଙ୍ଗାରାମ ପୁଙ୍ଗା, ମହମ୍ମଦ ମୁସା ଓ ନଳିନୀରଞ୍ଜନ ମିତ୍ର । ସେମାନେ ଜୁନ୍ 21 ତାରିଖ ପ୍ରତ୍ୟୁଷରୁ ପାହାଡ଼ତାଲି ଯାତ୍ରା କରିଥିଲେ । ପୋଲିସ୍ କୌଣସି ପ୍ରକାରେ ସେମାନଙ୍କର ଏହି ଯାତ୍ରାର ଗନ୍ଧ ପାଇଗଲେ । ଜଣେ ସବ୍-ଇନ୍ସପେକ୍ଟର କେତେକ କନ୍‌ଷ୍ଟେବଲ୍‌ଙ୍କ ଝର୍‌ଝୈୟା ବାହଲିଠାରେ ରାସ୍ତାକଡ଼ରେ ଥିବା ଗୋଟିଏ ଚାହା ଦୋକାନରେ ହଠାତ୍ ଆସି ଆବିର୍ଭୂତ ହୋଇପଡ଼ିଲେ । ସେତେବେଳେ ବର୍ଷା ହେଉଥାଏ, ଟିକିଏ ଉଷୁମ ଅନୁଭବ କରିବାଲାଗି ସେତେବେଳେ କଂଗ୍ରେସ ସ୍ୱେଚ୍ଛାସେବୀମାନେ ସେଠାରେ ଚାହା ପିଉଥିଲେ । ଆପଣାର ଶାନ୍ତିଯାତ୍ରାରେ ସେମାନେ ବଡ଼ ଅସତର୍କ ଭାବରେ ପୋଲିସ୍ ହାବୁଡ଼ରେ ପଡ଼ିଗଲେ । ସେମାନଙ୍କୁ ସଙ୍ଗେସଙ୍ଗେ ଗିରଫ କରି ନିଆଗଲା । ପୋଲିସ୍ ଆଉ କାଳ ବିଳମ୍ବ ନ କରି ଚିଟାଗଙ୍ଗ ଠାରୁ କେତେ କିଲୋମିଟର ଦୂରରେ ଅବସ୍ଥିତ କୋଟ୍‌ୱାଲି ପର୍ଯ୍ୟନ୍ତ ହାତକଡ଼ି ପିନ୍ଧାଇ ଘୋର ବର୍ଷାରେ ସେମାନଙ୍କୁ ଚଲାଇ ଚଲାଇ ନେଇଥିଲା ।

ଚିଟାଗଙ୍ଗରେ ପୋଲିସ୍ କର୍ତ୍ତୃପକ୍ଷଙ୍କର କ୍ରୁର ଦମନଲୀଳା ଆରମ୍ଭ ହେବା ପରେ ଅସହଯୋଗ ଆନ୍ଦୋଳନରେ ଏହି ନଅଜଣ କଂଗ୍ରେସ ପକ୍ଷର ବ୍ୟକ୍ତି ସର୍ବପ୍ରଥମେ ଗିରଫ ହୋଇଥିଲେ । ଏହି ସମ୍ବାଦ ଅଚିରେ ଚିଟାଗଙ୍ଗ କଂଗ୍ରେସ ମହକୁମାରେ ମଧ୍ୟ ପହଞ୍ଚିଗଲା । ଯତୀନ୍ଦ୍ରମୋହନ ଅତ୍ୟନ୍ତ ଉଦ୍‌ବିଗ୍ନ ହୋଇପଡ଼ିଲେ । ସାଥୀମାନଙ୍କ ସହିତ ତତ୍‌କ୍ଷଣାତ୍ ପରାମର୍ଶ କରି ସେ ଏକ ବିରାଟ ପ୍ରତିବାଦ ଶୋଭାଯାତ୍ରା ବାହାର କରିବାକୁ ନିଷ୍ପତ୍ତି ଗ୍ରହଣ କଲେ । କଂଗ୍ରେସ କର୍ମୀମାନେ ଦୁର୍ଗତ ବ୍ୟକ୍ତିମାନଙ୍କୁ ସାହାଯ୍ୟ କରିବାକୁ ବୈଧ ଓ ଶାନ୍ତିପୂର୍ଣ୍ଣ ଭାବରେ ଯାତ୍ରା କରୁଥିଲେ; ସେମାନଙ୍କୁ ଗିରଫ କରିନେବାର ପ୍ରତିବାଦରେ ଏହି ଶୋଭାଯାତ୍ରା ବାହାରିଲା । ସେମାନେ ଭଲ କରି ଜାଣିଥିଲେ ଯେ, ଏହି ଶୋଭାଯାତ୍ରା 144 ଧାରାରେ ଜାରି ହୋଇଥିବା ସରକାରୀ ନିଷେଧାଜ୍ଞାକୁ ଖୋଲା ଖୋଲି ଅମାନ୍ୟ କରିବ । ତେଣୁ, ଯେଉଁମାନେ ଶୋଭାଯାତ୍ରାରେ ଯୋଗ ଦେବାପାଇଁ ସମ୍ମତ ହେଲେ, ଯତୀନ୍ଦ୍ରମୋହନ ସେମାନଙ୍କୁ ଅହିଂସ ରହିବା ସକାଶେ ଦୃଢ଼ ନିବେଦନ କରିଥିଲେ ଏବଂ ପୋଲିସ୍ ବା ସେମାନଙ୍କର ସହକର୍ମୀ ବୋଲି କହୁଥିବା ଅନ୍ୟ ଯେକୌଣସି ବ୍ୟକ୍ତି ଯେତେ ଯାହା ଉତ୍ତେଜନା ସୃଷ୍ଟି କଲେ ମଧ୍ୟ ସେମାନେ ତଥାପି ଯେପରି ସ୍ଥିର ହୋଇ ରହିବେ, ସେ ସେହି ବିଷୟରେ ଅତ୍ୟନ୍ତ ଗୁରୁତ୍ୱ ଦେଇଥିଲେ । ନାୟକଙ୍କର ଏହି ନିର୍ଦ୍ଦେଶ-ବାକ୍ୟକୁ ସମସ୍ତେ ସଂପୂର୍ଣ୍ଣ ଭାବରେ ପାଳନ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ଶୋଭାଯାତ୍ରାଟି ସହରର ମୁଖ୍ୟ ରାସ୍ତାଗୁଡ଼ିକ ଦେଇ ଯିବ ବୋଲି ଅବଶ୍ୟ ଯୋଜନା ହୋଇଥିଲା, ବିଭିନ୍ନ ସଂପ୍ରଦାୟର ପବିତ୍ର ସ୍ଥାନମାନଙ୍କରେ ପ୍ରାର୍ଥନା ମଧ୍ୟ କରାଯିବ ବୋଲି ସ୍ଥିରୀକୃତ ହେଲା ।

ଅତ୍ୟନ୍ତ ଉତ୍ସାହରେ ଶୋଭାଯାତ୍ରା ବାହାରିଲା । ତାହା ଅଗ୍ରସର ହେବା ସଂଗେ ସଂଗେ ସେଥିରେ ଶହଶହ ଲୋକ ଆସି ଯୋଗ ଦେଇଥିଲେ । ହିନ୍ଦୁ ଓ ଶିଖମାନଙ୍କର ମନ୍ଦିର ଦେଇ ଯାଇସାରିବା ପରେ ଶୋଭାଯାତ୍ରାଟି ଆନେରକିଲ୍ଲାଠାରେ ଅବସ୍ଥିତ ଜୁମା ମସ୍‌ଜିଦ୍ ଆଡ଼କୁ ଗତି କରୁଥିଲା । ମସ୍‌ଜିଦ୍‌ଟି ସହରର କେନ୍ଦ୍ରସ୍ଥଳରେ ଅବସ୍ଥିତ ଥିଲା । ସେତିକିବେଳେ ଜିଲ୍ଲା ମାଜିଷ୍ଟ୍ରେଟ୍ ଷ୍ଟ୍ରଙ୍ଗ ଏବଂ ପୋଲିସ୍ ସୁପରିଣ୍ଟେଣ୍ଡେଣ୍ଟ୍ କର୍ନିଶ୍ ସ୍ୱୟଂ ସେଠାକୁ ଦଉଡ଼ି ଆସିଥିଲେ ଓ ଶୋଭାଯାତ୍ରାର ଗତିରୋଧ କଲେ । ଶୋଭାଯାତ୍ରା ଛାଡ଼ି ଚାଲିଯିବାକୁ ଲୋକମାନଙ୍କୁ ଆଦେଶ ହେଲା, ମାତ୍ର ଜଣେ କେହିହେଲେ ହଲଚଲ ବି ହୋଇ ନ ଥିଲେ । କଂଗ୍ରେସ ନେତାମାନଙ୍କ ସହିତ ଏକ ବାକ୍‌ବିନିମୟ ପରେ ଯତୀନ୍ଦ୍ରମୋହନ, ମହିମଚନ୍ଦ୍ର ଦାସ ଏବଂ ଆହୁରି ବାରଜଣଙ୍କୁ ସେହି ସ୍ଥାନରୁ ବନ୍ଦୀ କରି ନିଆ ଯାଇଥିଲା । ସେତେବେଳେ ମଧ ପ୍ରବଳ ବର୍ଷା ହେଉଥାଏ । ସେହି ଦୁଃସମୟକୁ ଆଦୌ କୌଣସି ଭ୍ରୂକ୍ଷେପ ନ କରି ଶୋଭାଯାତ୍ରାକାରୀମାନେ ଅଧିକ ସଂକଳ୍ପର ସହିତ ପୁନର୍ବାର ଅଗ୍ରସର ହେଲେ । ବର୍ତ୍ତମାନ ସେମାନେ ''ବନ୍ଦେ ମାତରମ୍'', ''ଆଲ୍ଲା ହୋ ଆକ୍‌ବର୍'', ''ମହାତ୍ମା ଗାନ୍ଧି କୀ ଜୟ'' ''ଯତୀନ୍ଦ୍ରମୋହନ କୀ ଜୟ'' ଧ୍ୱନିମାନ ଦେବାରେ ଲାଗିଥିଲେ । ପୋଲିସ୍ ସେମାନଙ୍କ ଉପରେ ନିର୍ମମ ଲାଠି ପ୍ରହାର କରିଥିଲେ ଓ ବେଶ୍ ବହୁସଂଖ୍ୟକ ବ୍ୟକ୍ତିଙ୍କୁ ଆହତ କରି ଦେଇଥିଲେ ।

ଗିରଫ ହୋଇଥିବା ନେତାମାନଙ୍କୁ ଜେଲ୍‌କୁ ନିଆଗଲା । ସେମାନଙ୍କୁ ରାତିଟି ପାଇଁ ସେହିଠାରେ ରଖାଯିବାର କଥା । ଯତୀନ୍ଦ୍ରମୋହନଙ୍କୁ ଜାମିନ୍ ମିଳୁଥିଲା, ମାତ୍ର ସେ ରାଜି ହେଲେ ନାହିଁ । ଜେଲ୍ ଫାଟକ ଆଗରେ ବିରାଟ ଜନତା ସମବେତ ହୋଇ ଧ୍ୱନିମାନ ଦେଉଥାଆନ୍ତି । ଏତେ ଅପ୍ରତିରୋଧ୍ୟ ଭାବରେ ସେମାନଙ୍କ ପକ୍ଷରୁ ଦାବି କରାଗଲା ଯେ, ଯତୀନ୍ଦ୍ରମୋହନଙ୍କୁ କର୍ତ୍ତୃପକ୍ଷ ଜେଲ୍ ଫାଟକ ବାହାରକୁ ଆଣିବାକୁ ବାଧ ହୋଇଥିଲେ । ଗୋଟିଏ ଉଚ୍ଚ ଜାଗାରେ ଚଉକି ରଖାଗଲା ଓ ସେ ତାହାରି ଉପରେ ଠିଆହୋଇ ନିଜର ଅନୁଗାମୀମାନଙ୍କୁ ସ୍ଥିର ଓ ସୁଶୃଙ୍ଖଳିତ ହୋଇ ରହିବାକୁ ନିବେଦନ ଜଣାଇଥିଲେ । କିଛି ସମୟ ପରେ, ସେମାନଙ୍କର ପ୍ରିୟନେତା ଯତୀନ୍ଦ୍ରମୋହନଙ୍କର ଯେଉଁଠାରେ ବିଚାର ହେବାର ଥିଲା, ଅଧିକତର ସଂଖ୍ୟାରେ ଲୋକମାନେ ସେହି ବିଚାରାଳୟ-ଗୃହର ଚାରିପାଖରେ ଯାଇ ସମବେତ ହୋଇଥିଲେ । ସେଦିନ ଶନିବାର ଥାଏ, ଯତୀନ୍ଦ୍ରମୋହନଙ୍କୁ ବ୍ୟକ୍ତିଗତ ମୁଚାଲିକାରେ ଜାମିନ୍ ନେବାର ସୁଯୋଗ ଦିଆଗଲା । ମାତ୍ର ସିଏ ପୁନର୍ବାର ଅସମ୍ମତି ପ୍ରକାଶ କଲେ । ପରବର୍ତ୍ତୀ ସୋମବାର ପର୍ଯ୍ୟନ୍ତ ବିଚାର ମୁଲତୁବୀ ରହିଲା (ଜୁଲାଇ 4) । ନାୟକ ଏବଂ ସ୍ୱେଚ୍ଛାସେବକମାନଙ୍କର ଗିରଫର ପ୍ରତିବାଦରେ ସମଗ୍ର ସହର ହରତାଳ ପାଳନ କରିଥିଲା । ଚିଟାଗଙ୍ଗ ସହରରେ ଓ ତା'ର ଚଉପାଶରେ ଉତ୍ତେଜନା ଜମି ରହିଥାଏ । ଦୂରଦୂରାନ୍ତରୁ ଲୋକମାନେ ହଜାର ହଜାର ସଂଖ୍ୟାରେ ଆସିବାରେ ଲାଗିଥାନ୍ତି, କୋର୍ଟ୍ ହିଲ୍‌ରେ ରୁଣ୍ଡ ହୋଇ ନେତାମାନଙ୍କର ମୁକ୍ତି ଦାବି କରୁଥାନ୍ତି । ବିଚାରାଳୟର ହତା ମଧ ଜନାକୀର୍ଣ୍ଣ ହୋଇ ରହିଥାଏ । ଏହି ଅସଂଖ୍ୟ ମଣିଷଙ୍କର ମେଳାକୁ ସମ୍ଭାଳିବା ପୋଲିସ୍ ପକ୍ଷରେ ଅତ୍ୟନ୍ତ କଷ୍ଟକର ହେଉଥାଏ । ବିଚାରାଳୟର କାର୍ଯ୍ୟ ମଧ ବେଳେବେଳେ ବାଧାପ୍ରାପ୍ତ ହେଉଥାଏ ।

ଇତିମଧରେ ଚିଟାଗଙ୍ଗର ଘଟଣାବଳୀ ପ୍ରତିଧ୍ୱନିତ ହୋଇ କଲିକତାରେ ମଧ ତାହାର ଏକ ତାତ୍ପର୍ଯ୍ୟପୂର୍ଣ୍ଣ ପ୍ରତିକ୍ରିୟା ଆରମ୍ଭ ହୋଇ ଯାଇଥିଲା । ଜଣେ ନେତା ହିସାବରେ ଜନପ୍ରିୟ ହୋଇ ଉଠୁଥିବା ଆପଣାର ପ୍ରିୟ ସେନାପତି ଯତୀନ୍ଦ୍ରମୋହନଙ୍କର କୃତିତ୍ୱରେ ଦେଶବନ୍ଧୁ ଚିତ୍ତରଂଜନ ଗର୍ବ ଅନୁଭବ କରୁଥାନ୍ତି, ମାତ୍ର ଏକ ଭୟ ମଧ ତାଙ୍କୁ ଅତ୍ୟନ୍ତ ଚିନ୍ତିତ କରି ରଖିଥାଏ ଯେ, ଯତୀନ୍ଦ୍ରମୋହନଙ୍କ

ଅନୁପସ୍ଥିତିରେ ହୁଏତ ଉତ୍ତରୋତ୍ତର ଭାବରେ ଉତ୍ତେଜିତ ହୋଇ ଉଠୁଥିବା ଜନତା ଧୈର୍ଯ୍ୟ ହରାଇବସିବ ଏବଂ ହିଂସାଚରଣ କରି ପକାଇବ । ତେଣୁ ସେ ଶ୍ରୀମତୀ ସେନଗୁପ୍ତଙ୍କ ନାମରେ ଗୋଟିଏ ଜରୁରୀ ତାରବାର୍ତ୍ତା ପଠାଇ ଯତୀନ୍ଦ୍ରମୋହନଙ୍କୁ ଜାମିନରେ ଖଲାସ ହୋଇ ଲୋକମାନଙ୍କର ଭାବସ୍ରୋତକୁ ଶାନ୍ତ ଏବଂ ରଚନାତ୍ମକ ମାର୍ଗରେ ପରିଚାଳିତ କରିବା ନିମନ୍ତେ ପରାମର୍ଶ ଦେଇଥିଲେ । ଅତ୍ୟନ୍ତ କୁଣ୍ଠାର ସହିତ ଯତୀନ୍ଦ୍ରମୋହନ ଜାମିନ୍‌ରେ ଖଲାସ ହୋଇ ଆସିଲେ । ତାଙ୍କୁ ସେଥିଲାଗି ତିନିମାସ ପର୍ଯ୍ୟନ୍ତ ''ଶାନ୍ତି ରକ୍ଷା କରିବା'' ଲାଗି ଏକ ବ୍ୟକ୍ତିଗତ ଚୁକ୍ତିପତ୍ର ଦସ୍ତଖତ କରିବାକୁ ପଡ଼ିଲା । କାରାଗାରରୁ ମୁକ୍ତ ହେବା ପରେ ଯତୀନ୍ଦ୍ରମୋହନଙ୍କୁ ଏକ ବିରାଟ ଅଭ୍ୟର୍ଥନା ଦିଆ ଯାଇଥିଲା । ଏକ ସାଧାରଣ ସଭାରେ ଶ୍ରୀମତୀ ନେଲୀ ସେନଗୁପ୍ତ ସଭାପତିତ୍ୱ କରିଥିଲେ । ଇତି ମଧ୍ୟରେ ସେ ଜଣେ ଯୋଗ୍ୟ ସ୍ୱାମୀଙ୍କର ଯୋଗ୍ୟା ପତ୍ନୀରୂପେ ଏକ ସମୁଚିତ ଭୂମିକାରେ ଅବତୀର୍ଣ୍ଣ ହୋଇ ସାରିଥିଲେ । ଶ୍ରୀମତୀ ସେନଗୁପ୍ତ ସଭାରେ ଏକ ସଂକ୍ଷିପ୍ତ ଭାଷଣ ଦେଇ ମହାତ୍ମା ଗାନ୍ଧିଙ୍କର ଅସହଯୋଗ ଆନ୍ଦୋଳନରେ ସର୍ବମୂଳ କଥା ହୋଇ ରହିଥିବା ଅହିଂସାର ଆବଶ୍ୟକତା ସମ୍ବନ୍ଧରେ ସମବେତ ଜନତାକୁ ଆଉଥରେ ସ୍ମରଣ କରାଇ ଦେଇଥିଲେ । ଧର୍ମଘଟକାରୀ ମାନଙ୍କର ସାହାଯ୍ୟରେ ବ୍ୟୟିତ ହେବା ଲାଗି ସଭାରେ ଯତୀନ୍ଦ୍ରମୋହନଙ୍କୁ ଏକହଜାର ଟଙ୍କାର ଗୋଟିଏ ଥଳି ଭେଟି ଦିଆ ଯାଇଥିଲା ।

ରେଳବାଇରେ ଧର୍ମଘଟ ହୋଇଥିବାରୁ ଶାହଜହାଁ ଷ୍ଟିମରରେ ବସି ଶ୍ରୀଯୁକ୍ତ ଓ ଶ୍ରୀମତୀ ସେନଗୁପ୍ତ ଏହି ସମୟରେ ଅଳ୍ପଦିନ ସକାଶେ ଥରେ କଲିକତା ଆସିଥିଲେ (ଅଗଷ୍ଟ 1) । ଚାନ୍ଦପାଲ ଘାଟରେ ପହଞ୍ଚିବା ମାତ୍ରକେ କଲିକତାର ନାଗରିକମାନଙ୍କ ଠାରୁ ତାଙ୍କୁ ଏକ ଉଲ୍ଲସିତ ଅଭ୍ୟର୍ଥନା ଦିଆ ଯାଇଥିଲା । ଅସହଯୋଗ ଆନ୍ଦୋଳନକୁ ପ୍ରସାରିତ କରିନେବାରେ ତାଙ୍କର ପ୍ରଶଂସାଯୋଗ୍ୟ କୃତିତ୍ୱ ଏବଂ ଚିଟାଗଙ୍ଗରେ ଅନୁଭୂତ ହୋଇଥିବା ତାହାର ଅନୁସନ୍ଧନର ସମ୍ବାଦ କଲିକତାର ଖବରକାଗଜ ମାନଙ୍କର ପ୍ରଥମ ଧାଡ଼ିରେ ଏଡେଏଡେ ଅକ୍ଷରରେ ବାହାରିଲା । ଧର୍ମଘଟକାରୀ ଅସଂଖ୍ୟ ଲୋକଙ୍କର ସାହାଯ୍ୟ ପାଇଁ ଅର୍ଥ ସଂଗ୍ରହ କରିବା ହିଁ ଯତୀନ୍ଦ୍ରମୋହନଙ୍କର ଏଥର କଲିକତା ଆସିବାର ପ୍ରଧାନ ଉଦ୍ଦେଶ୍ୟ ଥିଲା । ତା' ସହିତ ସେ ଦେଶବନ୍ଧୁ, ଅନ୍ୟ ନେତୃସ୍ଥାନୀୟ ବ୍ୟକ୍ତି ଏବଂ ନିଜର ବନ୍ଧୁମାନଙ୍କୁ ଭେଟି ଉପସ୍ଥିତ ରାଜନୀତିକ ପରିସ୍ଥିତି ସମ୍ବନ୍ଧରେ ସେମାନଙ୍କ ସହିତ ପରାମର୍ଶ କରିବାକୁ ମଧ୍ୟ ଚାହୁଁଥିଲେ ।

ଏହି ସମୟରେ ଯତୀନ୍ଦ୍ରମୋହନଙ୍କୁ କଂଗ୍ରେସ କାର୍ଯ୍ୟକାରୀ କମିଟି ତରଫରୁ ଏକ ଆପତ୍ତିର ସମ୍ମୁଖୀନ ହେବାକୁ ପଡ଼ିଲା । କାର୍ଯକାରୀ କମିଟିର ଅନୁମତି ନନେଇ ସେ 144 ଧାରା ଭଙ୍ଗ କରିଥିଲେ, କମିଟି ସେଥିଲାଗି ଆପତ୍ତି ଉଠାଇଥିଲା । ବସ୍ତୁତଃ, ପରିସ୍ଥିତିର ସମ୍ମୁଖୀନ ହେବାକୁ ହିଁ ଯତୀନ୍ଦ୍ରମୋହନ ଚିଟାଗଙ୍ଗରେ ଆଇନ ଅମାନ୍ୟ ଆରମ୍ଭ କରିଥିଲେ ଏବଂ ସମଗ୍ର ଭାରତରେ ତାହା ଏହାର ସର୍ବପ୍ରଥମ ଦୃଷ୍ଟାନ୍ତ ଥିଲା । ନିଜର ସହକର୍ମୀମାନେ ତାଙ୍କୁ ଏଥିରେ ପୂର୍ଣ୍ଣ ସହଯୋଗ କରିଥିଲେ, ସେଥିଲାଗି ତାଙ୍କୁ ପ୍ରଶଂସା ମଧ୍ୟ କରିଥିଲେ । ଲୋକମାନଙ୍କର ଉତ୍ସାହକୁ କଦାପି ବିଚ୍ୟୁତ ହେବାକୁ ଦିଆଯାଇ ନ ଥିଲା । ବାକ୍ୟ ଏବଂ ଆଚରଣରେ ସଂପୂର୍ଣ୍ଣ ଭାବରେ ଅହିଂସାର ପାଳନ ହୋଇଥିଲା । ଦେଶବନ୍ଧୁ ଚିତ୍ତରଂଜନ ଦାସ ଯତୀନ୍ଦ୍ରମୋହନଙ୍କର ପକ୍ଷ ଗ୍ରହଣ କଲେ ଏବଂ କଂଗ୍ରେସ ଉଚ୍ଚ କର୍ତ୍ତୃପକ୍ଷଙ୍କୁ ଶ୍ରୀ ସେନଗୁପ୍ତଙ୍କ କାର୍ଯ୍ୟର ସବୁଚିତତା ସମ୍ବନ୍ଧରେ ଦୃଢ଼ବୋଧ ଆଣି ଦେଇଥିଲେ । ଏହିସବୁ କାର୍ଯ୍ୟଦ୍ୱାରା ଯତୀନ୍ଦ୍ରମୋହନ ଅସହଯୋଗ ଆନ୍ଦୋଳନ ଏବଂ ସେତେବେଳେ ଚାଲିଥିବା ଦେଶର ବୃହତ୍ତମ ଧର୍ମଘଟ ଉଭୟର ହିଁ ଅଗ୍ରଗତି ସାଧନ କରିଥିଲେ । ଧର୍ମଘଟଗୁଡ଼ିକ ଅତ୍ୟନ୍ତ ସ୍ୱତଃସ୍ଫୂର୍ତ୍ତ

ଭାବରେ ଘଟିଥିଲା ଏବଂ ତାହା ଏକଛତ୍ରବାଦୀ ଇଉରୋପୀୟ ଶକ୍ତି ସହିତ ସଂଗ୍ରାମ କରିବା ଲାଗି ଜନସାଧାରଣଙ୍କର ସଂକଳ୍ପକୁ ହିଁ ପ୍ରକଟ କରି ଦେଇଥିଲା । ସେନଗୁପ୍ତ ତାହାର ନେତା ହିସାବରେ ପରିସ୍ଥିତି ଯେତେବେଳେ ଯେଉଁ ଭଳି ଦାବି କରୁଥିଲା, ସେହି ଅନୁସାରେ ହିଁ ଆହ୍ୱାନ ଗୁଡ଼ିକର ସମ୍ମୁଖୀନ ହୋଇଥିଲେ ।

ଯେତେବେଳେ ଏପରି ଘଟିଲା ଯେ, ପ୍ରାୟ ସେହି ସମୟରେ ମହାତ୍ମା ଗାନ୍ଧି, ମୌଲାନା ମହମ୍ମଦ ଅଲ୍ଲିଙ୍କୁ ସଙ୍ଗରେ ନେଇ ଅସହଯୋଗ ଆନ୍ଦୋଳନର ଅଗ୍ରଗତିକୁ ପର୍ଯ୍ୟବେକ୍ଷଣ କରିବାପାଇଁ ଏକ ସମ୍ପୂର୍ଣ୍ଣ ଭାରତ ଗସ୍ତରେ ବାହାରିଥିଲେ । ବଙ୍ଗ ପ୍ରଦେଶକୁ ସେ ଆପଣା କାର୍ଯ୍ୟକ୍ରମର ସର୍ବପ୍ରଧାନ ଅଂଶ କରି ରଖିଥିଲେ, କାରଣ ଏହିଠାରେ ହିଁ ଆନ୍ଦୋଳନ ଆପଣାର ସକଳ କ୍ଷେତ୍ରରେ ସବୁଠାରୁ ଅଧିକ ବେଗଶାଳିତା ସୃଷ୍ଟି କରିପାରିଥିଲା । ଜନଗଣ ଅଭୂତପୂର୍ବ ତ୍ୟାଗ ଓ କଷ୍ଟ ସ୍ୱୀକାର କରିଥିଲେ ଏବଂ ଶାସନକଳକୁ ପ୍ରାୟ ଅଚଳ କରି ଦେଇଥିଲେ । ଶିକ୍ଷାନୁଷ୍ଠାନଗୁଡ଼ିକ ଖାଲି ହେବାରେ ଲାଗିଥିଲା ଏବଂ ଏକ ଜାତୀୟ ବିଶ୍ୱବିଦ୍ୟାଳୟ ଆରମ୍ଭ କରିବା ପରି ରଚନାତ୍ମକ କାର୍ଯ୍ୟକ୍ରମମାନ ହାତକୁ ନିଆ ଯାଇଥିଲା । ବିଦେଶୀ ବସ୍ତ୍ରର ବୟକଟ ହୋଇଥିଲା, ଖଦି ଓ ଚରଖା ପ୍ରଭୃତିର ପ୍ରସାର କରା ଯାଇଥିଲା । ବଙ୍ଗଳାର ଅନ୍ୟାନ୍ୟ ସବୁ ସ୍ଥାନ ମଧ୍ୟରୁ ତାଙ୍କର ଯାତ୍ରାକ୍ରମରେ ଚିଟାଗଙ୍ଗ ଏକ 'ଅବଶ୍ୟ ଦର୍ଶନୀୟ'ର ତାଲିକା ମଧ୍ୟରେ ଅନ୍ତର୍ଭୁକ୍ତ ହୋଇ ରହିଥିଲା ।

### ଚିଟାଗଙ୍ଗରେ ଗାନ୍ଧିଜୀ

**ଅଗଷ୍ଟ** 31 ତାରିଖରେ ମହାତ୍ମାଜୀ, ମୌଲାନା ଏବଂ ଦଳର ଅନ୍ୟମାନେ ଚିଟାଗଙ୍ଗରେ ଆସି ପହଞ୍ଚିଲେ । ସେନଗୁପ୍ତ ଭବନରେ ଅଳ୍ପ ସମୟ ବିଶ୍ରାମ ନେବା ପରେ ଓ ପରିସ୍ଥିତି ବିଷୟରେ ମୋଟାମୋଟି ଓ୍ୱାକିବ୍‌ହାଲ୍ ହୋଇଯିବା ପରେ ଗାନ୍ଧିଜୀ ଏବଂ ମୌଲାନା ଦେଶପ୍ରିୟଙ୍କ ସହିତ ମୁକ୍ତ ସଭାସ୍ଥଳରେ ଯାଇ ପହଞ୍ଚିଲେ । (ସେହି ଦିନଠାରୁ ସ୍ଥାନଟିର ନାମ ଗାନ୍ଧି ମଇଦାନ ରହିଛି) ସେଠାରେ ଆଗରୁ ଏକ ଜନସମୁଦ୍ର ଅପେକ୍ଷା କରି ରହିଥିଲା । ଲୋକମାନଙ୍କର ହାର୍ଦ୍ଦିକ ଅଭ୍ୟର୍ଥନା ଦ୍ୱାରା ଅଭିଭୂତ ହୋଇ ଗାନ୍ଧିଜୀ ଓ ମହମ୍ମଦ ଅଲ୍ଲି ସେମାନଙ୍କର ଶୋଷଣରେ ମୁକ୍ତି ଲାଗି ଏଭଳି ଅଗ୍ନିମୟ ଉତ୍ସାହ ପାଇଁ ତଥା ଯତୀନ୍ଦ୍ରମୋହନ ଓ ଅନ୍ୟାନ୍ୟ କଂଗ୍ରେସ କର୍ମୀ ଏବଂ ନେତାଙ୍କର ଅଦ୍ଭୁତ ସଂଗଠନ ଶକ୍ତି ପାଇଁ ଚିଟାଗଙ୍ଗକୁ ଧନ୍ୟବାଦ ଅର୍ପଣ କରିଥିଲେ । ଅସହଯୋଗ ଆନ୍ଦୋଳନରେ ସଫଳତାର ଉଜ୍ଜ୍ୱଳତମ ଦୃଷ୍ଟାନ୍ତ ପ୍ରଦର୍ଶନ କରିଥିବା ଏହି ଉତ୍ତରପୂର୍ବ କୋଣରେ ଅବସ୍ଥିତ ଭୂମିର ଆଦର୍ଶକୁ ଅନୁକରଣ କରିବାଲାଗି ସେମାନେ ପ୍ରକାଶ୍ୟ ଭାବରେ ସମଗ୍ର ଦେଶକୁ ନିବେଦନ କରିଥିଲେ । ଚିଟାଗଙ୍ଗ ପରିଦର୍ଶନ ଗାନ୍ଧିଜୀଙ୍କ ଉପରେ ଗଭୀର ପ୍ରଭାବ ପକାଇଥିଲା ଏବଂ ସେଠାରୁ ଫେରିଯାଇ ସେ 'ୟଙ୍ଗ ଇଣ୍ଡିଆ'ରେ 'ଚିଟାଗଙ୍ଗ ସମସ୍ତଙ୍କ ଆଗରେ' ଏବଂ 'ଚିଟାଗଙ୍ଗର ଭକ୍ତି' ଶୀର୍ଷକରେ ଦୁଇଟି ପ୍ରଶଂସାତ୍ମକ ଲେଖା ଲେଖିଥିଲେ । ଏହାଫଳରେ ପ୍ରାୟ ରାତାରାତି ଭାରତବର୍ଷର ରାଜନୀତିକ ମାନଚିତ୍ରରେ ଚିଟାଗଙ୍ଗ ଏକ ସ୍ଥାନ ଅଧିକାର କରିପାରିଥିଲା ଏବଂ ଚିଟାଗଙ୍ଗର ତରୁଣ ନେତା ଯତୀନ୍ଦ୍ରମୋହନଙ୍କୁ ମଧ୍ୟ ସ୍ୱରାଜ ଆନ୍ଦୋଳନର ଅଖିଳ ଭାରତୀୟ ପୁରୋଗାମୀମାନଙ୍କର ଗହଣରେ ଜଣେ ସର୍ବପ୍ରଧାନ ନାୟକରୂପେ ଦେଖିବାକୁ ଆରମ୍ଭ କଲେ ।

ଏହି ସମୟରେ ରେଳବାଇ ଧର୍ମଘଟ ଏକ ମୀମାଂସକ ପର୍ଯ୍ୟାୟରେ ଆସି ପହଞ୍ଚିଥିଲା । ଧର୍ମଘଟ ଆରମ୍ଭ ହେବା ତିନିମାସରୁ ଊର୍ଦ୍ଧ୍ୱ ହୋଇ ଯାଇଥାଏ । ଏକ ପକ୍ଷରେ 15000 ଧର୍ମଘଟକାରୀ ଆପଣା

ପ୍ରତିରୋଧର ପ୍ରାୟ ଶେଷ ଭାଗରେ ଆସି ପହଞ୍ଚି ଯାଇଥାନ୍ତି, ସେମାନଙ୍କର ତିଷ୍ଠି ରହିବାର ସାଧନଗୁଡ଼ିକ ଅତ୍ୟନ୍ତ କ୍ଷୀପ୍ର ଭାବରେ ସରି ଆସୁଥାଏ, ଏବଂ ଅପର ପକ୍ଷରେ, ଦୀର୍ଘକାଳ ଧରି ଚାଲୁଥିବା ଏହି ଧର୍ମଘଟଦ୍ୱାରା ଅତ୍ୟନ୍ତ ଉତ୍ତେଜିତ ହୋଇ ରେଳବାଇ କର୍ତ୍ତୃପକ୍ଷ ମଧ୍ୟ ନୂତନ ଲୋକମାନଙ୍କୁ ମନୋନୟନ କରିବାକୁ ଆରମ୍ଭ କରୁଥାନ୍ତି । ଧର୍ମଘଟକାରୀ ମାନଙ୍କର ମନୋବଳ କ୍ରମଶଃ ନିମ୍ନରୁ ନିମ୍ନତର ହେବାରେ ଲାଗିଥାଏ । ଏତେ ଲୋକଙ୍କ ପାଇଁ ବିକଳ୍ପ କର୍ମମାନ ଯୋଗାଇବା ମଧ୍ୟ କଦାପି ସମ୍ଭବ ହେବ ନାହିଁ । ତେଣୁ ଯେକୌଣସି ପ୍ରକାରେ ଏହାର ଏକ ସମାଧାନ ହୋଇଯିବା ଅତ୍ୟାବଶ୍ୟକ ଥିଲା । ହଜାର ହଜାର ଶ୍ରମିକଙ୍କର ଭବିଷ୍ୟ ସହିତ ସଂଶ୍ଳିଷ୍ଟ ହୋଇ ରହିଥିବା ଏହି ସୁଦୀର୍ଘ-କାଳବ୍ୟାପୀ ଧର୍ମଘଟରୁ ଉପୁଜିଥିବା ସମସ୍ୟାଗୁଡ଼ିକୁ ଗମ୍ଭୀର ଭାବରେ ପର୍ଯ୍ୟାଲୋଚନା କରି ଦେଖିବା ସକାଶେ ମହାତ୍ମା ଗାନ୍ଧି, ସେନଗୁପ୍ତ ଏବଂ ଚିଟାଗଙ୍ଗର ଅନ୍ୟାନ୍ୟ ନେତୃବୃନ୍ଦ ଏକତ୍ର ଚିନ୍ତା କରିବାକୁ ଲାଗିଲେ । ଯେଉଁମାନେ ଫେରିଯାଇ କାର୍ଯ୍ୟରେ ଯୋଗ ଦେବାକୁ ଇଚ୍ଛା କରୁଥିଲେ, ସେମାନଙ୍କୁ ତାହା କରିବାଲାଗି ଅନୁମତି ଦିଆଗଲା । ଧର୍ମଘଟର ନେତାମାନଙ୍କୁ ଅବଶ୍ୟ ପୁନଃନିଯୁକ୍ତି ଦିଆଯାଇ ନ ଥିଲା ଏବଂ ସେମାନଙ୍କୁ ପ୍ରୋଭିଡେଣ୍ଟ ଫଣ୍ଡ ଓ ବୋନସ୍ ପ୍ରଭୃତି ସେମାନଙ୍କର ଅନ୍ୟାନ୍ୟ ସୁଯୋଗରୁ ମଧ୍ୟ ବଞ୍ଚିତ କରାଗଲା । ଏମାନଙ୍କ ମଧ୍ୟରୁ କେତେଜଣ କୌଣସି ବ୍ୟବସାୟ ଆରମ୍ଭ କରିବାକୁ ପ୍ରସ୍ତୁତ ଥିଲେ, ଆଉ କେତେଜଣ ଜାତୀୟ ରଚନାତ୍ମକ କାର୍ଯ୍ୟରେ ମଧ୍ୟ ଆସି ଭାଗ ନେଲେ । ଏଠାରେ ଦୁଇଜଣଙ୍କର ନାମ ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ । ଜଣେ ହେଉଛନ୍ତି ବିପିନ ବିହାରୀ ଘୋଷ (ଚିଟାଗଙ୍ଗ ଅସ୍ତ୍ରାଗାର ମୋକଦ୍ଦମାରେ ପ୍ରଖ୍ୟାତ ଏବଂ ପରେ ଜଣେ ଖ୍ୟାତନାମା ରାଜନୀତିକ ନେତା ଗଣେଶ ଘୋଷଙ୍କର ବାପା) ଏବଂ ଆଉଜଣେ ହେଉଛନ୍ତି କ୍ଷିତୀଶଚନ୍ଦ୍ର ଗାଙ୍ଗୁଲି । ଶ୍ରୀ ଗାଙ୍ଗୁଲି ତା'ପରେ ଶେଷ ପର୍ଯ୍ୟନ୍ତ ଜଣେ ରାଜନୀତିକ ସହକାରୀ ରୂପେ ଦେଶପ୍ରିୟଙ୍କ ସାଙ୍ଗରେ ରହିଥିଲେ ।

### ପ୍ରଥମ କାରାଦଣ୍ଡ

ଯତୀନ୍ଦ୍ରମୋହନଙ୍କର ଜାମିନ ମିଆଦ ପୂରିଗଲା ପରେ (ସେପ୍ଟେମ୍ବର 24, 1921)ଠିକ୍ ତହିଁ ଆରଦିନ ପାହାଡ଼ତାଲି ଦଙ୍ଗାରେ ସେ ଅଂଶଗ୍ରହଣ କରିଥିଲେ ବୋଲି ବିଚିତ୍ର ଅଭିଯୋଗମାନ ଅଣାଯାଇ ତାଙ୍କୁ ପୁନର୍ବାର ଗିରଫ କରି ନିଆଯାଇଥିଲା । ଏଥର ସେ ଜାମିନ୍ ନେବାକୁ ଅସ୍ୱୀକାର କଲେ ଏବଂ କାରାରୁଦ୍ଧ ହେଲେ । ତାଙ୍କ ବିରୋଧରେ ଅଣାଯାଇଥିବା ଅଭିଯୋଗମାନ ପ୍ରମାଣିତ ହୋଇ ପାରିଲା ନାହିଁ । ତେଣୁ, ଅକ୍ଟୋବର 4 ତାରିଖ ଦିନ ପ୍ରଥମ ବିଚାରଟି ହିଁ ବିଫଳ ହେଲା ଏବଂ ଅନ୍ୟ ନେତାମାନଙ୍କ ସହିତ ତାଙ୍କୁ ମୁକ୍ତ କରି ଦିଆଗଲା । ଆଦୌ କୌଣସି ପ୍ରତ୍ୟକ୍ଷ କାରଣ ନ ଥାଇ 114 ଧାରା ଭଙ୍ଗ କରି ନିଜ ନେତୃତ୍ୱରେ ଏକ ଶୋଭାଯାତ୍ରା ବାହାର କରିଥିବାର ଅଭିଯୋଗରେ ଅକ୍ଟୋବର 20 ତାରିଖରେ ସେମାନଙ୍କୁ ପୁଣି ଗିରଫ କରାଗଲା ଓ ଜେଲ୍‌ଦଣ୍ଡ ଦିଆଗଲା । ଯତୀନ୍ଦ୍ରମୋହନ ତିନିମାସ ସଶ୍ରମ କାରାଦଣ୍ଡରେ ଦଣ୍ଡିତ ହେଲେ । ଅସହଯୋଗ ଆନ୍ଦୋଳନରେ ଏହା ହେଉଛି ତାଙ୍କର ସର୍ବପ୍ରଥମ କାରାବରଣ । ସେହିଦିନ ସନ୍ଧ୍ୟାରେ ଅନ୍ୟ ସହକର୍ମୀମାନଙ୍କ ସହିତ ଯତୀନ୍ଦ୍ରମୋହନଙ୍କୁ ଚିଟାଗଙ୍ଗରୁ କଲିକତାର ଆଲିପୁର କେନ୍ଦ୍ର ଜେଲ୍‌କୁ ନିଆଯାଇଥିଲା । ନେତାମାନଙ୍କୁ କାରାଦଣ୍ଡର ଆଦେଶ ହେବାରୁ ଚିଟାଗଙ୍ଗର ଲୋକମାନେ ଅତ୍ୟନ୍ତ ମର୍ମାହତ ହୋଇ ପଡ଼ିଥିଲେ ଏବଂ ସେମାନଙ୍କୁ ଜିଲ୍ଲା ଭିତରୁ ବାହାରକୁ ନେଇ ନିଆଗଲା ବୋଲି ମଧ୍ୟ ଅଧିକ ମର୍ମାହତ ହେଲେ । ନେତାମାନଙ୍କର ଦର୍ଶନ

ଲାଗି ଓ ସେମାନଙ୍କୁ ଏକ ବିରାଟ ସାଧାରଣ ବିଦାୟ ସଂବର୍ଦ୍ଧନା ଜଣାଇବା ପାଇଁ ଏକ ବିରାଟ ଜନତା ରେଳଷ୍ଟେସନ ଆଡ଼କୁ ଅଗ୍ରସର ହୋଇଥିଲା । ପ୍ରବଳ ଉତ୍ତେଜନାରେ ଶୋଭାଯାତ୍ରାଟି ଆଗକୁ ଆଗକୁ ଯାଉଥାଏ, ବାଟଯାକ ବିକ୍ଷୋଭ ପ୍ରଦର୍ଶନ ହେଉଥାଏ ଏବଂ ଧ୍ୱନିମାନ ଦିଆ ଯାଉଥାଏ । ପରେ ଜଣାପଡ଼ିଲା ଯେ, ବାଟରେ ଏକ ଅସୁବିଧାର ସୃଷ୍ଟି କରି ଅସହଯୋଗ ଆନ୍ଦୋଳନ ଉପରେ ଏକ କଠୋର ଆଘାତ ଦେବା ଲାଗି ସରକାରୀ କର୍ତ୍ତାମାନଙ୍କର ଏକ ପ୍ରଚ୍ଛନ୍ନ ହାତ ରହିଥିଲା । ଜନତା ଷ୍ଟେସନର ହତା ଭିତରେ ପ୍ରବେଶ କରିବାକୁ ଯାଉଛି, ଏହି ସମୟରେ ଦଳେ ଗୁର୍ଖା ସୈନ୍ୟ (ସେମାନଙ୍କୁ ସେଠାରେ ଆଗରୁ ରଖାଯାଇଥିଲା) ଉତ୍ତେଜିତ ଅଥଚ ସମ୍ପୂର୍ଣ୍ଣ ଶାନ୍ତିପୂର୍ଣ୍ଣ ଜନତା ଉପରେ ଆସି ଚଢ଼ାଉ କରିଥିଲେ । ଜନୈକ କଂଗ୍ରେସ ନେତା ପ୍ରସନ୍ନ କୁମାର ସେନ ଉକ୍ତ ଘଟଣାର ଏକ ବିସ୍ତୃତ ବିବରଣୀ ମହାତ୍ମା ଗାନ୍ଧିଙ୍କ ପାଖକୁ ପଠାଇଥିଲେ ଏବଂ ତାହା 1921 ନଭେମ୍ବର 3 ତାରିଖରେ 'ୟଙ୍ଗ ଇଣ୍ଡିଆ'ରେ ବାହାରିଥିଲା:

''ଲୋକମାନେ ସଂପୂର୍ଣ୍ଣ ଭାବରେ ଅହିଂସ ରହିଥିଲେ ମଧ ଗୁର୍ଖାମାନେ ସେମାନଙ୍କ ଉପରେ ଆକ୍ରମଣ କରିଥିଲେ । ନେତୃବୃନ୍ଦ, ସ୍ୱେଚ୍ଛାସେବକ ଏବଂ ବାହାରର ଆଉ କେତେଜଣଙ୍କ ଉପରେ ମନଇଚ୍ଛା 144 ଧାରା ବଳରେ ସମନ ଜାରି କରିଦେଇ ସରକାରୀ ଅମଲାତନ୍ତ୍ର ଆପଣାର ମୁଖରକ୍ଷା କରିବାଲାଗି ଏକ ଭବ୍ୟ ଉପାୟର ଉଦ୍ଭାବନ କରିଛନ୍ତି । ଗତ 20 ତାରିଖ ଦିନ ଯେଉଁମାନେ ଶୋଭାଯାତ୍ରାରେ ଯୋଗ ଦେଇଥିଲେ, ସେମାନେ ପୋଲିସ୍ ଉପରକୁ ଟେକା ପକାଇଥିଲେ ଓ ଅନ୍ୟ ହିଂସାଚରଣମାନ କରିଥିଲେ, - ଏହି କାରଣରୁ ହିଁ ଅମଲାତନ୍ତ୍ର ସେମାନଙ୍କୁ ସାଧାରଣ ରାସ୍ତା ଉପରେ କୌଣସି ଶୋଭାଯାତ୍ରା ବାହାର କରିବାକୁ ବା ସେଥିରେ ଯୋଗ ଦେବାକୁ ନିଷିଦ୍ଧ କରି ଦେଇଛନ୍ତି ।''

ଗିରଫ ହୋଇଥିବା ବ୍ୟକ୍ତିମାନଙ୍କ ମଧରେ ଅଶୀବର୍ଷ-ବୟସ୍କ ମୁସ୍‌ଲିମ୍ ନେତା ଶେଖ-ଏ-ଚାଟଗାଁଓ ମୌଲବୀ କାସିମ୍ ଅଲ୍ଲି ରହିଥିଲେ, କାଳୀଶଙ୍କର ଚକ୍ରବର୍ତ୍ତୀ ଏବଂ 'ଜ୍ୟୋତି' ପ୍ରତିକାର ବର୍ଷୀୟାନ ସମ୍ପାଦକ ସୁଖେନ୍ଦୁ ବିକାଶ ସେନଗୁପ୍ତ, ମହମ୍ମଦ ସିରାଜୁଲ୍ ହକ୍ ଏବଂ ଜନୈକ ଲୋକପ୍ରିୟ କଂଗ୍ରେସ କର୍ମୀ ପ୍ରେମାନନ୍ଦ ଦତ୍ତ ମଧ ରହିଥିଲେ । ପରେ ପ୍ରମାଣ ମିଳିଲା ଯେ, ପ୍ରେମାନନ୍ଦ ଦତ୍ତ ସେଠାରେ ସେଦିନ ଉପସ୍ଥିତ ବି ନ ଥିଲେ, ତେଣୁ ତାଙ୍କୁ ଛାଡ଼ି ଦିଆ ଯାଇଥିଲା । ଅନ୍ୟମାନଙ୍କୁ ଦଙ୍ଗା କରିବା, କାରାଦଣ୍ଡରେ ଦଣ୍ଡିତ ହୋଇଥିବା ନେତାମାନଙ୍କୁ ପୋଲିସ୍ ହାତରୁ ଛଡ଼ାଇ ନେବାକୁ ଚେଷ୍ଟା କରିବା ପ୍ରଭୃତି ବିଭିନ୍ନ କାରଣରେ ଅଭିଯୁକ୍ତ କରାଯାଇଥିଲା । ସେମାନଙ୍କ ନାମରେ ପ୍ରାୟ ଛଅମାସ କାଳ ଫୌଜଦାରୀ ମୋକଦ୍ଦମାମାନ ଚାଲିଲା ଏବଂ ଶେଷରେ ସେମାନଙ୍କୁ ବିଭିନ୍ନ ମିଆଦର କାରାଦଣ୍ଡରେ ଦଣ୍ଡିତ କରା ଯାଇଥିଲା । ଏଭଳି ସୁପରିଚିତ ନାଗରିକମାନଙ୍କ ବିରୋଧରେ ସରକାରୀ କର୍ତ୍ତାମାନେ ଏପରି ସ୍ପଷ୍ଟତଃ ମିଥ୍ୟା ମୋକଦ୍ଦମାମାନ ଆଣି ଠିଆ କରାଇଦେଇ ପାରିଲେ, ଜାଣିବା ଶୁଣିବା ଲୋକେ ସେଥିରେ ବିସ୍ମିତ ହୋଇଯାଇଥିଲେ ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ, କଲିକତା ସମେତ ଦେଶର ଅଧିକାଂଶ ଅନ୍ୟାନ୍ୟ କେନ୍ଦ୍ର ତୁଳନାରେ ଚିଟାଗଙ୍ଗରେ ହିଁ ଅନେକ ଆଗରୁ ଅସହଯୋଗ ଆନ୍ଦୋଳନ ଏବଂ ତାହାପ୍ରତି ଜନଗଣଙ୍କର ସଂପୂର୍ଣ୍ଣ ସମର୍ଥନ ଜ୍ଞାପନ ପ୍ରକୃତରେ ଏକ ଗତିଶୀଳତା ଲାଭ କରିଥିଲା । 144 ଧାରାର ନିଷେଧାଜ୍ଞା ଭଙ୍ଗ କରିଥିବା ଯତୀନ୍ଦ୍ରମୋହନ ସେନଗୁପ୍ତ ଓ ଅନ୍ୟ ନେତାମାନଙ୍କୁ ଗିରଫ କରି ନିଆ ଯାଇଥିଲା । ଏହା ହେଉଛି 1921 ମସିହା ମଧଭାଗର ଘଟଣା । ଏପରିକି କଲିକତାରେ

ଅନେକ ମାସ ପୂର୍ବରୁ ନେଲୀ ସେନଗୁପ୍ତଙ୍କ ନେତୃତ୍ୱରେ ନାରୀମାନେ ଏହି ଆନ୍ଦୋଳନରେ ଅଂଶଗ୍ରହଣ କରିଥିଲେ । ପ୍ରକୃତରେ କହିବାକୁ ଗଲେ, 1921 ମସିହା ନଭେମ୍ବର-ଡିସେମ୍ବର ମାସରେ ବ୍ରିଟିଶ୍ ଯୁବରାଜଙ୍କର ଭାରତ ଆଗମନର ପ୍ରତିବାଦ, ବିଦେଶୀ ଲୁଗାର ବୟକଟ ଏବଂ ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକ ଉପରେ ଜାରି ହୋଇଥିବା ନିଷେଧାଜ୍ଞା ଫଳରେ ଦେଶବ୍ୟାପୀ ଯେଉଁ ହରତାଳର ଡାକରା ଦିଆଗଲା, ସେତିକିବେଳେ ଯାଇ କଲିକତାକୁ ସେହି ଅଗ୍ନି ସଂକ୍ରାମିତ ହୋଇ ଆସିଥିଲା । କଲିକତାରେ ପ୍ରାୟ ବର୍ଷ ଶେଷବେଳକୁ ଯାଇ ବାସନ୍ତୀ ଦେବୀ, ଅନ୍ୟ ଅନେକ ମହିଳା ତଥା ଦେଶବନ୍ଧୁ ଦାଶ ଗିରଫ ହୋଇଥିଲେ । 1921ଜୁଲାଇ 21 ତାରିଖରେ ହିଁ ଯେତେବେଳେ ଯତୀନ୍ଦ୍ରମୋହନ ଏବଂ ଅନ୍ୟମାନଙ୍କ ଉପରେ ଏକ ନିଷେଧାଜ୍ଞା ଜାରି ହୋଇଥିଲା, ଜଣେ ଶକ୍ତିଶାଳୀ ବକ୍ତାରୂପେ ନେଲୀ ସେନଗୁପ୍ତ ସାଧାରଣ କ୍ଷେତ୍ରରେ ଆସି ଉଭା ହୋଇଥିଲେ ।

ଯତୀନ୍ଦ୍ରମୋହନଙ୍କର ଗିରଫ ପରେ ଅନ୍ୟ ସ୍ଥାନୀୟ ନେତାମାନେ ସାଧାରଣ କ୍ଷେତ୍ରରେ ଆସି ନେତୃତ୍ୱ ଦେଇଥିଲେ । ଆନ୍ଦୋଳନର ରଜ୍ଜୁଗୁଡ଼ିକୁ ହାତରେ ଗ୍ରହଣ କରି ନେବାଲାଗି ନେଲୀ ସେନଗୁପ୍ତ ବାହାରି ଆସିଥିଲେ । ତାଙ୍କପରେ ଅତୀବ ଉତ୍ସାହରେ ଆହୁରି ଅନ୍ୟ ମହିଳାମାନେ ଆସିଲେ । ସେମାନଙ୍କ ମଧ୍ୟରେ କୁସୁମ କୁମାରୀ ସେନଗୁପ୍ତ, ସ୍ୱର୍ଣ୍ଣଲତା ଦେବୀ ଓ ଆଉ କେତେଜଣ ମହିଳା ମଧ୍ୟ ଥିଲେ । ସେମାନେ ଖଦି କାର୍ଯ୍ୟକ୍ରମର ପ୍ରସାର କରି ବାହାରିଲେ ଏବଂ ରଚନାତ୍ମକ କାର୍ଯ୍ୟର ପ୍ରଚାର କଲେ । ଅଚିରେ ନେଲୀ ସେନଗୁପ୍ତଙ୍କର କାର୍ଯ୍ୟଗୁଡ଼ିକୁ ବନ୍ଦ କରି ଦେବାପାଇଁ ତାଙ୍କ ଉପରେ 144 ଧାରା ଅନୁଯାୟୀ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କର ନିଷେଧାଜ୍ଞା ଜାରି ହୋଇଗଲା । ମାତ୍ର ସିଏ ସେହି ନିଷେଧାଜ୍ଞା ମାନ୍ୟ କରିବାକୁ ବାରଣ କରିଦେଲେ ଓ ଆପଣାର କାର୍ଯ୍ୟକୁ ଅବ୍ୟାହତ ରଖିଲେ । ଜିଲ୍ଲା ମାଜିଷ୍ଟ୍ରେଟ୍ ମିଷ୍ଟର ଷ୍ଟ୍ରଙ୍ଗ୍‌ଙ୍କ ନିକଟକୁ ସିଏ କଡ଼ା ଭାଷାରେ ଖଣ୍ଡେ ପ୍ରତିବାଦପତ୍ର ଲେଖିଲେ; ''ଜନସାଧାରଣଙ୍କର ଯାତାୟାତରେ ବାଧା ସୃଷ୍ଟି କରିବା'' ଓ ''ଲୋକମାନଙ୍କର ଶାନ୍ତିଭଙ୍ଗ କରିବା'' ପ୍ରଭୃତି ଅଭିଯୋଗରେ ପୋଲିସ୍ ତାଙ୍କୁ ଯେପରି ଅଭିଯୁକ୍ତ କରିଥିଲା, ସେହି ପତ୍ରରେ ସେ ତାହାର ଦୃଢ଼ ପ୍ରତିବାଦ କରିଥିଲେ । ଅବଶ୍ୟ ଜିଲ୍ଲା ମାଜିଷ୍ଟ୍ରେଟ୍ ଏହାର କୌଣସି ଜବାବ ଦେଇ ନ ଥିଲେ, ମାତ୍ର ଆଉ ଅଧିକ କିଛି କରିବାକୁ ମଧ୍ୟ ସାହସ କରି ନ ଥିଲେ ।

ଏହାର ଅଳ୍ପଦିନ ପରେ ବଙ୍ଗଳା ସରକାର ସ୍ୱେଚ୍ଛାସେବୀ ସଂଗଠନଗୁଡ଼ିକୁ ବେଆଇନ୍ ବୋଲି ଘୋଷଣା କରିଥିଲେ । ଡିସେମ୍ବର ମାସ ଅଧାବେଳକୁ ପ୍ରତାପଚନ୍ଦ୍ର ଗୁହରାୟ ଚିଟାଗଙ୍ଗରେ ପହଞ୍ଚି ଯାତ୍ରାମୋହନ ସେନ ହଲ୍‌ରେ ଏକ ସାଧାରଣ ସଭାରେ ବକ୍ତୃତା ଦେଇଥିଲେ( ଡିସେମ୍ବର 18, 1921 ) । ସେ ସେଠାରେ ଏକହଜାର ସ୍ୱେଚ୍ଛାସେବକ ସଂଗ୍ରହ କରିଥିଲେ, ଯେଉଁମାନେ କି ତହିଁ ଆରଦିନ କାରାବରଣ କଲେ । ଏମାନଙ୍କ ପରେ ଆହୁରି ଅନେକ ସେମାନଙ୍କର ପଦାଙ୍କ ଅନୁସରଣ କରିଥିଲେ ।

ଯତୀନ୍ଦ୍ରମୋହନଙ୍କ ବ୍ୟତୀତ ଆହୁରି ଅନେକ ଏପରି ନେତା ଓ ସ୍ୱେଚ୍ଛାସେବକ ମଧ୍ୟ ଥିଲେ, ଚିଟାଗଙ୍ଗ ଆନ୍ଦୋଳନରେ ଯେଉଁମାନଙ୍କର ଅବଦାନ ସେମାନଙ୍କର ଆଦର୍ଶ, ତ୍ୟାଗ, ସେବାଭାବନା ଏବଂ ଦୁଃଖବରଣ ଲାଗି ସମାନ ଭାବରେ ଉଲ୍ଲେଖଯୋଗ୍ୟ ହୋଇ ରହିଥିଲା । ସେମାନଙ୍କ ମଧ୍ୟରୁ ଅନେକେ ଭିନ୍ନ ଭିନ୍ନ ମିଆଦର କାରାଦଣ୍ଡ ଭୋଗ କରିଥିଲେ ଓ ଅନେକ କ୍ଷତି ସହ୍ୟ କରିଥିଲେ । ସେମାନଙ୍କର ଏକମାତ୍ର ଅପରାଧ ଥିଲା ଯେ, ସେମାନଙ୍କର ଅଟଳ ଦେଶଭକ୍ତି ରହିଥିଲା ଏବଂ ସ୍ୱାଧୀନତାର ସଂଗ୍ରାମରେ ସେମାନେ ନିଜକୁ ଉତ୍ସର୍ଗ କରି ଦେଇଥିଲେ । ଯତୀନ୍ଦ୍ରମୋହନଙ୍କ ସହିତ ପୂର୍ବରୁ ଏବଂ ପରେ ଯେଉଁମାନେ ଗିରଫ ହୋଇଥିଲେ ଏବଂ କାରାବରଣ କରିଥିଲେ, ଯେତେଦୂର

ମନେ ପଡୁଛି, ସେମାନେ ହେଉଛନ୍ତି, ମହିମଚନ୍ଦ୍ର ଦାସ, ତ୍ରିପୁରା ଚରଣ ଚୌଧୁରୀ, ଅଧ୍ୟାପକ ନୃପେନ୍ଦ୍ର ଚନ୍ଦ୍ର ବାନର୍ଜୀ, ଶେଖ-ଏ-ଖାଉଁ କାସିମ୍ ଅଲ୍ଲି, କୃପାଳ ଦାସ ଉଦାସୀ, ସ୍ୱାମୀ ଦୀନାନନ୍ଦ, ମୌଲବୀ ଅବଦୁଲ କରିମ୍, ଶାହ ବଦିଆଉଲ୍ ଆଲମ୍, ମୌଲାନା ମନିରଜ୍ଜାମନ୍ ଇସ୍ଲାମାବାଦୀ, କାଳୀଶଙ୍କର ଚକ୍ରବର୍ତ୍ତୀ, ଉମେଶଚନ୍ଦ୍ର ଗୁହ, ପ୍ରସନ୍ନ କୁମାର ସେନ, ଯାମିନୀ ମୋହନ ବସୁ, ରମେଶ ଚରଣ ରକ୍ଷିତ, ରତ୍ନେଶ୍ୱର ଚକ୍ରବର୍ତ୍ତୀ, ବରଦା ପ୍ରସାଦ ନନ୍ଦୀ, ଦ୍ୱିଜେନ୍ଦ୍ର ମୋହନ କୁଣ୍ଡୁ, ଗିରିଜା ଶଙ୍କର ଚୌଧୁରୀ, ମୋକ୍ଷଦା ରଞ୍ଜନ କାନୁନ୍‌ଗୋ ଏବଂ ରମଣୀ ରଞ୍ଜନ ଗୁପ୍ତ । ଏହି ସମୟରେ ଛଅ ହଜାର ସ୍ୱେଚ୍ଛାସେବକ ମଧ୍ୟ ଗିରଫ ହୋଇଥିଲେ । ଏମାନଙ୍କ ମଧ୍ୟରେ ଶହଶହ ତରୁଣ କଲେଜ ଛାତ୍ର ରହିଥିଲେ ଓ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ପୋଲିସ୍ ତଥା ସୈନ୍ୟବାହିନୀ ହାତରୁ ଏମାନେ ସମସ୍ତେ ଅକଥନୀୟ ଅତ୍ୟାଚାର ସହ୍ୟ କରିଥିଲେ ।

ନୂଆଖାଲି ଏବଂ ଫରିଦପୁର ଅଞ୍ଚଳରୁ ଯେଉଁ ନେତାମାନେ ଚିଟାଗଙ୍ଗ ଆସିଥିଲେ ଏବଂ ସାଧାରଣ ସଭାମାନଙ୍କରେ ଭାଷଣ ଦେଇ କାରାବରଣ କରିଥିଲେ ସେମାନେ ହେଉଛନ୍ତି ଡାକ୍ତର ପ୍ରତାପଚନ୍ଦ୍ର ଗୁହରାୟ, ଏବଂ ନରେନ୍ଦ୍ର ଚନ୍ଦ୍ର ଗୁହରାୟ । ଡାକ୍ତର ପ୍ରତାପ ଚନ୍ଦ୍ର ଗୁହରାୟ ସ୍ୱାଧୀନତା-ସଂଗ୍ରାମରେ ଜଣେ ପୁରୋଭାଗର ଯୋଦ୍ଧା ରୂପେ କଲିକତାରେ ଯତୀନ୍ଦ୍ରମୋହନଙ୍କର ସକ୍ରିୟ ସହକର୍ମୀ ହିସାବରେ ସର୍ବଦା କାର୍ଯ୍ୟ କରିଥିଲେ ଏବଂ ସ୍ୱାଧୀନତା ପରେ ସାଧାରଣ ଜୀବନରେ ଅନେକ ଉଚ୍ଚକୁ ଉଠିଥିଲେ । ଗୋଟିଏ ମିଆଦ ସକାଶେ ସେ ପଶ୍ଚିମବଙ୍ଗ ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ର ଚେୟାରମ୍ୟାନ୍ ଥିଲେ ।

ଯେଉଁସବୁ ଶିକ୍ଷାନୁଷ୍ଠାନ ଏହି ଆନ୍ଦୋଳନର ସମ୍ପର୍କରେ ଆଂଶିକ ଭାବରେ ଅଥବା ସଂପୂର୍ଣ୍ଣ ଭାବରେ ଆସିଥିଲେ ଓ କଷ୍ଟ ସହ୍ୟ କରିଥିଲେ, ସେଗୁଡ଼ିକ ହେଉଛନ୍ତି ନେସନାଲ୍ ହାଇସ୍କୁଲ, ଯାତ୍ରାମୋହନ ହାଇସ୍କୁଲ, ଓରିଏଣ୍ଟାଲ୍ ଏକାଡେମୀ, ମ୍ୟୁନିସିପାଲ୍ ହାଇସ୍କୁଲ ଓ ଅନ୍ୟ କେତୋଟି ।

ଚିଟାଗଙ୍ଗରେ ଯତୀନ୍ଦ୍ରମୋହନଙ୍କର ଜାତୀୟତାବାଦୀ କ୍ରିୟାଶୀଳତାର ଏହି ପ୍ରଥମ ପର୍ଯ୍ୟାୟରେ ଏକାଦିକ୍ରମେ କେତୋଟି ରଚନାତ୍ମକ କାର୍ଯ୍ୟକୁ ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ ବୋଲି କୁହାଯିବ । ଚିଟାଗଙ୍ଗକୁ ଦାରୁଣ ଦୁଃସମୟ ଦେଇ ଗତି କରିବାକୁ ହେଉଥିଲେ ମଧ୍ୟ (1921) ସେ ଏହି କାର୍ଯ୍ୟଗୁଡ଼ିକୁ ରାଜନୀତିକ ଜାଗରଣର ଏକ ମହତ୍ତ୍ୱପୂର୍ଣ୍ଣ ଅଂଶରୂପେ ସର୍ବଦା ଗୁରୁତ୍ୱ ଦେଉଥିଲେ । ବଙ୍ଗ ପ୍ରାଦେଶିକ ସମ୍ମିଳନୀର (ଏଥିରେ ବାସନ୍ତୀ ଦେବୀ ସଭାପତିତ୍ୱ କରିଥିଲେ) ଅଭ୍ୟର୍ଥନା ସମିତିର ମୁଖ୍ୟକର୍ତ୍ତା ରୂପେ ସେନଗୁପ୍ତ ଏହି କଥାଟିକୁ ସୂଚାଇ ଦେଇଥିଲେ । ତିଳକ ସ୍ୱରାଜ ପାଣ୍ଠିର ମୋଟ 50,000 ଟଙ୍କାର ଲକ୍ଷ୍ୟରୁ ଚିଟାଗଙ୍ଗ 29,000 ଟଙ୍କା ସଂଗ୍ରହ କରି ଦେଇଥିଲା ଏବଂ ଧର୍ମଘଟକାରୀ ଶ୍ରମିକମାନଙ୍କର ସାହାଯ୍ୟ ଲାଗି 50,000 ରୁ ଅଧିକ ଟଙ୍କା ଦେଇଥିଲା । ଏତଦ୍‌ବ୍ୟତୀତ, ବିଭିନ୍ନ ଗ୍ରାମ୍ୟ କେନ୍ଦ୍ରମାନଙ୍କରେ ହାତରେ ସୂତା କାଟିବା ଓ ଖଦି ଲୁଗା ବୁଣିବା ସକାଶେ ସୁବିଧାମାନ ଯୋଗାଇ ଦିଆ ଯାଇଥିଲା । ପ୍ରାୟ 20,000 ଅରଟ ଏବଂ 16,000 ତନ୍ତ ଚାଲୁଥିଲା । ଏହିସବୁ କେନ୍ଦ୍ର ମଧ୍ୟରୁ ଜରାଗଞ୍ଜ, ସୁଚିଆ, ସାବାଡ଼ିଆ, ସାତକନିଆ ଏବଂ ଦୁର୍ଗାପୁର କେନ୍ଦ୍ରଗୁଡ଼ିକ ସୂତାକଟା ଏବଂ ଲୁଗାବୁଣାର ପ୍ରସାର କାର୍ଯ୍ୟରେ ବ୍ୟାପକ କାର୍ଯ୍ୟ କରିଥିଲେ । ସୁଚିଆର ହାତକଟା ସୂତା କଲିକତାର ଖଦୀ-ପ୍ରତିଷ୍ଠାନରେ ମଧ୍ୟ ଖ୍ୟାତି ଅର୍ଜନ କରିଥିଲା ଓ ଏ ପ୍ରତିଷ୍ଠାନ ଚିଟାଗଙ୍ଗ ଗ୍ରାମ୍ୟଶାଖାଠାରେ ସୂତାକଟାର ଏକ କେନ୍ଦ୍ର ଖୋଲାଇଥିଲା । ଏହିସବୁ ନାନା କୃତିତ୍ୱ ସହିତ ଚିଟାଗଙ୍ଗର ଆନ୍ଦୋଳନ ଅଗ୍ରଗତିରେ ଅନେକଙ୍କୁ ଟପି ଯାଇଥିଲା । ବୟସ ଏବଂ ଜାତି ନିର୍ବିଶେଷରେ ବିରାଟ ଜନତା ଯତୀନ୍ଦ୍ରମୋହନଙ୍କ ପଛରେ ଏକ ଦୃଢ଼ ବ୍ୟୂହ ଗଠନ କରି ରଖିଥିଲା ଓ ଏଣିକି ତାଙ୍କୁ ''ଦେଶପ୍ରିୟ'' ନାମରେ ଅଭିହିତ କରିବାକୁ ଲାଗିଲା ।

## ଦ୍ୱିତୀୟ ସାମ୍ମୁଖ୍ୟର ପ୍ରସ୍ତୁତି- ସ୍ଥାନ: ଚିଟାଗଙ୍ଗ

ଅଦୂର ଭବିଷ୍ୟତରେ ଏକ ରାଜନୀତିକ ପରିବର୍ତ୍ତନ ହେବାକୁ ଯାଉଛି ବୋଲି ଚିଟାଗଙ୍ଗ ସମ୍ମିଳନୀ ଏକ ସୂଚନା ପ୍ରଦାନ କରିଥିଲା । ବସ୍ତୁତଃ ଦେଶବନ୍ଧୁ ଚିତ୍ତରଂଜନ ଯେଉଁ ବିଷୟରେ ବର୍ତ୍ତମାନ ଗମ୍ଭୀର ଭାବରେ ଚିନ୍ତା କରୁଥିଲେ, ଆଲିପୁର ଜେଲ୍ ଭିତରେ ସେ କାରାରୁଦ୍ଧ ହୋଇ ରହିଥିବା ସମୟରେ (ଫେବୃଆରୀ-ଅଗଷ୍ଟ, 1922) ମଧ୍ୟ ତାହାର ଏକ ପ୍ରତିଧ୍ୱନି ଶୁଣିବାକୁ ମିଳିଥିଲା । ଏପରିକି, ତାହା ପୂର୍ବରୁ ମଧ୍ୟ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେବା ସମୟରେ ''କାଉନ୍‌ସିଲ୍ ଭିତରକୁ ଯିବା'' ତାଙ୍କର ଏକ ବୃହଦ୍ ଯୋଜନା ହୋଇ ରହିଥିଲା । ସେତେବେଳେ (ସେପ୍ଟେମ୍ବର 1920) ଗାନ୍ଧିଜୀ କଂଗ୍ରେସର ଏକ ବିଶେଷ ଅଧିବେଶନରେ ଅସହଯୋଗ କାର୍ଯ୍ୟକ୍ରମଟିର ପ୍ରସ୍ତୁତ କରୁଥିଲେ ।

''ବର୍ଦ୍ଦୋଲିରେ ପଛକୁ ଘୁଞ୍ଚିଆସିବା'' ଦ୍ୱାରା ଯେଉଁ କଠିନ 'ଆଘାତ' ସହ୍ୟ କରିବାକୁ ପଡ଼ିଥିଲା ଓ ଯାହାଫଳରେ କି ଅସହଯୋଗ ତଥା ଆଇନ ଅମାନ୍ୟ ଆନ୍ଦୋଳନକୁ ବନ୍ଦ କରିଦେବାକୁ ହେଲା ଏବଂ ତା'ର ଅବ୍ୟବହିତ ପରେ ଗାନ୍ଧିଜୀଙ୍କୁ ଛଅବର୍ଷ କାରାଦଣ୍ଡର ଆଦେଶ ହେଲା, ସେଥିରୁ ଦେଶକୁ ମୁକୁଳାଇ ଆଣିପାରିବା ଲାଗି ଏକ ନିର୍ଦ୍ଦିଷ୍ଟ ମାର୍ଗର ସନ୍ଧାନ ନ ପାଇବା ପର୍ଯ୍ୟନ୍ତ ଚିତ୍ତରଂଜନଙ୍କର ଦେଶଭକ୍ତି ସତୃଷ୍ଣ ଆତ୍ମା ଆଦୌ ଶାନ୍ତ ହୋଇ ରହିପାରୁ ନ ଥିଲା ।

ଏହିପରି ଦାବି କରିବା କଦାପି ଅନୁଚିତ ହେବ ନାହିଁ ଯେ, କଲିକତା ଏହି ନୂତନ ପଦକ୍ଷେପଟିର ଐତିହାସିକ କେନ୍ଦ୍ର ହୋଇ ରହିଥିଲା ଓ ଚିତ୍ତରଂଜନଙ୍କ ମାଧ୍ୟମରେ ଏଥିରେ ନେତୃତ୍ୱ ଦେଉଥିଲେ ମଧ୍ୟ ଚିଟାଗଙ୍ଗରୁ ହିଁ ଆସନ୍ନ ସଂଗ୍ରାମଟି ଲାଗି ଆହ୍ୱାନ ଦେଇଥିଲା । ମହାତ୍ମାଜୀଙ୍କର ଅଗ୍ରଗାମୀ ମାର୍ଗଯାତ୍ରୀମାନଙ୍କ ମଧ୍ୟରେ ଜଣେ ହେଲେ ମଧ୍ୟ ଚିତ୍ତରଂଜନ ଅସହଯୋଗ ଆନ୍ଦୋଳନର ମୂଳ କାର୍ଯ୍ୟକ୍ରମଟି ବିରୋଧରେ ''ପତାକା ଉଡ଼ାଇ'' ବାହାରି ପଡ଼ିଥିଲେ ଏବଂ ଅତ୍ୟନ୍ତ ସାହସିକ ତଥା ନିର୍ଭୟ ଭାବରେ ସକଳ ପ୍ରତିକୂଳତା ସକାଶେ ପ୍ରସ୍ତୁତ ହୋଇ ଯାଇଥିଲେ । ଶେଷରେ କଂଗ୍ରେସ ମଧ୍ୟ ତାଙ୍କର ପ୍ରସ୍ତାବକୁ ଗ୍ରହଣ କଲା ଏବଂ ଆପଣାର କାର୍ଯ୍ୟକ୍ରମକୁ ଏକ ନୂତନ ଧାରା ପ୍ରଦାନ କରିଥିଲା । ଚିତ୍ତରଂଜନ ଦାଶ, ମୋତିଲାଲ ନେହେରୁ, ହାକିମ ଆଜମଲ୍ ଖାଁ, ଏନ୍.ସି. କେଲକାର, ବିଠଲ ଭାଇ ପଟେଲ ଓ ଅନ୍ୟମାନେ ବିଦ୍ରୋହ ଘୋଷଣା କରି ବାହାରି ଆସିଲେ ଏବଂ ପ୍ରାୟ ଚାରିବର୍ଷ କାଳ (1923-1927) କେନ୍ଦ୍ର ତଥା ପ୍ରାଦେଶିକ ସ୍ତରରେ ବିଧାନସଭା ମଧ୍ୟରେ ହିଁ ଏକ ଦ୍ୱିତୀୟ ସାମ୍ମୁଖ୍ୟ ସୃଷ୍ଟି କରି ସରକାରୀ ଅମଲାତନ୍ତ୍ର ସହିତ ସଂଗ୍ରାମରେ ଅବତୀର୍ଣ୍ଣ ହେବାଲାଗି ସ୍ୱରାଜ ପାର୍ଟି ଗଠନ କରିଥିଲେ । କ୍ରମେ ସ୍ୱାଧୀନତା ଲାଗି ଭାରତବର୍ଷର ସଂଗ୍ରାମରେ ଏହି ଦ୍ୱିତୀୟ ସାମ୍ମୁଖ୍ୟ ହିଁ ଏକମାତ୍ର ସାମ୍ମୁଖ୍ୟରେ ପରିଣତ ହୋଇଥିଲା ।

ବର୍ଦ୍ଦୋଲି ନିଷ୍ପତ୍ତି ପରେ ପରିସ୍ଥିତି ଅତ୍ୟନ୍ତ ମାନ୍ଦା ଓ ନୈରାଶ୍ୟପୂର୍ଣ୍ଣ ହୋଇ ପଡ଼ିଥିଲା । ସେତେବେଳେ ଅଧିକାଂଶ ନେତା ଜେଲ୍ ଭିତରେ ଥିଲେ । ଜାତୀୟ ଆନ୍ଦୋଳନ ପୂର୍ଣ୍ଣ ଭାବରେ ଥମି ଯାଇଥିଲା । ଯତୀନ୍ଦ୍ରମୋହନ ସେନଗୁପ୍ତ ଠିକ୍ ସେତିକିବେଳେ (ଜାନୁଆରୀ 1922) ଖଲାସ ହୋଇ ବାହାରକୁ ଆସିଥାନ୍ତି । ମାତ୍ର ସମଗ୍ର ବଙ୍ଗଳାର ଜଣେ ପୂର୍ଣ୍ଣ ନେତାରୂପେ ଗୁରୁତର ଦାୟିତ୍ୱଗୁଡ଼ିକୁ ଗ୍ରହଣ କରିବାଲାଗି ସେ ତଥାପି ତରୁଣ ହୋଇ ରହିଥାନ୍ତି । ସମସ୍ତେ ଅନୁଭବ କରିଥିଲେ ଯେ, ଅବସ୍ଥାଟିର ପର୍ଯ୍ୟାଲୋଚନା କରି ଏହି ସଂକଟ ମଧ୍ୟରୁ ଗୋଟିଏ ବାହାର କରିବାକୁ ସଂପୃକ୍ତ ସମସ୍ତଙ୍କର ଏକ ସମ୍ମିଳିତ ବୈଠକ ଡକାଯିବା ଏକାନ୍ତ ଆବଶ୍ୟକ । ପ୍ରାଦେଶିକ ସମ୍ମିଳନୀର ଏକ ଅଧିବେଶନ ଡକାଯାଉ ବୋଲି କେହି କେହି ପ୍ରସ୍ତାବ ଦେଲେ, କେହି ତାହାର ବିରୋଧ ମଧ୍ୟ କରିଥିଲେ । ଜିଲ୍ଲାର ନେତାମାନେ ଉଦାସୀନ ରହିଥିବା ପରି ମନେ ହେଉଥିଲା । ଯତୀନ୍ଦ୍ରମୋହନ ଆଗଭର ହୋଇ ଆସିଲେ ଏବଂ ତାଙ୍କ ନିଜ ଜିଲ୍ଲାର ସହର ଚିଟାଗଙ୍ଗଠାରେ ସମ୍ମିଳନୀ ଡାକିବାର ପ୍ରସ୍ତାବ ଦେଇଥିଲେ । ସେନଗୁପ୍ତଙ୍କର ଉଦ୍ୟମ ଫଳରେ ହିଁ ବାସନ୍ତୀ ଦେବୀ ସେହି ସମ୍ମିଳନୀର

ସଭାପତିରୂପେ ମନୋନୀତ ହେଲେ ଏବଂ ଅଧିକସଂଖ୍ୟକ ପ୍ରତିନିଧି ସେହି ନିଷ୍ପତ୍ତିକୁ ସମର୍ଥନ କରିଥିଲେ । ଆଉଗୋଟିଏ ଅନୁକୂଳ ଘଟଣା ହେଉଛି ଯେ, ଇତିମଧ୍ୟରେ ଯତୀନ୍ଦ୍ରମୋହନ କଂଗ୍ରେସ କାର୍ଯ୍ୟକାରୀ କମିଟିର ଜଣେ ସଭ୍ୟରୂପେ ମଧ୍ୟ ନିଯୁକ୍ତ ହୋଇ ସାରିଥିଲେ (ଜାନୁଆରୀ 1922) ।

ସେତେବେଳେ ଏକମାତ୍ର ଜନମଞ୍ଚ ରୂପେ ସକ୍ରିୟ ଥିବା ପ୍ରାଦେଶିକ ସମ୍ମିଳନୀର ଚିଟାଗଙ୍ଗ ଅଧିବେଶନରେ ତାଙ୍କର ସ୍ତ୍ରୀ ସଭାପତିତ୍ୱ କରିବାଲାଗି ନିର୍ବାଚିତ ହୋଇଛନ୍ତି ବୋଲି ଦେଶବନ୍ଧୁ ଅତ୍ୟନ୍ତ ପ୍ରୀତ ହୋଇଥିଲେ । ବାସନ୍ତୀ ଦେବୀ ମଧ୍ୟ ସାହସର ସହିତ ଦେଶବନ୍ଧୁଙ୍କର ଏହି ସୁଚିନ୍ତିତ ପ୍ରତିକ୍ରିୟାଟିକୁ ସମସ୍ତଙ୍କ ଆଗରେ ବ୍ୟକ୍ତ କରି ଦେଇଥିଲେ ଏବଂ ଏକଥା ମଧ୍ୟ କହିଥିଲେ ଯେ, ଏହି ସମ୍ମିଳନୀଟିକୁ ସମ୍ଭବ କରିବାରେ ପ୍ରକୃତରେ ଯତୀନ୍ଦ୍ରମୋହନ ହିଁ ଅଦ୍ଭୁତ ସାହସର ପରିଚୟ ଦେଇଛନ୍ତି । ଅନ୍ୟମାନେ କ'ଣ କରିବେ ବା ନ କରିବେ ଚିନ୍ତା କରୁଥିବା ସମୟରେ ଯେଉଁ ଅଳ୍ପ କେତେଜଣ ବ୍ୟକ୍ତି ଦେଶବନ୍ଧୁଙ୍କର ବିଧାନସଭାରେ ପ୍ରବେଶ କରିବାର ପ୍ରସ୍ତାବ ତଥା ଏହି ସମ୍ପର୍କରେ ଶ୍ରୀମତୀ ଦାଶଙ୍କର ଘୋଷଣା ପଛରେ ଦୃଢ଼ ଭାବରେ ଛିଡ଼ା ହୋଇପାରିଥିଲେ, ଯତୀନ୍ଦ୍ରମୋହନ ସେମାନଙ୍କ ମଧ୍ୟରେ ଜଣେ ଥିଲେ । ଜଣେ ମହାନ୍ ଗୁରୁଙ୍କର ଉପଯୁକ୍ତ ଶିଷ୍ୟ ପକ୍ଷରେ ଏହିପରି କରିବା ହିଁ ଉପଯୁକ୍ତ ଥିଲା ।

''ବନ୍ଦେ ମାତରମ୍'' ଧ୍ୱନି ବ୍ରିଟିଶ୍ ଶାସନରୂପୀ ଦଣ୍ଡ ପାଇଁ ନାଲିଆ ପତାକା ପରି କାର୍ଯ୍ୟ କରୁଥିଲା । ସେହି ଧ୍ୱନିଟି ଦେବା ଉପରେ ଜିଲ୍ଲା କର୍ତ୍ତୃପକ୍ଷ ଯେଉଁ ନିଷେଧାଜ୍ଞା ଜାରି କରିଥିଲେ, ତାହାକୁ କେନ୍ଦ୍ର କରି ଚିଟାଗଙ୍ଗ ସମ୍ମିଳନୀ ସମୟରେ ଏକ ଦୁର୍ଭାଗ୍ୟଜନକ ଘଟଣା ଘଟିଥିଲା । ବଙ୍ଗଳାର ଜଂଘୀଲାଟ ସାର୍ ବାମ୍ ଫାଇଲ୍ଡ୍ ଫୁଲର୍‌ଙ୍କ ସମୟରୁ ଏବଂ ବିଶେଷତଃ ସ୍ୱଦେଶୀ ଆନ୍ଦୋଳନ ଏବଂ ବରିସାଲ ସମ୍ମିଳନୀ (1905-06) ବେଳଠାରୁ ''ବନ୍ଦେ ମାତରମ୍'' ଉପରେ ରହିଥିବା ନିଷେଧାଜ୍ଞା ଓ ତାହାକୁ ଅମାନ୍ୟ କରିବା, ବରିସାଲରେ ତୀବ୍ର ଚାଞ୍ଚଲ୍ୟ ଓ ଉତ୍ତେଜନା ସୃଷ୍ଟି କରିଥିଲା । ତା' ସହିତ ଜିଲ୍ଲା କଲେକ୍ଟର୍ ଏମର୍ସନ୍‌ଙ୍କ ସହିତ ସୁରେନ୍ଦ୍ରନାଥ ବାନର୍ଜୀଙ୍କର ଅତ୍ୟନ୍ତ ସାହସର ସହିତ ମୁହାଁମୁହିଁ ହେବା ମଧ୍ୟ ଏକ ବିଶେଷ ଘଟଣାରୂପେ ସେଥିରେ ଇନ୍ଧନ ଯୋଗାଇଥିଲା । ସେଥିଲାଗି ସୁରେନ୍ଦ୍ରନାଥ ବାନର୍ଜୀ ଦଣ୍ଡିତ ହୋଇଥିଲେ ଓ ତାଙ୍କୁ ମୋଟା ପରିମାଣର ଜୋରିମାନା ଦେବାଲାଗି ଆଦେଶ ହୋଇଥିଲା । ପୋଲିସ୍‌ର ମାଡ଼ରେ ସମ୍ମିଳନୀ ଛାରଖାର ହୋଇ ଯାଇଥିଲା । ଯତୀନ୍ଦ୍ରମୋହନ ବରିସାଲ ଘଟଣାଟି ସମ୍ବନ୍ଧରେ ପୂର୍ଣ୍ଣ ସଜ୍ଞାନ ଥିଲେ, ଏବଂ ଅସହଯୋଗ ଆନ୍ଦୋଳନର ତୁଙ୍ଗ ସକ୍ରିୟତା ସମୟରେ ଚିଟାଗଙ୍ଗରେ ଘଟିଥିବା ଘଟଣାମାନ ମଧ୍ୟ ତାଙ୍କୁ ଉତ୍ତମ ଭାବରେ ଜଣାଥିଲା । ଏବେ ମଧ୍ୟ ସେହି ଘଟଣାଗୁଡ଼ିକର ପୁନରାବୃତ୍ତି ହେଉ ବୋଲି ସେ ଆଦୌ ଇଚ୍ଛା କରୁ ନ ଥିଲେ ଏବଂ, ଅତ୍ୟନ୍ତ ସକ୍ଷୁଣ୍ଣ ଭାବରେ ହେଲେ ମଧ୍ୟ, ଉପସ୍ଥିତ ପରିସ୍ଥିତିର ହିତ ଦୃଷ୍ଟିରୁ ସେ ବଳବତ୍ତର ହୋଇ ରହିଥିବା ନିଷେଧାଜ୍ଞାଟିକୁ ମାନିନେବା ହିଁ ଅଧିକ ଉଚିତ ବୋଲି ବିବେଚନା କଲେ । ବହିରାଗତ ଅଧିକାଂଶ ପ୍ରତିନିଧି ତାଙ୍କ ସହିତ ଏକମତ ହେଲେ ନାହିଁ, ମାତ୍ର ସିଏ ସେମାନଙ୍କ ଆଗରେ ପ୍ରକୃତ ପରିସ୍ଥିତିଟିକୁ ବୁଝାଇ ଦେଇଥିଲେ । ସେ ଆପଣା ମୁଣ୍ଡରେ ହିଁ ସକଳ ଦାୟିତ୍ୱ ବହନ କଲେ । ନିର୍ବାଚିତା ସଭାନେତ୍ରୀ ବାସନ୍ତୀ ଦେବୀ ଓ ଅନ୍ୟାନ୍ୟ ଜିଲ୍ଲାର ପ୍ରତିନିଧିମାନେ ଏକା ଷ୍ଟିମରରେ କଲିକତାରୁ ଆସି ପହଞ୍ଚିଲେ । ସେତେବେଳେ ମଧ୍ୟ ଆସାମ-ବଙ୍ଗଳା ରେଳବାଇର ଧର୍ମଘଟ ଚାଲିଥିଲା । ଷ୍ଟିମରରୁ ହିଁ ତରୁଣ ପ୍ରତିନିଧିମାନେ ''ବନ୍ଦେ ମାତରମ୍'' ଉପରେ ରହିଥିବା ନିଷେଧାଜ୍ଞା ବିଷୟରେ ଶୁଣିବାକୁ ପାଇଲେ ଏବଂ ଅପ୍ରସନ୍ନ ହୋଇପଡ଼ିଥିଲେ । ଯତୀନ୍ଦ୍ରମୋହନ ତଥା ଅଭ୍ୟର୍ଥନା ସମିତିର ମୁଖ୍ୟ ସଦସ୍ୟମାନେ ବିଶିଷ୍ଟ ଅତିଥିମାନଙ୍କର ସ୍ୱାଗତ କରିବାଲାଗି ଷ୍ଟିମର୍ ଉପରକୁ ଗଲେ । ଯତୀନ୍ଦ୍ରମୋହନ ବାସନ୍ତୀ ଦେବୀଙ୍କୁ ସମସ୍ତ ପରିସ୍ଥିତି ବିଷୟରେ ବୁଝାଇ ଦେଇଥିଲେ ଏବଂ ବାସନ୍ତୀ ଦେବୀ ସେଥିରେ ତାଙ୍କ ସହିତ ଏକମତ ହେଲେ; ଆପତ୍ତି କରୁଥିବା ଅନ୍ୟ ପ୍ରତିନିଧିମାନେ ମଧ୍ୟ କୌଣସିମତେ ସେଥିରେ ରାଜି ହେଲେ ଏବଂ ଶାନ୍ତ ହୋଇଗଲେ ।

# ଏକ ଜୀବନର ସର୍ବୋଚ୍ଚ ଶିଖର

**ସ୍ୱରାଜବାଦୀ**

ଭାରତୀୟ ସ୍ୱତନ୍ତ୍ରତା ସଂଗ୍ରାମର ଏକ ସଂକଟପୂର୍ଣ୍ଣ ମୁହୂର୍ତ୍ତରେ ସ୍ୱରାଜ୍ୟ ପାର୍ଟିର ଜନ୍ମ ହୋଇଥିଲା । ଦେଶବନ୍ଧୁ ଚିତ୍ତରଂଜନ ଦାସ ଓ ପଣ୍ଡିତ ମୋତିଲାଲ ନେହରୁଙ୍କ ପରି ବହୁ ଦକ୍ଷତାଯୁକ୍ତ ନେତାମାନେ ସେତେବେଳେ ତାହାର ତୁଙ୍ଗ ସ୍ଥାନରେ ରହିଥିଲେ । ବଙ୍ଗଳାରେ ଚିତ୍ତରଞ୍ଜନ ଦାଶ ସେହି ଦଳର ସଭାପତି ଓ ଯତୀନ୍ଦ୍ରମୋହନ ସେନଗୁପ୍ତ ସାଧାରଣ ସମ୍ପାଦକ ଥିଲେ । ସେନଗୁପ୍ତ ବଙ୍ଗ ପ୍ରାଦେଶିକ କଂଗ୍ରେସ କମିଟିର ସାଧାରଣ ସମ୍ପାଦକ ଏବଂ କଲିକତା କଂଗ୍ରେସ ମ୍ୟୁନିସିପାଲ ଆସୋସିଏସନ୍‌ର ସମ୍ପାଦକ ମଧ୍ୟ ହେଲେ । ସଂଯୋଗବଶତଃ ଦେଶବନ୍ଧୁ ଚିତ୍ତରଂଜନ କଲିକତାର ପ୍ରଥମ ସ୍ୱରାଜବାଦୀ ମେୟରରୂପେ ନିର୍ବାଚିତ ମଧ୍ୟ ହୋଇଥିଲେ ।

ପ୍ରାୟ ତିନିବର୍ଷର ବ୍ୟବଧାନ ପରେ ସେନଗୁପ୍ତ ଇତିମଧ୍ୟରେ କଲିକତା ହାଇକୋର୍ଟ୍‌ରେ ଜଣେ ଆଇନଜୀବୀ ଭାବରେ ଯୋଗ ଦେଇ ଆଇନ ବ୍ୟବସାୟ ଆରମ୍ଭ କରି ଦେଇଥିଲେ । ଅବଶ୍ୟ ଏକଥା ସତ ଯେ, ଦେଶବନ୍ଧୁଙ୍କର ନିର୍ଦ୍ଦେଶରେ (1921) ସେ କେବଳ ତିନିମାସ ସକାଶେ ଆଇନ ବ୍ୟବସାୟ ପରିତ୍ୟାଗ କରିଥିଲେ । ସଂଗ୍ରାମର ତ୍ୟାଗ ଏବଂ ଦୁଃଖଭୋଗ ଫଳରେ ଯତୀନ୍ଦ୍ରମୋହନ ଆର୍ଥିକ କ୍ଷେତ୍ରରେ ଭାରି ଦରିଦ୍ର ହୋଇପଡ଼ିଥିଲେ ଓ ଅତ୍ୟନ୍ତ ଋଣଗ୍ରସ୍ତ ହୋଇ ଯାଇଥିଲେ । ତେଣୁ ତାଙ୍କୁ ପୁନର୍ବାର ଆଇନ ବ୍ୟବସାୟ ଆରମ୍ଭ କରିବାକୁ ପଡ଼ିଲା । ଏଥିପାଇଁ କଲିକତା ଏବଂ ଚିଟାଗଙ୍ଗ ଉଭୟ ସ୍ଥାନର ଲୋକମହଲରେ କିଞ୍ଚିତ୍ ସମାଲୋଚନା ମଧ୍ୟ ହୋଇଥିଲା; ମାତ୍ର ଚିତ୍ତରଂଜନ ତାଙ୍କପ୍ରତି ପୂର୍ଣ୍ଣ ସହାନୁଭୂତି ଦେଖାଇଥିଲେ ଏବଂ "ଯତୀନ୍ଦ୍ରଙ୍କୁ ସଂପୂର୍ଣ୍ଣ ଭାବରେ ପ୍ରୟୋଜନରେ ପଡ଼ି ପୁନର୍ବାର ଆଇନ ବ୍ୟବସାୟ କରିବାକୁ ପଡ଼ିଲା।" ବୋଲି ଅତ୍ୟନ୍ତ କ୍ଷୋଭ କରିଥିଲେ । ସେନଗୁପ୍ତ ସମାଲୋଚକମାନଙ୍କର କଥାକୁ ମିଥ୍ୟା ପ୍ରମାଣିତ କରିଥିଲେ ଏବଂ ଜାତିର ତାଙ୍କ ବିଷୟରେ ରହିଥିବା ପ୍ରତ୍ୟାଶାର ସଂପୂର୍ଣ୍ଣ ଯୋଗ୍ୟ ହୋଇପାରିଥିଲେ । ଜଣେ ସମର୍ଥ, ସୁଦକ୍ଷ ଏବଂ ସମଝଦାର ସଂଗଠକ ହିସାବରେ ସେ ଦେଶବନ୍ଧୁ ଚିତ୍ତରଞ୍ଜନଙ୍କର ଦାୟିତ୍ୱଯୁକ୍ତ ଯାବତୀୟ କାର୍ଯ୍ୟକ୍ରମରେ ତାଙ୍କର ଅଧିକ ନିକଟବର୍ତ୍ତୀ ହୋଇ ଆସିପାରିଥିଲେ । ଯେତେବେଳେ ଦେଶବନ୍ଧୁ ଅସୁସ୍ଥ ହୋଇ ବିଶ୍ରାମ ପାଇଁ ପାଟନା ଚାଲି ଯାଉଥିଲେ, ସେତେବେଳେ ସେନଗୁପ୍ତଙ୍କୁ ହିଁ ସ୍ୱରାଜ୍ୟ ପାର୍ଟିର ସମସ୍ତ ଦାୟିତ୍ୱ ତୁଲାଇବାକୁ ହେଉଥିଲା ।

1923 ନଭେମ୍ବର ମାସରେ ବଙ୍ଗ ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌କୁ ଯେଉଁ ନିର୍ବାଚନ ହେବାର ଥାଏ, ବଙ୍ଗଳା ତାହାହିଁ ସ୍ୱରାଜ୍ୟ ପାର୍ଟି ଆଗରେ ସର୍ବପ୍ରଧାନ କାର୍ଯ୍ୟ ହୋଇ ରହିଥାଏ ।.ଦେଶବନ୍ଧୁଙ୍କର ଜାଦୁସ୍ପର୍ଶ ଫଳରେ ନିର୍ବାଚନରେ ସ୍ୱରାଜ୍ୟପାର୍ଟିର ପ୍ରାର୍ଥୀମାନଙ୍କୁ ମହନୀୟ ବିଜୟ ପ୍ରାପ୍ତ ହୋଇଥିଲା । ଏପରିକି ଏହି ପାର୍ଟିର ଅପରୀକ୍ଷିତ, ଅନଭିଜ୍ଞ ଏବଂ ଅଜ୍ଞାତ ପ୍ରାର୍ଥୀମାନେ ମଧ୍ୟ ସୁରେନ୍ଦ୍ରନାଥ ବାନର୍ଜୀ, ଏସ୍, ଆର୍, ଦାସ., ଏସ୍. ଏନ୍. ମଲ୍ଲିକ ଓ ଆହୁରି ଅନ୍ୟମାନଙ୍କ ପରି ଶକ୍ତିଶାଳୀ

ପ୍ରତିଦ୍ୱନ୍ଦ୍ୱୀମାନଙ୍କୁ ପରାସ୍ତ କରି ନିର୍ବାଚନ ଜିତିଥିଲେ । ସ୍ୱରାଜ୍ୟ ପାର୍ଟିର ଚାଳିଶ ଜଣ ପ୍ରାର୍ଥୀ ଜୟୀ ହୋଇଥିଲେ । ସେମାନଙ୍କୁ "ସାହସୀ ଚାଳିଶ" ବୋଲି ସ୍ୱାଗତ ଜ୍ଞାପନ କରାଯାଇଥିଲା । ଏହିପରି ଭାବରେ ଚିତ୍ତରଂଜନଙ୍କର ଦଳ ଗଠିତ ନୂତନ କାଉନ୍‌ସିଲ୍‌ରେ ଏକକ ସଂଖ୍ୟାଧିକତମ ଦଳରୂପେ ନିର୍ବାଚିତ ହୋଇ ଆସିଥିଲା । କାଉନ୍‌ସିଲ୍ ଭିତରେ ସେ ନେସନାଲ୍ ପାର୍ଟି ସହିତ ମିଶି ଏକ ମିଳିତ ଦଳ ଗଠନ କଲେ ଏବଂ ବେଙ୍ଗଲ୍ ଚୁକ୍ତି ନାମରେ ଅଭିହିତ ହିନ୍ଦୁ-ମୁସ୍‌ଲିମ୍ ଚୁକ୍ତିର ପ୍ରଣୟନ କରିଥିଲେ । ଏହା ଫଳରେ ତାଙ୍କ ପାର୍ଟିର ଶକ୍ତି ଆହୁରି ଅଧିକ ବୃଦ୍ଧି ପାଇଲା । 1924 ମସିହା ମାର୍ଚ୍ଚମାସରେ କାଉନ୍‌ସିଲ୍‌ରେ ଏକ ଶକ୍ତିଶାଳୀ ସଂଖ୍ୟାଗରିଷ୍ଠତା ସହିତ ଚିତ୍ତରଂଜନ ଯତୀନ୍ଦ୍ରମୋହନ ସେନଗୁପ୍ତଙ୍କ ସହିତ ମିଶି ସରକାରଙ୍କର ଦ୍ୱିଶାସନ ବିଧି ବିରୋଧରେ ଅଭିଯାନ ଆରମ୍ଭ କରି ଦେଇଥିଲେ । ତତ୍କାଳୀନ ବଙ୍ଗଲାଟ ଲର୍ଡ ଲିଟନ୍ ଅବଶ୍ୟ ସାଂବିଧାନିକ ବୁଦ୍ଧିମତ୍ତା ପ୍ରଦର୍ଶନ କରି 'ଅନ୍ତରିତ' ବିଭାଗଗୁଡ଼ିକର ପରିଶାସନ ନିମନ୍ତେ ଚିତ୍ତରଂଜନଙ୍କୁ ଏକ ମନ୍ତ୍ରିମଣ୍ଡଳ ଗଠନ କରିବାକୁ ନିମନ୍ତ୍ରଣ କରିଥିଲେ, ମାତ୍ର ସେ ସେହି ନିମନ୍ତ୍ରଣକୁ ପ୍ରତ୍ୟାଖ୍ୟାନ କରିଥିଲେ । ତାଙ୍କର ଦଳ ଦ୍ୱିଶାସନ-ବ୍ୟବସ୍ଥା ଉଠିଯାଉ ଅଥବା ସେଥିରେ ସଂଶୋଧନ ହେଉ ବୋଲି ଦାବି କରୁଥିଲା, ତେଣୁ ନିମନ୍ତ୍ରଣ ରକ୍ଷା କରିଥିଲେ ତାହା ତାଙ୍କ ପାର୍ଟିର ଘୋଷିତ ଲକ୍ଷ୍ୟଟିର ହିଁ ବିରୁଦ୍ଧାଚରଣ କରିଥାନ୍ତା ।

ଚିତ୍ତରଂଜନଙ୍କର ନେତୃତ୍ୱ ଦ୍ୱାରା ପରିଚାଳିତ ହୋଇ ମନ୍ତ୍ରୀମାନଙ୍କର ବେତନ ବିଷୟରେ ଆଗତ ପ୍ରସ୍ତାବଟିକୁ ସଫଳତାର ସହିତ ନାକଚ କରିଦେଇ ସ୍ୱରାଜ୍ୟ ପାର୍ଟି ଆପଣାର ସର୍ବପ୍ରଥମ ବିଜୟ ହାସଲ କରିଥିଲା । ତିନିମାସ ପରେ ମନ୍ତ୍ରୀମାନଙ୍କର ବେତନ ବିଷୟରେ ଆଗତ ଦ୍ୱିତୀୟ ପ୍ରସ୍ତାବଟି ମଧ୍ୟ ପରାଜିତ ହେଲା । "ଏହାଦ୍ୱାରା ସ୍ୱରାଜ୍ୟ ପାର୍ଟିର ସମ୍ମାନରେ ପ୍ରକୃତ ବୃଦ୍ଧି ସାଧନ ହୋଇଥିଲା, ଏବଂ ସେହି ବୃଦ୍ଧି ସାଧନର ସେତେବେଳେ ତାହାଲାଗି ସର୍ବାଧିକ ମୂଲ୍ୟ ରହିଥିଲା ।"*

ପରେ, ମନ୍ତ୍ରୀମାନଙ୍କର ବେତନ ବିଷୟରେ ଆଗତ ପ୍ରସ୍ତାବଟି ତୃତୀୟଥର ସକାଶେ ମଧ ପରାସ୍ତ ହୋଇଥିଲା ଏବଂ ତେଣୁ ମନ୍ତ୍ରୀମାନଙ୍କୁ ଇସ୍ତଫା ଦେବାକୁ ପଡ଼ିଲା ।

ଦ୍ୱିଶାସନର ପଦ୍ଧତି ଏହିପରି ନାକଚ ହୋଇଯିବା ଫଳରେ ବଙ୍ଗ ସରକାର ଏକ ଅସାଧାରଣ ପଦକ୍ଷେପ ଗ୍ରହଣ କରି ଅର୍ଡିନାନ୍ସ୍ ବିଲ୍ ଆଗତ କରିବାକୁ ବାହାରିଲେ (ଏହାକୁ ରାଉଲଟ୍ ଆଇନ୍‌ର ସମତୁଲ ଭାବରେ ତୁଳନା କରାଯାଇ ପାରିବ) । କାଉନ୍‌ସିଲ୍‌ରେ ଏହାକୁ ତରବର ଭାବରେ ଅନୁମୋଦିତ କରାଇ ଦେବାର ଅଭିପ୍ରାୟ ରହିଥିଲା । ଅଧାଦେଶ ବଳରେ ସୁଭାଷ ବୋଷ, ଅନିଲ ବରନ ରାୟ ଏବଂ ସତ୍ୟେନ୍ଦ୍ର ଚନ୍ଦ୍ର ମିତ୍ରଙ୍କୁ ଗିରଫ କରି ନିଆଯିବା ଫଳରେ କାଉନ୍‌ସିଲ୍‌ରେ ସ୍ୱରାଜ୍ୟ ପାର୍ଟିର ସଂଖ୍ୟାବଳ କମି ଯାଇଥିଲା । ଏହି ସଂକଟ-ମୁହୂର୍ତ୍ତରେ ଚିତ୍ତରଂଜନ କଲିକତା ଆସିଥିଲେ ଏବଂ ସିଏ "କଳା ଆଇନ୍" ବୋଲି ଘୋଷଣା କରିଥିବା ଏହି ଅଭିସନ୍ଧିମୂଳକ ଅର୍ଡିନାନ୍ସ ବିଲ୍ ସହିତ ସଂଗ୍ରାମ କରି ତାହାକୁ ନାକଚ କରି ଦେବାପାଇଁ ଦୃଢ଼ ପ୍ରତିଜ୍ଞା କରିଥିଲେ । ଅବସ୍ଥାର ଗୁରୁତ୍ୱ ଉପଲବ୍ଧି କରି ଦେଶବନ୍ଧୁ ଗୋଟିଏ ଷ୍ଟ୍ରେଚର୍‌ରେ ଶୋଇ କାଉନ୍‌ସିଲ୍‌କୁ ଯାଇଥିଲେ ଏବଂ ସେଠାରେ ସେ ଯାଇ ପହଞ୍ଚିବା ପରେ ଏପରିକି ଅଣ-ସ୍ୱରାଜୀମାନଙ୍କ ଭିତରେ ମଧ ଚାଞ୍ଚଲ୍ୟ ଖେଳି ଯାଇଥିଲା । ଯେତେବେଳେ ଭୋଟ୍ ନିଆଗଲା, ସେତେବେଳେ ବିଲ୍‌ଟି ସଂପୂର୍ଣ୍ଣ ଭାବରେ ପରାସ୍ତ ହୋଇ ଯାଇଥିଲା ।

---

* India in 1924-25, ଲେଖକ ରୁଶ୍‌ବ୍ରୁକ୍ ଉଇଲିୟମସ୍ ।

ଲର୍ଡ ଲିଟନ୍ ତାଙ୍କର ବିଶେଷ କ୍ଷମତା ପ୍ରୟୋଗ କରି ଅର୍ଡିନାନ୍ସଟିକୁ ଆଇନ୍‌ରେ ପରିଣତ କରିଥିଲେ । ଏହି ସମଗ୍ର ଘଟଣା ଚତୁର୍ଦ୍ଦିଗରେ ହର୍ଷର ସଂଚାର କରି ଦେଇଥିଲା । ସରକାରଙ୍କୁ ପରିଶେଷରେ ଭେଟୋ କ୍ଷମତା ପ୍ରୟୋଗ କରିବାକୁ ପଡ଼ିଲା ଏବଂ ଏହିପରି ଭାବରେ ସେହି କ୍ଷେତ୍ରରେ ପ୍ରତିନିଧି ଶାସନର ଆଉ କୌଣସି ନିମ୍ନତମ ଅବଶେଷ ମଧ ରହିଲା ନାହିଁ ।

ଦେଶବନ୍ଧୁଙ୍କର ମୃତ୍ୟୁ ପରେ (1925) ଯତୀନ୍ଦ୍ରମୋହନ କାଉନ୍‌ସିଲ୍‌ରେ ତାଙ୍କର ଉତ୍ତରାଧିକାରୀ ରୂପେ ସ୍ୱରାଜ୍ୟ ପାର୍ଟିର ନେତା ହୋଇ ଆସିଲେ । ନଳିନୀ ରଞ୍ଜନ ସରକାର ସାଧାରଣ ସମ୍ପାଦକ ହେଲେ ।

ନଭେମ୍ବର ଅଧିବେଶନ (1925) ରେ ବହୁଳ ସଂଖ୍ୟାଗରିଷ୍ଠତା ସହିତ ବଙ୍ଗ ମ୍ୟୁନିସିପାଲ୍ ବିଲ୍-ସମ୍ବନ୍ଧୀ କେତୋଟି ମହତ୍ତ୍ୱପୂର୍ଣ୍ଣ ପ୍ରସ୍ତାବକୁ ଗୃହୀତ କରି ନେଇ ସ୍ୱରାଜ୍ୟ ପାର୍ଟି ଆଉ କେତୋଟି ଉଲ୍ଲେଖଯୋଗ୍ୟ ବିଜୟ ହାସଲ କରିଥିଲା । ବିଭିନ୍ନ ବନ୍ଦୀଶିବିର ଏବଂ କାରାଗାର ମାନଙ୍କରେ ରାଜନୀତିକ ଅଟକବନ୍ଦୀ ମାନଙ୍କ ଉପରେ ଅବିଚ୍ଛିନ୍ନ ଭାବରେ ହେଉଥିବା ଦୁର୍ବ୍ୟବହାର ଲାଗି ସରକାରଙ୍କ ବିରୋଧରେ ତାହା ସଫଳତାର ସହିତ ଏକ ନିନ୍ଦା ପ୍ରସ୍ତାବ ମଧ ଗୃହୀତ କରାଇ ନେଇଥିଲା । ଏହି ପ୍ରସ୍ତାବଟିର ଆଲୋଚନା ସମୟରେ ସେନଗୁପ୍ତ କାଉନ୍‌ସିଲ୍ ଗୃହରେ ଏକ ପ୍ରଭାବଶାଳୀ ଭାଷଣ ପ୍ରଦାନ କରିଥିଲେ । ତାହାର ଏକ ସଂକ୍ଷିପ୍ତ ଉଦ୍ଧୃତାଂଶ ଅନୁସାରେ :

> ''କୌଣସି ରାଜନୀତି-ପ୍ରଣୋଦିତ ଅଭିପ୍ରାୟରେ ଯେ ଆମେ ଏହି ପ୍ରସ୍ତାବଟିକୁ ଆଗତ କରିଛୁ , ସେ କଥା ଆଦୌ ନୁହେଁ । ଏହି ପ୍ରତିବାଦକୁ କେବଳ ଏକ ମାନବ ସହାନୁଭୂତି ଦ୍ୱାରା ପ୍ରଣୋଦିତ ପ୍ରତିବାଦ ବୋଲି କୁହାଯିବ । ଆମେ ଏହି ପ୍ରସ୍ତାବଟିକୁ ଆଗତ କରିଛୁ, କାରଣ ଆମେ ଜାଣିଛୁ ଯେ, ଏକ ଘୋର ଶୀତରାତିରେ ଏହି ଅଟକବନ୍ଦୀ ମାନଙ୍କୁ ଗୋଟିଏ ସ୍ଥାନରୁ ଆଉ ଗୋଟିଏ ସ୍ଥାନକୁ ନିଆ ଯାଇଥିଲା, ସେମାନଙ୍କର ଉପରଦେହରେ ଆଦୌ କୌଣସି ବସ୍ତ୍ରାଚ୍ଛାଦନ ନ ଥିଲା... ତେଣୁ ମୁଁ ସରକାରଙ୍କର ନାମରେ ଏହି ଅଭିଯୋଗ କରୁଛି ଯେ ସିଏ ଏହି ବନ୍ଦୀମାନଙ୍କ ପ୍ରତି ଅମାନୁଷିକ ବ୍ୟବହାର ପ୍ରଦର୍ଶନ କରି ଅପରାଧ କରିଛନ୍ତି । ମୁଁ ଅଭିଯୋଗ କରୁଛି ଯେ ସରକାର ଏହି ଆଇନ୍‌ର ଅପପ୍ରୟୋଗ କରିଛନ୍ତି ଏବଂ ବିନା ବିଚାରରେ ଅଟକ ଥିବା ବନ୍ଦୀମାନଙ୍କ ପ୍ରତି ଦୁର୍ବ୍ୟବହାର ଦେଖାଇଛନ୍ତି ।''

ବଜ୍ରନିନାଦବତ୍ କରତାଳି ସହିତ ସ୍ୱରାଜୀମାନଙ୍କର ଏହି ପ୍ରସ୍ତାବଟି 58-60 ଭୋଟ୍‌ରେ ଗୃହୀତ ହୋଇ ଯାଇଥିଲା । ସେନଗୁପ୍ତ ପାର୍ଟିର ନେତୃତ୍ୱ ଦେଉଥିବା ସମୟରେ ଏହାକୁ ଆଉଗୋଟିଏ ତାତ୍ପର୍ଯ୍ୟପୂର୍ଣ୍ଣ ଘଟଣା ବୋଲି କୁହାଯିବ ।

ଅନ୍ୟ କେତେକ ପ୍ରଦେଶ ପରି ବଙ୍ଗଳାରେ 1926 ମସିହାରେ ଗୋଟିଏ ଦ୍ୱିତୀୟ ନିର୍ବାଚନ ହୋଇଥିଲା । ସ୍ୱରାଜ୍ୟ ଦଳର ଜଣେ ନେତା ହିସାବରେ ସେନଗୁପ୍ତ ଯେଉଁ ସୁଦକ୍ଷ ସେବା କରିଥିଲେ, ତାହାରି ଫଳରେ ଅନ୍ୟ ପ୍ରଦେଶରୁ ମଧ ତାଙ୍କୁ ନିର୍ବାଚନ ଅଭିଯାନରେ ସାହାଯ୍ୟ କରିବା ପାଇଁ ଅନୁରୋଧ ଆସିଥିଲା । ବଙ୍ଗଳାରେ ଦଳ ମଧରେ ଏକ ଆଭ୍ୟନ୍ତରୀଣ ବିଭାଜନ ହୋଇଥିଲେ ମଧ ସେନଗୁପ୍ତ ଏକ ବୃହତ୍ ସଂଖ୍ୟାଗରିଷ୍ଠତା ସହିତ ନିର୍ବାଚିତ ହୋଇ ଆସିଥିଲେ ଏବଂ ଅତୀତ ପରି ଏତେ ଅଧିକ ପରିମାଣରେ ସଂଖ୍ୟାଗରିଷ୍ଠତା ହାସଲ କରି ନ ଥିଲେ ମଧ, ତାଙ୍କର ଦଳ ତଥାପି ଏକ ଉତ୍ତମ ସଂଖ୍ୟାଗରିଷ୍ଠ ସ୍ଥାନରେ ରହିଥିଲା । ତାହା ସହିତ ସିଏ ଦ୍ୱିତୀୟ ଥର ସକାଶେ କଲିକତାର ସ୍ୱରାଜ୍ୟ ପାର୍ଟି ମେୟର୍‌ରୂପେ ମଧ ନିର୍ବାଚିତ ହୋଇଥିଲେ ।

ଏହି ସମୟରେ ଦୁର୍ଭାଗ୍ୟବଶତଃ ଏକ ହିନ୍ଦୁ-ମୁସ୍‌ଲିମ୍ ଦଙ୍ଗା ଘଟିଥିଲା, ମାତ୍ର ମେୟର୍ ସେନଗୁପ୍ତ କେତେକ ଛାତ୍ରଗୋଷ୍ଠୀ ଏବଂ କର୍‌ପୋରେସନ୍‌ର ସଦସ୍ୟମାନଙ୍କର ମିଳିତ ଉଦ୍ୟମରେ ତାହାକୁ ନିୟନ୍ତ୍ରଣାଧୀନ କରାଯାଇ ପାରିଥିଲା । ଏହି ପରିସ୍ଥିତି ଫଳରେ ସ୍ୱରାଜ୍ୟ ପାର୍ଟିର କେତେଜଣ ପୂର୍ବତନ ମୁସଲ୍‌ମାନ ବିଧାନସଭା ପ୍ରତିନିଧି ଉଦାସୀନ ହୋଇ ପଡ଼ିଥିଲେ ଏବଂ ଅନ୍ୟ ପକ୍ଷରେ, ସ୍ୱରାଜ ଦଳବାଲାଙ୍କର ବଳ ହ୍ରାସ ହୋଇ ଯାଉଥିବାର ଦେଖି ବଙ୍ଗଳା ସରକାର ମଧ୍ୟ ଦ୍ୱିଶାସନର ପୁନଃପ୍ରବର୍ତ୍ତନ କରାଇଥିଲେ ।

ବଙ୍ଗଳାରେ ଏହି ପୁନଃପ୍ରବର୍ତ୍ତିତ ଦ୍ୱିଶାସନର ପ୍ରତିବାଦ କରି ସ୍ୱରାଜ୍ୟପାର୍ଟିର ନେତା ଯତୀନ୍ଦ୍ରମୋହନ କାଉନ୍‌ସିଲ୍‌ରେ ଏକ କଡ଼ା ବକ୍ତୃତା ଦେଇଥିଲେ । ନିମ୍ନରେ ତାହାର ଗୋଟିଏ ଅଂଶ ଉଦ୍ଧୃତ କରାଯାଉଛି:

"ତିନିବର୍ଷ ପୂର୍ବେ ଆମେ ଯେଉଁ ଦ୍ୱିଶାସନକୁ ହତ୍ୟା କରିଥିଲୁ, ସରକାର ବର୍ତ୍ତମାନ ଆମକୁ ପୁନର୍ବାର ତାହାର ପ୍ରଚଳନ କରାଇବାକୁ ଇଚ୍ଛା କରୁଛନ୍ତି । ମୁଁ କହିଦେବାକୁ ଚାହୁଁଛି ଯେ, ଏହି ପ୍ରସ୍ତାବଟି ଉପରେ ଆଜି ହୁଏତ ଆମେ ହାରିଯାଇପାରୁ ଅଥବା ଜୟଲାଭ ବି କରିପାରୁ । ମହାଶୟ ! ସେହି ଫଳ ଯାହାହେଉ ପଛକେ, ଯଦି ଏହାରି ଉପରେ ଏକ ମତ ନିଆଯାଏ, ତେବେ ମୁଁ ନିଶ୍ଚିତ ଭାବରେ କହିପାରିବି, ଏହି ସଦନର ସଦସ୍ୟମାନେ ତଥା କାଉନ୍‌ସିଲ୍ ବାହାରେ ଥିବା ଲୋକମାନେ ମଧ୍ୟ ସେହିକଥା କହିପାରିବେ ଯେ, ଆପଣ ହୁଏତ କେତେଜଣ ମନ୍ତ୍ରୀଙ୍କୁ ନିଯୁକ୍ତ କରିପାରିବେ ସତ, ମାତ୍ର ମହାନ୍ ନେତା ଦେଶବନ୍ଧୁ ଚିତ୍ତରଂଜନଙ୍କର ଉଦ୍ୟମ ଦ୍ୱାରା ଯେଉଁ ପ୍ରତିରୋଧ ତଥା ସଂଗଠନର ପ୍ରେରଣା ଏକଦା ସମ୍ଭବ ହୋଇଛି, ତାହାକୁ କଦାପି ହତ୍ୟା କରାଯାଇପାରିବ ନାହିଁ, ଏବଂ ଦ୍ୱିଶାସନକୁ ହୁଏତ ଏକ ଗଠନତନ୍ତ୍ର ରୂପେ ଠିଆ କରାଇ ଦିଆଗଲେ ମଧ୍ୟ ବାହାରକୁ ଆମେ ଦୁଇଜଣ ମନ୍ତ୍ରୀ ନିଯୁକ୍ତ ହୋଇ ମୋଟ ଦରମା ନେଉଥିବାର ଦେଖିବାକୁ ପାଇଲେ ମଧ୍ୟ ବାସ୍ତବ କ୍ଷେତ୍ରରେ ଏହି ଦ୍ୱିଶାସନ ଭିତରେ ଯେ ଆଦୌ କିଛି ରହିବ ନାହିଁ, ଆପଣଙ୍କୁ ତାହା ସ୍ମରଣ ରଖିବାକୁ ପଡ଼ିବ ।"

"ମହାଶୟ, ଏହି ପ୍ରସ୍ତାବଟି ପଛରେ ଯେଉଁ ପ୍ରକୃତ ଅଭିପ୍ରାୟ- ପ୍ରକୃତ ଉଦ୍ଦେଶ୍ୟ ରହିଛି, ମୁଁ ସେହି କଥାଟିକୁ ସ୍ପଷ୍ଟ ଭାବରେ ଦେଖାଇ ଦେବାକୁ ଇଚ୍ଛା କରୁଥିଲି । 1921 ମସିହାରେ କଂଗ୍ରେସ ଘୋଷଣା କରି କହିଥିଲା ଯେ, ବର୍ତ୍ତମାନର ସଂବିଧାନ ମଧ୍ୟରେ ଯଥାର୍ଥତା ଆଦୌ କିଛିହେଲେ ନାହିଁ, ମନ୍ତ୍ରୀମାନେ କେବଳ କଣ୍ଢେଇ ପରି ହୋଇ ରହିଛନ୍ତି ଏବଂ ତେଣୁ ସବୁ କଂଗ୍ରେସ ଲୋକେ କାଉନ୍‌ସିଲ୍‌ର ବାହାରେ ହିଁ ରହିଥିଲେ; ସମ୍ବିଧାନକୁ କାର୍ଯ୍ୟକାରୀ କରାଇବା ଯେ ଏହି କ୍ଷେତ୍ରରେ ସେମାନଙ୍କର ଲକ୍ଷ୍ୟ ଥିଲା ତା ନୁହେଁ, ମାତ୍ର ଯେଉଁ ଅନ୍ୟ ବ୍ୟକ୍ତିମାନେ ସଂବିଧାନକୁ ଭଲ ପାଉଥିଲେ, ସେମାନେ ଏହି ଦେଶରେ ସ୍ୱାଧୀନତାର ଲକ୍ଷ୍ୟହାସଲ କ୍ଷେତ୍ରରେ ଯେଉଁ ଅନିଷ୍ଟ ସୃଷ୍ଟି କରୁଥିଲେ, ତାହାକୁ ରୋକିବା ସକାଶେ ହିଁ ତାହା କରାଯାଇଥିଲା । ଜନଗଣଙ୍କର ହୃଦୟ ମଧ୍ୟରେ ଦେଶବନ୍ଧୁ ଚିତ୍ତରଞ୍ଜନ ଯେଉଁ ସଂଗଠନ ଏବଂ ପ୍ରତିରୋଧର ଶକ୍ତିକୁ ସଂଚାରିତ କରି ଯାଇଛନ୍ତି ନିର୍ମମ ଭାବରେ ତାହାକୁ ହିଁ ହତ୍ୟା କରିବା ଲାଗି ଏହି ପ୍ରସ୍ତାବର ଲକ୍ଷ୍ୟ ହୋଇ ରହିଛି । ବିଧାନସଭା ମଧ୍ୟରେ ସଂଗଠନ ଏବଂ ପ୍ରତିରୋଧର ସେହି ପ୍ରେରଣାକୁ ବଙ୍ଗଳାର ସରକାର, ଅମଲାତନ୍ତ୍ର ଓ ଏପରିକି ଭିଲାତର ସରକାର ମଧ୍ୟ ଭାରି ଭୟ କରୁଛନ୍ତି ଏବଂ ସେହି ପ୍ରେରଣାକୁ ହତ୍ୟା କରିବାପାଇଁ ଏହି ବିଲ୍ ଆଗତ କରାଯାଇଛି ।"

ସ୍ୱରାଜ୍ୟ ଦଳର କ୍ରମବର୍ଦ୍ଧମାନ ଶକ୍ତିଦ୍ୱାରା ପ୍ରକୃତରେ ଭୟଭୀତ ହୋଇ, ହିନ୍ଦୁ ମୁସଲମାନ ଅନୈକ୍ୟର ନୀତିକୌଶଳ ପ୍ରୟୋଗ କରି ବଙ୍ଗ ସରକାର ଆପଣାର ସାମ୍ରାଜ୍ୟ ଶକ୍ତିକୁ ପୁନର୍ବାର ଦୋରସ୍ତ କରି ରଖିବାକୁ ଚେଷ୍ଟା କରିଥିଲେ ଏବଂ ତା'ପରେ ଦୁଇଜଣିଆ ଗୋଟିଏ ମନ୍ତ୍ରିମଣ୍ଡଳ ଏବଂ ପରେ ମୁସ୍‌ଲିମ୍ ସଂଖ୍ୟାଗରିଷ୍ଠତା ଥାଇ ଏକ ତିନିଜଣିଆ ମନ୍ତ୍ରିମଣ୍ଡଳ ନିଯୁକ୍ତ କରି ମଧ୍ୟ ସରକାର ସେହି ଅନୈକ୍ୟକୁ ମଜଭୁତ କରିବାକୁ ବାହାରିଥିଲେ । ସାମୟିକ ଭାବରେ ସ୍ୱରାଜ୍ୟ ପାର୍ଟିର ସଂଖ୍ୟାବଳ କମି ଯାଇଥିଲା ସତ, ମାତ୍ର ପରେ ଏଥିରେ କିଞ୍ଚିତ୍ ଉନ୍ନତି ମଧ୍ୟ ହୋଇଥିଲା । ସେନଗୁପ୍ତଙ୍କର ମାର୍ଗଦର୍ଶନରେ ଚାଳିତ ହୋଇ ସଦସ୍ୟମାନେ ସରକାରଙ୍କୁ ସମସ୍ତଙ୍କ ପାଖରେ ସ୍ପଷ୍ଟ ହୋଇଗଲା ପରି ଏକ ପରାଜୟର ସମ୍ମୁଖୀନ କରାଇଲେ । ବଙ୍ଗ କାଉନ୍‌ସିଲ୍‌ରେ ଏହାକୁ ହିଁ ସ୍ୱରାଜ୍ୟ ଦଳ ଶକ୍ତିର ସର୍ବଶେଷ ବିଜୟଲାଭ ବୋଲି କୁହାଯିବ ।

**ବଙ୍ଗ କାଉନ୍‌ସିଲ୍‌ରେ ଉତ୍ତେଜନା**

ବେଙ୍ଗଲ ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ର ଫେବୃଆରୀ 18, 1926ରେ ଅଧିବେଶନରେ ସଦନଟିରେ ଏକ ବୃହତ୍ ଚାଞ୍ଚଲ୍ୟକର ଦୃଶ୍ୟ ଦେଖିବାକୁ ମିଳିଥିଲା । ସେଦିନ କାଉନ୍‌ସିଲ୍‌ର ଅଧିବେଶନ ଚାଲିଥିବା ସମୟରେ, ଚିଟାଗଙ୍ଗରୁ ଆଗତ ଜଣେ ସଦସ୍ୟ ସ୍ୱରାଜ୍ୟ ପାର୍ଟିର ମୌଲବୀ ନୁରୁଲ୍ ହକ୍ ଚୌଧୁରୀ (କଲିକତା ହାଇକୋର୍ଟର ଆଡ଼ଭୋକେଟ୍) ଆଲୋଚିତ ହେଉଥିବା ଏକ ପ୍ରସ୍ତାବ ଉପରେ ଏକ ସଂଶୋଧନ ପ୍ରସ୍ତାବ ଆଗତ କରିବା ଲାଗି ଉଠି ଛିଡ଼ାହେଲେ । ସଦନର ସଭାପତି କୁମାର ଶିବଶେଖରେଶ୍ୱର ସଂଶୋଧନ ପ୍ରସ୍ତାବଟି ଆଗତ କରିବା ଲାଗି ଅନୁମତି ଦେଲେ ନାହିଁ । ଏହା ଫଳରେ ଆଗତକାରୀ ହକ୍ ଚୌଧୁରୀ ଜବାବ ଦେଇ କହିଲେ, ''ଏତଦ୍ୱାରା ସଭାପତି ଅତ୍ୟନ୍ତ ସ୍ୱେଚ୍ଛାଚାରୀ ଭାବରେ ତାଙ୍କର କ୍ଷମତାକୁ କାର୍ଯ୍ୟକାରୀ କରୁଛନ୍ତି ।'' ଏହା ଶୁଣି ସଭାପତି ରୁଷ୍ଟ ହେଲେ ଓ ତାଙ୍କୁ ତାଙ୍କର ସେହି ବାକ୍ୟଟିକୁ ପୁନର୍ବାର କହିବାଲାଗି କହିଥିଲେ । ହକ୍ ଚୌଧୁରୀ ନୀରବ ରହିଲେ । ସଭାପତି ତାଙ୍କୁ ପୁନର୍ବାର ସେହି ନିର୍ଦ୍ଦେଶଟି ଦେଲେ । ସଦସ୍ୟ ଏଥର ନିଜ ବିବୃତିଟିର ପୁନରାବୃତ୍ତି କଲେ । ବିବୃତିଟିକୁ ପ୍ରତ୍ୟାହାର କରିବାଲାଗି ତାଙ୍କୁ ନିର୍ଦ୍ଦେଶ ହେଲା, ମାତ୍ର ହକ୍ ଚୌଧୁରୀ ତାହା ମାନିଲେ ନାହିଁ । ତା'ପରେ ସଭାପତି ଏକ ନିଷ୍ପତ୍ତି ଦେଇ କହିଲେ ଯେ, ସଂପୃକ୍ତ ସଦସ୍ୟ ଆପତ୍ତିଜନକ ବ୍ୟବହାର ଦେଖାଇଛନ୍ତି ଏବଂ ତେଣୁ ତାଙ୍କୁ ସଦନ ମଧ୍ୟରୁ ବହିଷ୍କାର କରାଯିବା ଉଚିତ । ସେ ଆଦେଶ ଦେଲେ ଯେ ସେହି ସମସ୍ତ ଦିନଟି ସକାଶେ ସଂପୃକ୍ତ ସଭ୍ୟ ଆଉ ସଦନ ଭିତରେ ପ୍ରବେଶ କରିପାରିବେ ନାହିଁ ।

ହକ୍ ଚୌଧୁରୀ ଏହିପରି ଏକ ମନ୍ତବ୍ୟ ଦେଇ ସଦନ ମଧ୍ୟରୁ ବାହାରିଗଲେ, ''ଯାହା ଆପଣଙ୍କର ଇଚ୍ଛା, ଆପଣ ତାହା କରିପାରିବେ ।'' ଏହାଦ୍ୱାରା କାଉନ୍‌ସିଲ୍ କକ୍ଷରେ ଏକ କୋଳାହଳ ଆରମ୍ଭ ହୋଇ ଯାଇଥିଲା ଏବଂ ବିରୋଧୀ ପକ୍ଷ 'ହାୟ ହାୟ' ବୋଲି ଚିତ୍କାର କରିବାକୁ ଲାଗିଲେ । ସଭାପତି ଅତ୍ୟନ୍ତ କ୍ରୁଦ୍ଧ ହୋଇ ଜଣେ ସଭ୍ୟ ଡାକ୍ତର କୁମୁଦଶଙ୍କର ରାୟଙ୍କୁ ନିର୍ଦ୍ଦେଶ କରି କହିଲେ ଯେ, ସିଏ ମଧ୍ୟ ଚିତ୍କାରକାରୀମାନଙ୍କ ଭିତରେ ଜଣେ ଥିବାରୁ ତାଙ୍କର ମଧ୍ୟ ସଦନ ଭିତରୁ ବାହାରିଯିବା ଉଚିତ । ଏହିପରି ଭାବରେ ସ୍ୱରାଜ୍ୟ ପାର୍ଟିର ଦୁଇଜଣ ସଦସ୍ୟଙ୍କୁ ବାହାର କରି ଦିଆଯିବା ପରେ ପାର୍ଟିର ନେତା ଯତୀନ୍ଦ୍ରମୋହନ ସେନଗୁପ୍ତ ଛିଡ଼ା ହୋଇ ତାହାର ପ୍ରତିବାଦ କଲେ ଏବଂ ଦୃଢ଼ଭାବରେ କହିଲେ: 'ହାୟ, ହାୟ' ବୋଲି ଧ୍ୱନି କରିବା ଫଳରେ ସଦନ ମଧ୍ୟରୁ ଜଣକ ପରେ ଜଣେ ସଦସ୍ୟଙ୍କୁ

ଏହିପରି ଭାବରେ ବାହାରକୁ ବାହାର କରିଦେବାର ସଭାପତିଙ୍କର ଏହି ପିଲାଳିଆ କାର୍ଯ୍ୟର ମୁଁ ପ୍ରତିବାଦ କରୁଛି । (ସରକାରୀ ପକ୍ଷରୁ 'ଅର୍ଡର୍, ଅର୍ଡର୍,' ବୋଲି ଧ୍ୱନି ଶୁଣାଗଲା) ମୁଁ ଭାବୁଛି, 'ହାୟ ହାୟ' ବୋଲି ଧ୍ୱନି ଦେବା ଏକ ବୈଧ କାର୍ଯ୍ୟ ଏବଂ ବିଲାତର ହାଉସ ଅଫ୍ କମନ୍ସ୍‌ରେ ମଧ୍ୟ ଏହା ହୋଇଥାଏ । ସଭାପତିଙ୍କର ଏହି ପ୍ରକାରର ଆଚରଣର ମୁଁ ଦୃଢ଼ ପ୍ରତିବାଦ କରୁଛି ।''

ତା'ପରେ ସଦନର ସଭାପତି ଶ୍ରୀଯୁକ୍ତ ସେନଗୁପ୍ତଙ୍କୁ 'ପିଲାଳିଆ' ଶବ୍ଦଟିକୁ ପ୍ରତ୍ୟାହାର କରିନେବାକୁ କହିଲେ । ସେନଗୁପ୍ତ ଅସମ୍ମତି ପ୍ରକାଶ କଲେ ଓ ସଭାପତି ତା'ପରେ ତାଙ୍କୁ ଗୃହରୁ ବାହାରିଯିବାକୁ ଆଦେଶ ଦେଲେ । ସେନଗୁପ୍ତ ତାଙ୍କର ଅନ୍ୟ ସାଥୀ ଦୁର୍ହିଙ୍କର ସମଦଶାକୁ ସ୍ୱୀକାର କରିନେବା ସକାଶେ ପ୍ରସ୍ତୁତ ଥିଲେ ଏବଂ ଏହାଦ୍ୱାରା ସେ ନିଜ ଦଳର ଶୃଙ୍ଖଳାଟିକୁ ମଧ୍ୟ ପାଳନ କରିଥିଲେ । ତା'ପରେ ସମସ୍ତ ସଦନରେ ଆହୁରି ଅଧିକ ଉତ୍ତେଜନା ଜାତ ହୋଇଥିଲା । ସ୍ୱରାଜ୍ୟ ପାର୍ଟିର ଆଉଜଣେ ସଭ୍ୟ ଚିତ୍କାର କରି କହିଲେ: ''ମୁଁ କହିବି ଯେ ସଭାପତିଙ୍କର ଆଚରଣ କେବଳ ଯେ ପିଲାଳିଆ ହୋଇଛି ତା ନୁହେଁ, ଏହା ପିଲାଳିଆଠାରୁ ଆହୁରି ଅଧିକ ହୀନ ସ୍ତରର ହୋଇଛି ।'' ସଭାପତିଙ୍କର ଆଦେଶରେ ତାଙ୍କୁ ମଧ୍ୟ କକ୍ଷତ୍ୟାଗ କରିବାକୁ ହେଲା, ଏବଂ ତା'ପରେ ''ସଭାପତି ପ୍ରାୟ ପାଗଳଙ୍କ ପରି ଆଚରଣ କରୁଛନ୍ତି'' ବୋଲି ବଡ଼ ପାଟିରେ କହିଥିବା ସ୍ୱରାଜ୍ୟ ପାର୍ଟିର ଆଉଜଣେ ସଭ୍ୟ ମଧ୍ୟ ଆଦେଶ ପାଇ କକ୍ଷରୁ ବାହାରି ଯାଇଥିଲେ ।

ତା'ପରେ ସ୍ୱାଧୀନ ସଭ୍ୟମାନଙ୍କ ସମେତ ସ୍ୱରାଜ୍ୟ ପାର୍ଟିର ସବୁ ସଭ୍ୟ ଏକତ୍ର ସଭା ଗୃହରୁ ବାହାରି ଚାଲି ଯାଇଥିଲେ । କେବଳ ଶ୍ରୀ ବି. ଚକ୍ରବର୍ତ୍ତୀ ଯାଇ ନ ଥିଲେ, କାହିଁକି ଯେ ଯାଇ ନ ଥିଲେ, ତାହା କେବଳ ତାଙ୍କୁ ହିଁ ଜଣା ।

ତହିଁ ଆରଦିନ, ଅର୍ଥାତ୍ ଫେବୃଆରୀ 19 ତାରିଖ ଦିନ କାଉନ୍ସିଲ୍‌ର ଅଧିବେଶନ ବସିବାପରେ ସଦନରେ ପ୍ରାୟ ପାଞ୍ଚଟି ଅବିଶ୍ୱାସ ପ୍ରସ୍ତାବ ଆଗତ କରା ଯାଇଥିଲା । ଏଗୁଡ଼ିକ ସକାଶେ ପୂର୍ବରୁ ସୂଚନା ଦିଆ ଯାଇଥିଲା ଓ ଡାକ୍ତର ଆର୍.ସି.ରାୟ, ନଳିନୀ ରଞ୍ଜନ ସରକାର, ବି.ଏନ୍. ସାସମଲ, ନିର୍ମଳଚନ୍ଦ୍ର ଚନ୍ଦ୍ର ଏବଂ ଏମ୍. ଅବଦୁଲ ରବ୍ ଚୌଧୁରୀ ସେହି ସୂଚନାଗୁଡ଼ିକୁ ଦେଇଥିଲେ । ସଭାପତିଙ୍କର ପୂର୍ବ ଦିନଟିର କାର୍ଯ୍ୟ ଓ ଆଚରଣ ଲାଗି ଶ୍ରୀ ସାସମଲ୍ ପ୍ରକୃତରେ ତାଙ୍କ ବିରୋଧରେ ଅବିଶ୍ୱାସ ପ୍ରସ୍ତାବଟିକୁ ଆଗତ କରିଥିଲେ । ପାର୍ଟିର ନେତା ସେନଗୁପ୍ତ ପ୍ରସ୍ତାବଟିର ଅଭିପ୍ରାୟ ସ୍ପଷ୍ଟ କରି ଦେଇଥିଲେ ଏବଂ କହିଥିଲେ ଯେ, ପୂର୍ବଦିନ ସଭାପତି ଯାହାସବୁ କରିଛନ୍ତି, ତା'ର ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ଏପରି ଆଦୌ କରାଯାଉ ନାହିଁ, ବରଂ ଏହିପରି ଏକ ପ୍ରତିବାଦକୁ ଲିପିବଦ୍ଧ କରି ରଖିବା ଉଦ୍ଦେଶ୍ୟରେ ଏହା କରାଯାଉଛି ଯେ, ଆପଣାର ସମ୍ମାନ ରକ୍ଷା କରିବାକୁ ଯାଇ ସଭାପତି କାଉନ୍ସିଲ୍‌ର ନିର୍ବାଚିତ ପ୍ରତିନିଧିମାନଙ୍କ ଉପରେ ନିର୍ଭର ନ କରି ଶାସକଦଳର ସଭ୍ୟମାନଙ୍କ ଉପରେ ନିର୍ଭର କରିବାର ପନ୍ଥାକୁ ଗ୍ରହଣ କରିଥିଲେ ।

ପ୍ରସ୍ତାବଟି ଅବଶ୍ୟ କାଟ ଖାଇ ଯାଇଥିଲା (57:72) । ତଥାପି ତଦ୍ୱାରା ସଭାପତିଙ୍କର ସମ୍ମାନ ଏବଂ ପଦ ଉପରେ ଏହାଦ୍ୱାରା ପ୍ରକୃତ ହାନି ପହଞ୍ଚିଥିଲା ।

## ସ୍ୱରାଜ୍ୟ ଦଳ କାଉନ୍ସିଲ୍‌ରୁ ଇସ୍ତଫା ଦେଲେ(15 ମାର୍ଚ୍ଚ 1926)

କାନପୁର କଂଗ୍ରେସର ନିର୍ଦ୍ଦେଶ ମାନି ବଙ୍ଗଳା କାଉନ୍ସିଲ୍‌ର ସ୍ୱରାଜ୍ୟ ପାର୍ଟି ସଭ୍ୟମାନେ ବିଧାନସଭାରୁ ଇସ୍ତଫା ଦେବାଲାଗି ନିଷ୍ପତ୍ତି ଗ୍ରହଣ କରିଥିଲେ । କାଉନ୍ସିଲ୍ ତ୍ୟାଗ କରିବାର ଅବ୍ୟବହିତ ପୂର୍ବରୁ ଯତୀନ୍ଦ୍ରମୋହନ ଏକ ବକ୍ତୃତା ଦେଇଥିଲେ । ନିମ୍ନରେ ସେଥିରୁ କେତେକାଂଶ ଉଦ୍ଧୃତ କରାଯାଇଛି :

''ସଭାପତି ମହୋଦୟ ଆପଣଙ୍କୁ ସମ୍ଭବତଃ ଜ୍ଞାତ ଅଛି ଯେ କଂଗ୍ରେସର କାନପୁର ଅଧିବେଶନରେ ନିର୍ଦ୍ଧାରିତ ହୋଇଥିବା ନୀତି ଅନୁସାରେ ଏବଂ ତା'ପରେ ଦିଲ୍ଲୀଠାରେ ବସିଥିବା ନିଖିଳ ଭାରତ କଂଗ୍ରେସ କମିଟି ତାହାର ପୁନର୍ବିଚାର କରି ତାହାକୁ ଅନୁମୋଦନ କରିବା ପରେ ସ୍ୱରାଜ୍ୟ ପାର୍ଟିର ଏହି କାଉନ୍‌ସିଲ୍‌ରେ ଥିବା ସବୁ ସଦସ୍ୟ ଆଜି ଏହି ସଦନରୁ ଆପଣାର ସଦସ୍ୟପଦକୁ ପ୍ରତ୍ୟାହାର କରି ନେଉଛନ୍ତି ।''

ଦୁଇବର୍ଷ ପୂର୍ବେ ଏହି ସଦନରେ ପ୍ରବେଶ କରିବା ସମୟରେ, ଲୋକମାନଙ୍କର ସମ୍ମତି ନେଇ ଶାସନ ଚଳାଉଛନ୍ତି ବୋଲି ସରକାର ଯେଉଁ ଛଳନା କରି ଆସୁଥିଲେ ଆମେ ତାହାର ଅବସାନ ଘଟାଇବାକୁ ଇଚ୍ଛା କରିଥିଲୁ । ଆମେ ଦ୍ୱିଶାସନ ପଦ୍ଧତିକୁ ନଷ୍ଟ କରି ଦେଇଛୁ । ଏହି କାଉନ୍‌ସିଲ୍‌ରେ ଆମେ ଯେଉଁ ନୀତି ଅନୁସରଣ କରି ଆସିଛୁ, ସେଥିଲାଗି ଦେଶବାସୀଙ୍କର ସମର୍ଥନ ଲୋଡ଼ିବାଲାଗି ଆଜି ଆମେ ସେମାନଙ୍କ ପାଖକୁ ଫେରିଯାଉଛୁ । ଆମର ଭବିଷ୍ୟନୀତି ସମ୍ବନ୍ଧରେ ମଧ ଆମେ ସେମାନଙ୍କର ସମର୍ଥନ ଓ ଅନୁମତି ଲୋଡ଼ିବାକୁ ଯାଉଛୁ । ବଳ ଓ ପ୍ରେରଣା ପାଇବା ସକାଶେ ଆମେ ବାହାରକୁ ଯାଉଛୁ । ଆମେ ଏହି ପୂର୍ଣ୍ଣ ବିଶ୍ୱାସ ନେଇ ଯାଉଛୁ ଯେ, କାଉନ୍‌ସିଲ୍‌ରେ ଆମେ ଆଜିଯାଏ ଯେଉଁ ନୀତି ଅନୁସରଣ କରି ଆସିଛୁ, ଦେଶ ଯେ ସେହିଗୁଡ଼ିକ ପ୍ରତି ନିଜର ସମର୍ଥନ ଜଣାଇବ ତା' ନୁହେଁ; ତାହା ଆମର ହାତମୁଠାକୁ ମଧ ଅଧିକ ଟାଣ କରିଦେବ, ଯେପରିକି ଆମେ ସଂଖ୍ୟାଲଘୁ ହୋଇ ରହି ଆସିଥିବାର ସେହି ଅତୀତ ଅସୁବିଧାଟିକୁ ମଧ ଅତିକ୍ରମ କରିଯାଇ ପାରିବୁ ।''

ମାତ୍ର, ଯଦି, ଅଧିକତର ସଂଖ୍ୟାରେ ଓ ଅଧିକ ଶକ୍ତିଶାଳୀ ହୋଇ ଏଠାକୁ ଫେରି ଆମେ ଦେଖିବୁ ଯେ, ଏହି ଅମଲାତନ୍ତ୍ର ସେହି ପୂର୍ବ ପରି ସମାନ ଭାବରେ ଅନମନୀୟ ହୋଇ ରହିଛି, ଆମର ସ୍ୱାଭାବିକ ଆକାଙ୍‌କ୍ଷାଗୁଡ଼ିକ ପ୍ରତି ସେହିପରି ଉଦାସୀନ ହୋଇ ରହିଛି, ତେବେ ମୋର ଏଥିରେ ଆଦୌ କୌଣସି ସନ୍ଦେହ ନାହିଁ ଯେ, ଜାତି ସେତେବେଳେ ଏକ ନିରସ୍ତ୍ର, ପଦାନତ ଏବଂ ଅତ୍ୟାଚାରିତ ଜନଗଣଙ୍କର ସର୍ବଶେଷ ଉଦ୍ଧାରପଥ ରୂପେ ଅନ୍ୟ ଓ ଅଧିକ ଫଳସମର୍ଥ ଅଥଚ, ଆଇନସଙ୍ଗତ ଅସ୍ତ୍ରମାନ ପ୍ରୟୋଗ କରିବାକୁ କଦାପି ପଶ୍ଚାତ୍‌ପଦ ହେବ ନାହିଁ ।''

## ବଙ୍ଗ-ଚୁକ୍ତି

ବ୍ରିଟିଶ ଶାସନସଭା ବିରୋଧରେ କାଉନ୍‌ସିଲ୍ କକ୍ଷର ସମରରେ ସ୍ୱରାଜ୍ୟ ପାର୍ଟିକୁ ସବଳ କରି ରଖିବାର ଅଭିପ୍ରାୟରେ ଦେଶବନ୍ଧୁ ଚିତ୍ତରଂଜନ ହିନ୍ଦୁ-ମୁସ୍‌ଲିମ୍ ଚୁକ୍ତିର ପ୍ରଣୟନ କରିଥିଲେ । ଏହା ବଙ୍ଗ-ଚୁକ୍ତି (1922-23) ନାମରେ ଅଧିକ ପରିମାଣରେ ପରିଣତ ହୋଇ ରହିଛି । ଏହାର ଏକ ଶକ୍ତିଶାଳୀ ପୃଷ୍ଠଭୂମି ରହିଛି, କାରଣ, ଅତୀତରେ ସେ ନିଜର ପାର୍ଟି ସପକ୍ଷରେ କାଉନ୍‌ସିଲ୍‌ରେ ଥିବା ମୁସଲିମ୍ ସଭ୍ୟମାନଙ୍କୁ ନିଜ ତରଫକୁ ନେଇଆସି ପାରିଥିଲେ ଏବଂ ତଦ୍ୱାରା ଏକାଧିକ ଥର ପାଇଁ ବଙ୍ଗଳା ମନ୍ତ୍ରିମଣ୍ଡଳକୁ କ୍ଷମତାଚ୍ୟୁତ କରାଇବା ପ୍ରକୃତରେ ସମ୍ଭବ ହୋଇପାରୁଥିଲା । ମ୍ୟୁନିସିପାଲ୍ କର୍ପୋରେଶନର ନିର୍ବାଚନରେ ମଧ ବଙ୍ଗ-ଚୁକ୍ତି ସ୍ୱରାଜ୍ୟ ପାର୍ଟିର ଅନେକ ଉପକାର କରିଥିଲା ।

ଏହାର ରାଜନୈତିକ କାର୍ଯ୍ୟସାଧକତାକୁ ବାଦ୍ ଦେଲେ ମଧ, ଦୁଇ ପ୍ରଧାନ ସଂପ୍ରଦାୟ ମଧ୍ୟରେ ସଦ୍‌ଭାବର ସଂପର୍କ ସ୍ଥାପନ କରିବାରେ ଏହାର ଏକ ସାମାଜିକ ତାତ୍ପର୍ଯ୍ୟ ମଧ ରହିଥିଲା । ଜାତୀୟ

ସଂହତି, ଏକତା ଏବଂ ସହଚାରିତାର ଯେକୌଣସି ଯୋଜନାରେ ଏହି ସଂପର୍କ ସ୍ଥାପନ ଅତ୍ୟାବଶ୍ୟକ ଥିଲା, କାରଣ ତାହାରି ଅଭାବ ହିଁ ଦେଶରେ ଏକାଦିକ୍ରମେ ଘଟିଥିବା ବହୁ ସାମ୍ପ୍ରଦାୟିକ ମନୋମାଳିନ୍ୟ ଏବଂ ତଜ୍ଜନିତ ଦଙ୍ଗାର କାରଣ ହୋଇ ରହିଥିଲା । ହିନ୍ଦୁ-ମୁସଲମାନ ଏକତାର ସୁଦୃଢ଼ ଭୂମି ଉପରେ ଯେ ଭାରତର ସ୍ୱାଧୀନତା ସୁପ୍ରତିଷ୍ଠିତ ହୋଇ ରହିପାରିବ, ଦେଶବନ୍ଧୁ ଗାନ୍ଧିଜୀଙ୍କ ସହିତ ଏହି ବିଷୟରେ ପୂର୍ଣ୍ଣ ଏକମତ ଥିଲେ । ଏଣୁ, ବଙ୍ଗ-ଚୁକ୍ତିର ପ୍ରକୃତରେ ଏକ ସୁଦୂରପ୍ରସାରୀ ମହତ୍ତ୍ୱ ରହିଥିଲା । ଶ୍ରେଷ୍ଠତମ ସଦ୍‌ଭାବନା ତଥା ପ୍ରଭୂତ ଦୂରଦୃଷ୍ଟି ସହିତ ଏହି ଚୁକ୍ତିର ସର୍ତ୍ତଗୁଡ଼ିକର କଳ୍ପନା କରାଯାଇଥିଲେ ମଧ୍ୟ ଦୁର୍ଭାଗ୍ୟବଶତଃ ବଙ୍ଗ ତଥା ବଙ୍ଗ ବାହାରେ ଏହା ଫଳରେ ତୀବ୍ର ମତଭେଦମାନ ସୃଷ୍ଟି ହୋଇଥିଲା । ଏହି ଚୁକ୍ତି ଫଳରେ ବିଧାନସଭାରେ ମୁସଲମାନ ମାନଙ୍କୁ କେତୋଟି ଅଧିକ ସ୍ଥାନ ଦେବାର ପ୍ରସ୍ତାବ ରହିଥିବାରୁ ଅଥବା ଲୋକସଂଖ୍ୟାର ଅନୁପାତ ଦୃଷ୍ଟିରୁ ସରକାରୀ କର୍ମସଂସ୍ଥାନର ନିଯୁକ୍ତି ଗୁଡ଼ିକରେ ସେମାନଙ୍କୁ ଅଧିକ ସୁଯୋଗ ଦିଆଯାଇଥିବାରୁ ହିନ୍ଦୁ ନେତାମାନେ ମୁଖ୍ୟତଃ ଏହି ଚୁକ୍ତିର ବିରୋଧ କରିଥିଲେ । ପ୍ରବଳ ବିରୋଧ ସତ୍ତ୍ୱେ ବଙ୍ଗପ୍ରଦେଶ କଂଗ୍ରେସ କମିଟିରେ ଏହି ଚୁକ୍ତିଟି ଅନୁମୋଦିତ ହେଲା, ମାତ୍ର କଂଗ୍ରେସର ବାର୍ଷିକ ଅଧିବେଶନ (ଡିସେମ୍ବର, 1923)ତାହାକୁ ଗ୍ରହଣ କଲା ନାହିଁ । ଦେଶବନ୍ଧୁ ଚୁକ୍ତିଟିର ସପକ୍ଷରେ ବଳିଷ୍ଠ ଯୁକ୍ତି ବାଢ଼ିଥିଲେ ମଧ୍ୟ ତାହା ଯଥାର୍ଥ ଉଦ୍ଦେଶ୍ୟଟିକୁ ସାଧନ କରିପାରି ନ ଥିଲା । ଅନ୍ୟ ଅନେକ କଥା ଭିତରେ ସେ କହିଥିଲେ, ଅହିଂସ ଅସହଯୋଗ ବ୍ୟତୀତ ସ୍ୱରାଜ୍ୟପ୍ରାପ୍ତି ସମ୍ଭବ ନୁହେଁ ଏବଂ ହିନ୍ଦୁ ଓ ମୁସଲମାନ ଦୁଇ ସଂପ୍ରଦାୟ ମଧ୍ୟରେ ଏକତା ସ୍ଥାପିତ ହୋଇ ନ ପାରିଲେ ଅସହଯୋଗ କଦାପି ସଫଳ ହେବ ନାହିଁ । ତେଣୁ, ସେମାନେ ପ୍ରକୃତରେ ସ୍ୱରାଜ୍ୟପ୍ରାପ୍ତି ସମ୍ଭବ ନୁହେଁ ଏବଂ ହିନ୍ଦୁ ଓ ମୁସଲମାନ ଦୁଇ ସଂପ୍ରଦାୟ ମଧ୍ୟରେ ଏକତା ସ୍ଥାପିତ ହୋଇ ନ ପାରିଲେ ଅସହଯୋଗ କଦାପି ସଫଳ ହେବ ନାହିଁ । ତେଣୁ, ସେମାନେ ପ୍ରକୃତରେ ସ୍ୱ[illegible]ଅର୍ଜନ କରିବାକୁ ଇଚ୍ଛା କରୁଥିଲେ, ସେମାନଙ୍କୁ ସେହି ଏକତା ଲାଗି ଅବଶ୍ୟ କାର୍ଯ୍ୟ କରିବାକୁ ହେବ ।''

ଦେଶବନ୍ଧୁଙ୍କ ବିରୋଧରେ ଏହି ପ୍ରବଳ ଅଭିଯାନ ସମୟରେ ଦେଶପ୍ରିୟ ଯତୀନ୍ଦ୍ରମୋହନ ସେନଗୁପ୍ତ ସେହି ଅବସରରେ ଆସିଥିବା ଏକାଧିକ ଆକ୍ରମଣକୁ ପ୍ରତିହତ କରି ଦେବାରେ ତାଙ୍କ ଡାହାଣ ହାତ ହୋଇ ଠିଆ ହୋଇଥିଲେ । ଏଠାରେ ଦୁଇଟି ଘଟଣା ଉଲ୍ଲେଖଯୋଗ୍ୟ ବୋଧ ହେଉଛି : (1) ଡିସେମ୍ବର 23 ତାରିଖରେ ଦରଭଙ୍ଗା ମହାରାଜଙ୍କର ସଭାପତିତ୍ୱରେ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାନରେ ଏକ ପ୍ରତିବାଦ ସଭା ଅନୁଷ୍ଠିତ ହୋଇଥିଲା । ପ୍ରବୀଣ ବିପିନଚନ୍ଦ୍ର ପାଲ ସେଠାରେ ମୁଖ୍ୟବକ୍ତା ଥିଲେ । ଚୁକ୍ତି ସପକ୍ଷରେ ରହିଥିବା ଭାବନାଗୁଡ଼ିକୁ ଏକତ୍ର କରାଇବାରେ ଯତୀନ୍ଦ୍ରମୋହନ ଏବଂ ତାଙ୍କର ସହକର୍ମୀମାନେ ଏତେ ଅଧିକ ପରିମାଣରେ ସଫଳ ହୋଇଥିଲେ ଯେ, ଦେଶବନ୍ଧୁଙ୍କ ବିରୋଧରେ ସଂଗଠିତ ହୋଇଥିବା ତଥାକଥିତ ସାଧାରଣ ବିରୋଧ ସେଦିନ ଆଉ ଆଦୌ ପ୍ରକଟ ହୋଇପାରି ନ ଥିଲା ।

(2) ଡିସେମ୍ବର 28 ତାରିଖରେ ସାର୍ ସୁରେନ୍ଦ୍ରନାଥ ବାନର୍ଜୀଙ୍କର ଅଧ୍ୟକ୍ଷତାରେ ଅନୁଷ୍ଠିତ ଆଉଗୋଟିଏ ସଭାରେ ପୂର୍ବାପେକ୍ଷା ତୀବ୍ରତର ଭାବରେ ସେହି ବିରୋଧର ଉପସ୍ଥାପନା କରାଯାଇଥିଲା । ଏହାକୁ ଏକ ସାଧାରଣ ସଭା ବୋଲି ପ୍ରଚାରିତ କରାଯାଇଥିବାରୁ ଯତୀନ୍ଦ୍ରମୋହନଙ୍କ ନେତୃତ୍ୱରେ ଚୁକ୍ତିର ସମର୍ଥକମାନେ ମଧ୍ୟ ସେହି ସଭାରେ ବହୁସଂଖ୍ୟାରେ ଆସି ଉପସ୍ଥିତ ହୋଇଥିଲେ । ସଭା ଆରମ୍ଭ ହେବାବେଳକୁ ସେଠାରେ ଚୁକ୍ତିର ସମର୍ଥକମାନେ ହିଁ ଅଧିକ ସଂଖ୍ୟାରେ ଉପସ୍ଥିତ

ରହିଥିବା ପରି ବୋଧ ହେଉଥିଲା । ସଭାସ୍ଥ ଶ୍ରୋତୃମଣ୍ଡଳୀର ହାବଭାବ ଦେଖି ସାର୍ ସୁରେନ୍ଦ୍ରନାଥ ଘୋଷଣା କରିଦେଲେ ଯେ, ବଙ୍ଗ-ଚୁକ୍ତି ବିରୋଧରେ ଏକ ଆଲୋଚନା କରିବାଲାଗି ହିଁ ଏହି ସଭାଟି ଡକା ଯାଇଥିଲା, ତେଣୁ, ‘‘ଯେଉଁମାନେ ଚୁକ୍ତିର ସପକ୍ଷରେ ଅଛନ୍ତି, ସେମାନେ ଏହି ସଭାରେ ଯୋଗ ଦେଇପାରିବେ ନାହିଁ ।’’ ଏତିକିରେ ହିଁ ଶ୍ରୋତାମାନଙ୍କ କ୍ରୋଧାଗ୍ନି ପ୍ରଜ୍ଜ୍ୱଳିତ ହୋଇଉଠିଲା । ତା’ପରେ ସାର୍ ସୁରେନ୍ଦ୍ରନାଥ କହିଲେ ଯେ, ସଭାରେ କେବଳ ଜଣେ ବ୍ୟକ୍ତି ହିଁ ଭାଷଣ ଦେବେ । ଯତୀନ୍ଦ୍ରମୋହନ ସେନଗୁପ୍ତ ଚୁକ୍ତିର ସପକ୍ଷରେ କହିବାଲାଗି ଠିଆ ହେବା ମାତ୍ରକେ, ସୁରେନ୍ଦ୍ରନାଥ ଏଡ଼େବଡ଼ ଗର୍ଜନ କରି ପୁନର୍ବାର ଘୋଷଣା କରିଦେଲେ, ‘‘ଭାଇମାନେ, ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ ଆହୂତ ସଭାର କାର୍ଯ୍ୟ ବର୍ତ୍ତମାନ ସରିଲା । ମୁଁ ସଭା ସାଙ୍ଗ ହେଲା ବୋଲି ଘୋଷଣା କରୁଛି ।’’ ଅର୍ଥାତ୍, ଏହାଦ୍ୱାରା ପ୍ରତିବାଦ-ସଭାଟି ପ୍ରକୃତରେ ବ୍ୟର୍ଥ ହୋଇଯାଇଥିଲା ।

ଦେଶବନ୍ଧୁ ଚିତ୍ତରଂଜନ ଓ ତାଙ୍କର ମୃତ୍ୟୁପରେ ଦେଶପ୍ରିୟ ସେନଗୁପ୍ତ ନେତୃତ୍ୱ ଗ୍ରହଣ କରିଥିବା ସମୟରେ ଦୁଇ ସଂପ୍ରଦାୟ ମଧ୍ୟରେ ସେହି ଅନାବଶ୍ୟକ ଏକାତ୍ମତାକୁ ପ୍ରତିଷ୍ଠିତ କରି ରଖିବାରେ ଏହି ଚୁକ୍ତି ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ ଭାବରେ ଫଳପ୍ରଦ ପ୍ରତିପାଦିତ ହୋଇଥିଲା । ମାତ୍ର ଯେତେବେଳେ ପରବର୍ତ୍ତୀ କାଳରେ ବଙ୍ଗ-ଚୁକ୍ତିକୁ ବିଦାୟ ଦିଆଯାଇଥିଲା, ଗାନ୍ଧିଜୀ ହିନ୍ଦୁ-ମୁସଲମାନ ବୁଝାମଣାର ସ୍ଥାପନା ନିମନ୍ତେ କେତେ ଥର ଉଦ୍ୟମ କଲେ, ମାତ୍ର ତାଙ୍କର ପ୍ରଚେଷ୍ଟା ସଫଳତା ଲାଭ କରିପାରି ନ ଥିଲା । ଦେଶବନ୍ଧୁଙ୍କର ଗଠନାତ୍ମକ ବିଶେଷ ଉଦ୍ୟମଦ୍ୱାରା ଯେଉଁ ସୁଯୋଜିତ ଯୋଜନାଟି ତିଆରି ହୋଇଥିଲା ଏବଂ ବଙ୍ଗ-ଚୁକ୍ତିର ଆକାରରେ ରୂପ ଲାଭ କରିଥିଲା, ଦୁର୍ଭାଗ୍ୟବଶତଃ ତାହାକୁ ସମସ୍ତେ ଭୁଲ ବୁଝିଥିଲେ ଓ ଗ୍ରହଣ କଲେ ନାହିଁ । ଏକ ଜାତୀୟ ଆଭିମୁଖ୍ୟ ସମ୍ଭବ କରିବା ଲାଗି କରା ଯାଇଥିବା ଉଦ୍ୟମର ଏହିପରି ଏକାଧିକ ସୁଯୋଗ ନଷ୍ଟ ହୋଇ ଯାଇଥିଲା ଏବଂ ସାଂପ୍ରଦାୟିକ ସମସ୍ୟା କ୍ରମଶଃ ଅଧିକରୁ ଅଧିକ ଗମ୍ଭୀର ଆକାର ଧାରଣ କରିବାରେ ମଧ ଲାଗିଥିଲା । ଇତ୍ୟବସରେ ଜାତୀୟ କଂଗ୍ରେସ ଏବଂ ରକ୍ଷଣଶୀଳ ଅସମ୍ମତମାନଙ୍କର କୌଣସି ଏକ ନିଷ୍ପତ୍ତି ଗ୍ରହଣ କରି ନ ପାରିବାର ଅକ୍ଷମତା ହେତୁ ଏବଂ ଭେଦ ସୃଷ୍ଟି କରି ଶାସନ କରିବାର ବ୍ରିଟିଶ କୂଟନୀତିର ପରିଣାମ ସ୍ୱରୂପ ମୁସ୍‌ଲିମ୍ ଲିଗ୍ ମଧ କ୍ରମଶଃ ଅଥଚ ନିଶ୍ଚିତ ଭାବରେ ମଞ୍ଚ ଉପରେ ଆତ୍ମ ଆବିର୍ଭୂତ ହୋଇଥିଲା ଏବଂ ବ୍ୟବଧାନଟିକୁ ଆହୁରି ଅଧିକ ବଢ଼ାଇଦେବାରେ ଲାଗିଲା । ଧର୍ମଗତ ମତାନ୍ଧତାକୁ ମଧ ଏହିପରି ଭାବରେ ଅତିଶୟ ପ୍ରାଧାନ୍ୟ ମିଳିଥିଲା । ଦୁଇଟି ଦଶକ ମଧ୍ୟରେ ତାହା ଏକ ଚରମ ସୀମାକୁ ସ୍ପର୍ଶ କଲା । ଫଳରେ ଭାରତବର୍ଷ ଦୁଇଭାଗ ହେଲା ଏବଂ ଆମର ସ୍ୱାଧୀନତା ମଧ ଖଣ୍ଡିଆ ହୋଇ ଆମ ହାତକୁ ଆସିଲା । ଚିତ୍ତରଂଜନଙ୍କର ଦୃଷ୍ଟି ଏବଂ ଯତୀନ୍ଦ୍ରମୋହନଙ୍କର ଦୂରଦୃଷ୍ଟିସମ୍ପନ୍ନ ବିଚାର (ଭାରତୀୟ ସ୍ୱାଧୀନତାପ୍ରାପ୍ତି ଲାଗି ହିନ୍ଦୁ-ମୁସଲମାନ ଏକତାକୁ ଅପରିହାର୍ଯ୍ୟ ପୂର୍ବାବଶ୍ୟକତା ରୂପେ ହାସଲ କରିବା) କୁ ସମସ୍ତେ ପ୍ରତ୍ୟାଖ୍ୟାନ କରି ଦେଇଥିଲେ । ଭବିଷ୍ୟତରେ ତାହାରି ଅବଶ୍ୟମ୍ଭାବୀ ପରିଣାମକୁ ହିଁ ଭୋଗ କରିବାକୁ ପଡ଼ିଥିଲା ।

## ଦେଶବନ୍ଧୁଙ୍କର ଦେହାବସାନ

ବିଦେଶୀ ଶାସନ ବିରୋଧରେ କରାଯାଇଥିବା ତୁମୁଳ ସଂଗ୍ରାମ ଏବଂ ଅବିଚ୍ଛିନ୍ନ ଅଭିଯାନଗୁଡ଼ିକ ଫଳରେ ଲଗାଏତ ଯେଉଁ ଚାପ ପଡ଼ିଲା ଏବଂ ଏଥି ସଙ୍ଗେ ସଙ୍ଗେ, ସ୍ୱାଧୀନତା ସଂଗ୍ରାମକୁ ଅଧିକ ତ୍ୱରାନ୍ୱିତ କରି ନେବାଲାଗି ତାଙ୍କର ସୁଅଭିପ୍ରେତ ଯୋଜନା ତଥା କାର୍ଯ୍ୟକ୍ରମଗୁଡ଼ିକ କ୍ଷେତ୍ରରେ

ଦେଶବାସୀଙ୍କ ସହିତ ତାଙ୍କର ଦୁର୍ଭାଗ୍ୟବଶତଃ ଯେଉଁପରି ଭାବରେ ଭୁଲ୍ ବୁଝାମଣାମାନ ହୋଇଥିଲା, ତାହା ଦେଶବନ୍ଧୁଙ୍କର ଆଗରୁ ଭଗ୍ନ ଅବସ୍ଥାରେ ରହିଥିବା ସ୍ୱାସ୍ଥ୍ୟ ପକ୍ଷରେ ଆଉ ସହ୍ୟ ହେଲା ନାହିଁ। ପଞ୍ଚାବନ ବର୍ଷ ବୟସରେ ଦାର୍ଜିଲିଂ ଠାରେ ହଠାତ୍ (16 ଜୁନ୍ 1925) ତାଙ୍କର ମୃତ୍ୟୁ ଘଟିଲା। ଦେଶର ସ୍ୱାଧୀନତା ସଂଗ୍ରାମକୁ ସେହି ଘଟଣା ଦାରୁଣ ଆଘାତ ଆଣି ଦେଇଥିଲା। ସମ୍ଭବ ହେଲେ ବ୍ରିଟିଶ୍ ସରକାରଙ୍କ ସହିତ ମଧ୍ୟ ଏକ ସମ୍ମାନଜନକ ବୁଝାମଣାରେ ପହଞ୍ଚି ରାଜନୀତିକ ଅଚଳ ଅବସ୍ଥାରେ ଏକ ସମାଧାନ ସମ୍ଭବ କରିବା ସକାଶେ ଆପଣା ଜୀବନର ଶେଷ କେତୋଟି ବର୍ଷରେ ଦେଶବନ୍ଧୁ ଯେଉଁ ସ୍ୱପ୍ନ ଦେଖୁଥିଲେ, ତାହା ଦେଶବାସୀ ସମସ୍ତଙ୍କୁ ତାଙ୍କର ଅତ୍ୟନ୍ତ ନିକଟବର୍ତ୍ତୀ କରାଇ ଆଣିଥିଲା। ମହାତ୍ମାଜୀ ସ୍ୱୟଂ ସେହି ଧାଡ଼ିର ପୁରୋଭାଗରେ ରହିଥିଲେ। ନିବାରୁଣ ମୃତ୍ୟୁ ଆସି ସବୁଠାରୁ ଅଧିକ ଆବଶ୍ୟକତା ରହିଥିବା ବେଳେ ହିଁ ସେହି ସବୁଠାରୁ ଅଧିକ ମୂଲ୍ୟବାନ୍ ଜୀବନର ଅକାଳ ଅବସାନ ଘଟାଇଲା।

## ଗାନ୍ଧିଜୀଙ୍କର ଅନ୍ୱେଷଣ - ଦେଶବନ୍ଧୁଙ୍କ ପରେ କିଏ ?

ଜାତୀୟ ବିପର୍ଯ୍ୟୟର ଠିକ୍ ଏହି ମୁହୂର୍ତ୍ତଟିରେ ଏବଂ ଦୁଃଖରେ ଗୁରୁ ହୋଇ ରହିଥିବା ଏକ ହୃଦୟରେ ଗାନ୍ଧିଜୀ ନିମ୍ନଲିଖିତ ଶବ୍ଦଗୁଡ଼ିକ ଦ୍ୱାରା ତାଙ୍କର ତୀବ୍ର ମନୋବେଦନାକୁ ବ୍ୟକ୍ତ କରିଥିଲେ: ''ନିଷ୍ଠୁର ନିୟତି ଆସି ଆମ ପାଖରୁ ଲୋକମାନ୍ୟଙ୍କୁ ଛଡ଼ାଇ ନେଇଯିବା ସମୟରେ ମୁଁ ଆପଣାକୁ ଅତ୍ୟନ୍ତ ଅସହାୟ ମନେ କରିଥିଲି। ଏପର୍ଯ୍ୟନ୍ତ ମଧ୍ୟ ମୁଁ ସେହି ଆଘାତଟିକୁ ପାର ହୋଇପାରି ନାହିଁ, କାରଣ ବର୍ତ୍ତମାନ ମଧ୍ୟ ମୁଁ ତାଙ୍କର ପ୍ରିୟ ଶିଷ୍ୟମାନଙ୍କୁ ପ୍ରବର୍ତ୍ତାଇବାରେ ଲାଗିଛି। ମାତ୍ର ଦେଶବନ୍ଧୁଙ୍କର ତିରୋଧାନ ମୋତେ ଏକ ଆହୁରି ଅଧିକ ଶୋଚନୀୟ ଅବସ୍ଥାରେ ପକାଇ ଦେଇଗଲା। କାରଣ, ଲୋକମାନ୍ୟ ବିଦାୟ ନେଇ ଗଲାବେଳେ ଦେଶରେ ଆଶା ପୂର୍ଣ୍ଣ ହୋଇ ରହିଥିଲା। ଆମେ ଏକ ସଂଗ୍ରାମର ପ୍ରାକ୍କାଳରେ ଅବସ୍ଥିତ ରହିଥିଲୁ। ମାତ୍ର ବର୍ତ୍ତମାନ-?'' ('ୟଙ୍ଗ ଇଣ୍ଡିଆ', ଜୁନ୍ 25,1925)

ଏହା ପୂର୍ବରୁ, ଥରେ (ଦେଶବନ୍ଧୁଙ୍କର ମୃତ୍ୟୁସମ୍ବାଦ ପାଇ) ଖୁଲନା ଠାରୁ କଲିକତା ଯାଉଥିବା ସମୟରେ ଗାନ୍ଧିଜୀ ଏବଂ ତାଙ୍କର ଜଣେ ଉତ୍ତମ ପୁରାତନ ବନ୍ଧୁ ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରାୟ ଗୋଟିଏ ଡବାରେ ଯାତ୍ରା କରୁଥିଲେ। ଦେଶବନ୍ଧୁଙ୍କ ଅନ୍ତେ କିଏ ନେତୃତ୍ୱର ଆସନ ଗ୍ରହଣ କରିବ, ଏହି ସୁଯୋଗରେ ଗାନ୍ଧିଜୀ ଆଚାର୍ଯ୍ୟ ରାୟଙ୍କର ପ୍ରତିକ୍ରିୟା ଜାଣିବାକୁ ଇଚ୍ଛା କରିଥିଲେ। ''ଆପଣ ସେନଗୁପ୍ତଙ୍କ ବିଷୟରେ କ'ଣ ଭାବୁଛନ୍ତି ?'' ପ୍ରକୃତରେ ଏହାହିଁ ତାଙ୍କ ପ୍ରଶ୍ନର ଅସଲ ମର୍ମ ଥିଲା। ଆଦୌ କୌଣସି ଅନ୍ୟ କଥା ନ ଭାବି ଆଚାର୍ଯ୍ୟ ରାୟ ତାହାର ଅନୁମୋଦନ କରିଥିଲେ। ଯତୀନ୍ଦ୍ର ମୋହନଙ୍କୁ ଅତ୍ୟନ୍ତ ଉତ୍ତମରୂପେ ଜାଣିଥିବାରୁ ସେ ଉତ୍ତର ଦେଇ କହିଥିଲେ ଯେ, ଚିତ୍ତ ପରେ (ସ୍ନେହରେ ସେ ଦେଶବନ୍ଧୁଙ୍କୁ ସେହିପରି ସମ୍ବୋଧନ କରୁଥିଲେ) ଯାବତୀୟ ମୁଖ୍ୟ ଭୂମିକାକୁ ଗ୍ରହଣ କରିବା ପାଇଁ ଯତୀନ୍ଦ୍ର ହିଁ ତାଙ୍କର ଯୋଗ୍ୟ ଉତ୍ତରାଧିକାରୀ ହୋଇପାରିବେ। ★

## ଯତୀନ୍ଦ୍ରମୋହନ ସ୍ୱରାଜ ପାର୍ଟିର ମୁଖ୍ୟ ହେଲେ

ଦେଶବନ୍ଧୁଙ୍କର ମୃତ୍ୟୁର ବାରଦିନ ପରେ ତାଙ୍କର ଶ୍ରାଦ୍ଧୋତ୍ସବ ଅନୁଷ୍ଠିତ ହୋଇସାରିବା ପରେ ତିରୋହିତ ନେତାଙ୍କର ଅକାଳ ବିଦାୟରେ ଶୋକପ୍ରକାଶ କରିବାପାଇଁ ଏବଂ ସମ୍ଭବ ହେଲେ ପାର୍ଟିର

---

★ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ ଜନ୍ମ ଶତବାର୍ଷିକୀ ଗ୍ରନ୍ଥ, ପୃଷ୍ଠା-271

ସଭାପତି ରୂପେ ତାଙ୍କର ଜଣେ ଉତ୍ତରାଧିକାରୀ ବାଛିବାପାଇଁ ସ୍ୱରାଜ୍ୟ ପାର୍ଟିର ଗୋଟିଏ ବୈଠକ ବସିଲା । ସେହି ବୈଠକରେ ବହୁ ସଭ୍ୟ ଉପସ୍ଥିତ ଥିଲେ; ପ୍ରଦେଶର ଚାରିଆଡୁ ଚାରିଶହ ସଭ୍ୟ ଯୋଗ ଦେବାକୁ ଆସିଥିଲେ । ବିଜୟ କୁମାର ବସୁ ସଭାପତିତ୍ୱ କରୁଥିଲେ । କାର୍ଯ୍ୟସୂଚୀର ଦ୍ୱିତୀୟ ବିଷୟଟି ରୂପେ ପାର୍ଟିଲାଗି ଜଣେ ନୂତନ ମୁଖ୍ୟ ନିର୍ବାଚନ କରିବାର କଥା ପଡ଼ିବା ସଙ୍ଗେ ସଙ୍ଗେ ଯତୀନ୍ଦ୍ରମୋହନ ସେନଗୁପ୍ତ ଏବଂ ମୌଲାନା ଅକ୍ରାମ୍ ଖାଁ, - ଏହିପରି ଦୁଇଜଣଙ୍କ ନାମ ପ୍ରସ୍ତାବିତ ହୋଇଥିଲା । ଯତୀନ୍ଦ୍ରମୋହନଙ୍କୁ ସମର୍ଥନ କରି ମୌଲାନା ନିଜର ନାମକୁ ପ୍ରତ୍ୟାହାର କରି ନେଇଥିଲେ । ଏହିପରି ଭାବରେ ଉପସ୍ଥିତ ସମସ୍ତଙ୍କର ହର୍ଷଧ୍ୱନି ମଧ୍ୟରେ ଦେଶପ୍ରିୟ ସ୍ୱରାଜ୍ୟ ପାର୍ଟିର ସଭାପତି ଘୋଷିତ ହୋଇଥିଲେ ।

ଠିକ୍ ସେହି ସମୟରେ ଗାନ୍ଧିଜୀ ପାର୍ଟିର ସେହି ବୈଠକରେ ଆସି ପହଞ୍ଚିଥିଲେ ଏବଂ ସର୍ବସମ୍ମତି କ୍ରମେ ହୋଇଥିବା ଏହି ନିଷ୍ପତ୍ତିକୁ ଆପଣାର ଆଶୀର୍ବାଦ ଦେଇଥିଲେ । ଏକ ସଂକ୍ଷିପ୍ତ ଭାଷଣ ଦେଇ ସେ ହର୍ଷ ପ୍ରକାଶ କରିଥିଲେ ଯେ ଆଦୌ କୌଣସି ଅନୈକ୍ୟ ନ ଥାଇ ସଭ୍ୟମାନେ ସେମାନଙ୍କର ପରବର୍ତ୍ତୀ ନେତାଙ୍କର ନିର୍ବାଚନ ସମ୍ପନ୍ନ କରିପାରିଛନ୍ତି । ସେ ସବୁଠାରୁ ଅଧିକ ଆନ୍ତରିକତା ସହିତ ଠିକ୍ ସେହି କଥା ହିଁ ଇଚ୍ଛା କରୁଥିଲେ । ସିଏ ଏହି ସକାଶେ ଆହୁରି ଅଧିକ ଆନନ୍ଦିତ ହୋଇଥିଲେ ଯେ, ଯିଏ ସର୍ବଦା ଦେଶବନ୍ଧୁଙ୍କର ପାଖେପାଖେ ରହି ଆସିଥିଲେ ଏବଂ ଦେଶବନ୍ଧୁ ଅନୁପସ୍ଥିତ ରହୁଥିବା ସମୟରେ ସୁପ୍ରକଟ ସାମର୍ଥ୍ୟ ସହକାରେ ବିଧାନସଭାରେ ପାର୍ଟିର ନେତୃତ୍ୱ କରିପାରିଥିଲେ, ସେହି ବ୍ୟକ୍ତି ତାଙ୍କର ଯୋଗ୍ୟ ଉତ୍ତରାଧିକାରୀ ଭାବରେ ନିର୍ବାଚିତ ହୋଇଛନ୍ତି । ପାର୍ଟିର ନୂତନ ନେତାଙ୍କୁ ସକଳ ପ୍ରକାର ସମର୍ଥନ ଦେବାଲାଗି ସେ ସଦସ୍ୟମାନଙ୍କୁ ନିବେଦନ କରିଥିଲେ ଏବଂ ସେମାନଙ୍କର ସମସ୍ତଙ୍କର ସଫଳତା କାମନା କରିଥିଲେ ।

### ବଙ୍ଗ ପ୍ରଦେଶ କଂଗ୍ରେସ କମିଟିର ମୁଖ୍ୟ

ଦେଶବନ୍ଧୁଙ୍କର ପ୍ରୟାଣ ପରେ ଜୁନ୍ 29 ତାରିଖରେ ବଙ୍ଗ ପ୍ରଦେଶ କଂଗ୍ରେସ କମିଟିର ପ୍ରଥମ ବୈଠକ ବସିଥିଲା । ଶୋକପ୍ରସ୍ତାବ ବ୍ୟତୀତ ଦେଶବନ୍ଧୁ ଚିତ୍ତରଞ୍ଜନଙ୍କ ସ୍ଥାନରେ ଜଣେ ନୂତନ ସଭାପତି ନିର୍ବାଚନ କରିବା ଏହି ବୈଠକର ମୁଖ୍ୟ କାର୍ଯ୍ୟ ଥିଲା । ଚିତ୍ତରଂଜନଙ୍କର ଜୀବିତାବସ୍ଥାରେ ଯତୀନ୍ଦ୍ରମୋହନ ବଙ୍ଗ ପ୍ରଦେଶ କଂଗ୍ରେସ କମିଟିର ଉପସଭାପତି ରହି ଆସିଥିଲେ । ତେଣୁ ଅତ୍ୟନ୍ତ ଔଚିତ୍ୟର ସହିତ ହିଁ ବର୍ତ୍ତମାନ ସଭାପତି ପଦ ପାଇଁ ସେନଗୁପ୍ତଙ୍କର ନାମ ହିଁ ସର୍ବପ୍ରଥମେ ପ୍ରସ୍ତାବିତ ହୋଇଥିଲା । ଆଉଜଣେ ବ୍ୟକ୍ତି ଲଳିତମୋହନ ଦାସଙ୍କର ନାମଟି ବି ପ୍ରସ୍ତାବିତ ହୋଇଥିଲା, ମାତ୍ର ସିଏ ସଙ୍ଗେ ସଙ୍ଗେ ନିଜର ନାମକୁ ପ୍ରତ୍ୟାହୃତ କରି ନେଇଥିଲେ । ତା'ପରେ ଯତୀନ୍ଦ୍ରମୋହନ ସର୍ବସମ୍ମତିକ୍ରମେ ବଙ୍ଗ ପ୍ରଦେଶ କଂଗ୍ରେସ କମିଟିର ସଭାପତି ନିର୍ବାଚିତ ହେଲେ । ଦେଶବନ୍ଧୁ ଚାଲିଯିବା ପରେ ପ୍ରକୃତ ବ୍ୟକ୍ତି ହିଁ ତାଙ୍କର ଶୂନ୍ୟ ସ୍ଥାନଟିର ପୂରଣ କରିବାକୁ ଆସିଲେ ବୋଲି ସମୁଦାୟ ରାଜନୀତିକ ମହଲରେ ସନ୍ତୋଷ ବ୍ୟକ୍ତ କରାଯାଇଥିଲା ।

### ମେୟର ପଦର ସମସ୍ୟା

ତୃତୀୟତଃ, କଲିକତା କର୍‌ପୋରେସନ୍‌ର ମେୟର୍ ପଦଟିର ପୂରଣ ହେବା ମଧ୍ୟ ବାକି ରହିଥିଲା । ଅନ୍ୟ ଦୁଇଟି ପରି ଏହି ପଦଟିର ପୂରଣ କରିବା ଆଦୌ ସେତେ ସହଜ ନ ଥିଲା । ବୃହତ୍ ସଂଖ୍ୟାଗରିଷ୍ଠ ଜନଗଣଙ୍କର ପ୍ରତିନିଧିତ୍ୱ କରୁଥିବା ଦୁଇଟିଯାକ ମୁଖ୍ୟ ସଂଗଠନ,- ପ୍ରାଦେଶିକ କଂଗ୍ରେସ

ଏବଂ ସ୍ୱରାଜ୍ୟ ପାର୍ଟି- ଯତୀନ୍ଦ୍ରମୋହନ ସର୍ବସମ୍ମତିକ୍ରମେ ଏହି ଦୁଇଟିର ମୁଖ୍ୟରୂପେ ନିର୍ବାଚିତ ହୋଇଯିବାରୁ, ଜାତୀୟତାବାଦୀ ମହଲରେ ସେହି ଏକା ବ୍ୟକ୍ତିଙ୍କୁ ହିଁ କଲିକତାର ମେୟର୍ ପଦରେ ଅଭିଷିକ୍ତ କରିବା ସପକ୍ଷରେ ମଧ୍ୟ ଏକ ମତୈକ୍ୟ ପ୍ରକାଶ ପାଇଥିଲା । ଦେଶବନ୍ଧୁଙ୍କର ଜୀବନକାଳରେ ସେହି ଗୌରବମୟ ପର୍ଯ୍ୟାୟରେ ଦେଶରେ ଯେପରି ଏକ ସଂହତିଯୁକ୍ତ ନେତୃତ୍ୱ ସମ୍ଭବ ହୋଇଥିଲା, ଏହା ପରେ ମଧ୍ୟ ନିଶ୍ଚିତ ଭାବରେ ତାହା ସମ୍ଭବ ହୋଇପାରିବ ବୋଲି ସମସ୍ତେ ଇଚ୍ଛା ପ୍ରକାଶ କରିଥିଲେ ।

ଆପଣାର ବହୁମୂଲ୍ୟ ଜୀବନର ବିନିମୟରେ ଦେଶବନ୍ଧୁ ଯେଉଁ ସଂହତିଯୁକ୍ତ ନେତୃତ୍ୱର ସ୍ୱପ୍ନ ଦେଖିଥିଲେ, ବର୍ତ୍ତମାନ ତାହାରି ଏକ ଅତ୍ୟାବଶ୍ୟକତା ରହିଛି ବୋଲି ଗାନ୍ଧିଜୀ ଜୋର୍ ଦେଇ କହିଥିଲେ । ଯତୀନ୍ଦ୍ରମୋହନଙ୍କ ବିଷୟରେ ଆପଣାର ମତକୁ ସ୍ପଷ୍ଟ କରିଦେଇ ସେ ଅଳ୍ପଦିନ ପରେ 'ୟଙ୍ଗ୍ ଇଣ୍ଡିଆ'ରେ ଏକ ସୁଚିନ୍ତିତ ଲେଖା ମଧ୍ୟ ଲେଖିଥିଲେ । ସୁବିଦିତ ଆଇରିସ୍ ନେତା ମାକ୍ସୁଇନିଙ୍କ ସହିତ ତାଙ୍କର ତୁଳନା କରି ସେ ଲେଖିଥିଲେ :

''...ସେହି ଲକ୍ଷ୍ୟର ସାଧନ ନିମନ୍ତେ ଦେଶବନ୍ଧୁ କଲିକତା କର୍ପୋରେସନକୁ ମଧ୍ୟ ଅଧିକାର କରିଥିଲେ ଏବଂ କଂଗ୍ରେସର ଶକ୍ତିକୁ ସୁଦୃଢ଼ କରିବା ପାଇଁ ତାହାକୁ ଅତ୍ୟନ୍ତ ସଫଳ ଭାବରେ କାମରେ ଲଗାଇଥିଲେ । ଅଥବା, ବଙ୍ଗ ପ୍ରଦେଶରେ କଂଗ୍ରେସର ଅଭିନ୍ନ ପ୍ରତୀକ ହୋଇ ରହିଥିବା ସ୍ୱରାଜ୍ୟ ପାର୍ଟିକୁ ଦୃଢ଼ କରିବାଲାଗି ସେ ତାହା କରିଥିଲେ । ତଦ୍ୱାରା ସେ କର୍ପୋରେସନ୍‌ର ସ୍ୱାର୍ଥରକ୍ଷାରେ କୌଣସି ଅବହେଳା ପ୍ରଦର୍ଶନ କରିଥିଲେ କି ? ମୁଁ ସାହସର ସହିତ ଜୋର୍ କରି କହିବି ଯେ, ନାଇଁ ସେ ସେପରି ମୋଟେ କରି ନ ଥିଲେ । ବରଂ, ତାଙ୍କର ରାଜନୀତିକ ଆକାଙ୍‌କ୍ଷାଟି ପରି ପୌରସଭାସ୍ଥ ତାଙ୍କର ଅକାଙ୍‌କ୍ଷା ମଧ୍ୟ ସମାନ ଭାବରେ ଉଚ୍ଚ ହୋଇ ରହିଥିଲା ।

ତେବେ ତାଙ୍କ ସ୍ଥାନରେ ବର୍ତ୍ତମାନ କିଏ ମେୟର୍‌ରୂପେ ନିଯୁକ୍ତ ହେବେ ? ତାଙ୍କରି ଦ୍ୱାରା ସୃଷ୍ଟ ପାର୍ଟି ହିଁ ସେହି କଥାଟିର ନିଷ୍ପତ୍ତି କରିଦେଇ ପାରିବ । ପୂର୍ବତନ ମହାନ୍ ନେତା ଯେଉଁ ପରମ୍ପରାର ନିର୍ମାଣ କରି ଯାଇଛନ୍ତି, ସେହି ପରମ୍ପରାକୁ ସର୍ବୋତ୍ତମ ରୂପେ ଅବ୍ୟାହତ ରଖିପାରୁଥିବା ବ୍ୟକ୍ତି ହିଁ ସେହି ପଦରେ ଅଭିଷିକ୍ତ ହୋଇପାରିବ । ଏପରି ଜଣେ ବ୍ୟକ୍ତି, ଯିଏ କି ପାର୍ଟି ଲାଗି ଆହୁରି ଅଧିକ ସମ୍ମାନ ଅର୍ଜନ କରି ଆଣିପାରିବେ, ବିଶୁଦ୍ଧ ଭାବରେ ପୌରସଭାର ପରିଚାଳନା କରିପାରିବା ଦୃଷ୍ଟିରୁ ମଧ୍ୟ ପାର୍ଟି ଭିତରେ ସିଏ ସର୍ବୋତ୍ତମ ବ୍ୟକ୍ତି ହୋଇଥିବେ । ମୋ' ମତରେ ଏହି ଯାବତୀୟ ଦୃଷ୍ଟିରୁ ଶ୍ରୀ ଯତୀନ୍ଦ୍ରମୋହନ ସେନଗୁପ୍ତ ହିଁ ସର୍ବୋତ୍ତମ ବ୍ୟକ୍ତି ଥିଲେ ଏବଂ ସକଳ ଆବଶ୍ୟକତାର ପୂରଣ କରୁଥିଲେ । ସ୍ୱରାଜ୍ୟ ପାର୍ଟିର ନେତୃତ୍ୱ ଦେବାଲାଗି ଯଦି ତାଙ୍କ ଭିତରେ ଦକ୍ଷତା ରହିଥିଲା, ତେବେ, ଗୌରବ ତଥା ସମ୍ମାନର ସହିତ ଦେଶବନ୍ଧୁଙ୍କର ଭୂମିକାଟିକୁ ଗ୍ରହଣ କରିପାରିବା ସକାଶେ ମଧ୍ୟ ପାର୍ଟିର ସମ୍ଭାବ୍ୟ ସକଳ ଆନୁଷଙ୍ଗିକ ସମର୍ଥନ ତାଙ୍କର ଅବଶ୍ୟ ପ୍ରାପ୍ୟ ହୋଇ ରହିଥିଲା ।

'ମାତ୍ର, ଏହିପରି ଭାବରେ ତାଙ୍କର ମୁଣ୍ଡ ଉପରେ ଯେ ଏକାବେଳେକେ ତିନୋଟି ବୋଝ ଆସି ଲଦାହେଲା, ସିଏ ସେଗୁଡ଼ିକ ପ୍ରତି ନ୍ୟାୟବିଚାର କରିପାରିବେ କି ? ଆଗରୁ ସିଏ ପ୍ରଦେଶ କଂଗ୍ରେସ କମିଟିର ସଭାପତି ରୂପେ ନିର୍ବାଚିତ ହୋଇ ସାରିଥିଲେ । ସିଏ କ'ଣ ସ୍ୱରାଜ୍ୟ ପାର୍ଟିରେ ନେତୃତ୍ୱ ନେଇପାରିବେ ଏବଂ ଯୁଗପତ୍ ଭାବରେ କଂଗ୍ରେସର ରଚନାତ୍ମକ

କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରି ପାରିବେ ଓ କଲିକତା ସହରର ମେୟର୍ ହିସାବରେ ଆପଣାର ଗୁରୁଦାୟିତ୍ୱକୁ ମଧ୍ୟ ତୁଲାଇ ପାରିବେ କି ? ଯଦି ଏହି ବୋଝଗୁଡ଼ିକ ତାଙ୍କୁ ବଳି ପଡ଼ିବ, ତେବେ ତାଙ୍କ ଉପରେ ଏହି ତିନୋଟିଯାକ ସମ୍ମାନକୁ ଆଣି ଲଦିଦେବାର ପ୍ରକୃତରେ କି ପ୍ରୟୋଜନ ଥିଲା ? ମୁଁ ଏହି ପ୍ରଶ୍ନର ଏହି ଉତ୍ତର ଦେବି ଯେ, ଶ୍ରୀଯୁକ୍ତ ସେନଗୁପ୍ତ ନିଜେ ହିଁ ସର୍ବୋତ୍ତମ ଭାବରେ ନିଜ ସାମର୍ଥ୍ୟର ବିଚାର କରିପାରିବେ ।''

ଗାନ୍ଧିଜୀ ପୁଣି ଲେଖିଥିଲେ,

''କ୍ଷମତାକୁ ନେଇ ତାଙ୍କ ଉପରେ ଜୋର୍ କରି ଲଦିଦେବା ଆଦୌ ଉଚିତ ହେବ ନାହିଁ । କାରଣ, ତାହା ପ୍ରକୃତରେ ଏକ ଅତ୍ୟନ୍ତ ବିପଜ୍ଜନକ ପ୍ରୟୋଗରେ ପରିଣତ ହେବ । ସେହି ଦୃଷ୍ଟିରୁ ବିଚାର କଲେ ତାଙ୍କୁ ସ୍ୱରାଜ୍ୟ ପାର୍ଟିର ନେତାପଦରେ ଅଳଙ୍କୃତ କରି ରଖିବା ମଧ୍ୟ ବିପଦର ବିଷୟ ହେବ ।.... ପ୍ରକୃତ ଯୋଗ୍ୟତା ଥିବା କୌଣସି କଂଗ୍ରେସ ଲୋକ, ଦେଶବନ୍ଧୁଙ୍କର ଏହି ଉତ୍ତରାଧିକାରୀଙ୍କ କଥା ତ ଅନେକ ପରେ ଯାଇ ଆସିବ,- କଦାପି କେବଳ ପଦସମ୍ମାନ ଲାଭ କରିବା ନିମନ୍ତେ ହିଁ ପଦସମ୍ମାନ ଗ୍ରହଣ କରିପାରିବ ନାହିଁ ।....

''ମୁଁ ଭାବୁଛି, ଶ୍ରୀ ସେନଗୁପ୍ତଙ୍କର ସ୍ଥିତିକୁ ମାକ୍‌ସୁଇନିଙ୍କର ସ୍ଥିତି ସହିତ ତୁଳନା କରାଯାଇ ପାରିବ; ମାକ୍‌ସୁଇନ କର୍କ ସହରର ଲର୍ଡ୍ ମେୟର୍ ହେବାକୁ ଇଚ୍ଛା କରିଥିଲେ । ଆପଣା ଲାଗି କୌଣସି ସମ୍ମାନ ଅର୍ଜନ କରିବାପାଇଁ ଯେ ସେ ସେପରି କରିଥିଲେ ତା ନୁହେଁ, ମାତ୍ର ସେହି ସମ୍ମାନାସ୍ପଦ ଉଚ୍ଚ ସ୍ଥାନଟିରେ ବସୁଥିବା ଯେକୌଣସି ବ୍ୟକ୍ତିକୁ ଯେଉଁ ବିପଦର ସମ୍ମୁଖୀନ ହେବାକୁ ପଡୁଥିଲା, ସେହି ବିପଦଟିକୁ ଅଙ୍ଗେ ନିଭାଇବାକୁ ହିଁ ସେ ସେପରି କରିଥିଲେ । ଦେଶବନ୍ଧୁଙ୍କର ଉତ୍ତରାଧିକାରୀଙ୍କର ଏହି ପଦଟିରେ ସମ୍ଭବତଃ ମାକ୍‌ସୁଇନି ଯେତିକି ବିପଦର ସମ୍ମୁଖୀନ ହୋଇଥିଲେ, ତାହାଠାରୁ ଅଧିକ ବିପଦ ନିହିତ ହୋଇ ରହିଛି । ମାକ୍‌ସୁଇନି ନିଜର ଜୀବନକୁ ବିପନ୍ନ କରି ଦେଇଥିଲେ । ଦେଶବନ୍ଧୁଙ୍କର ଉତ୍ତରାଧିକାରୀଙ୍କୁ ଆପଣାର ସମସ୍ତ ସୁଖ୍ୟାତିକୁ ହିଁ ବିପନ୍ନ କରିବାକୁ ପଡ଼ିଥିଲା । ଦେଶବନ୍ଧୁ ଯେଉଁ ତ୍ୟାଗ ଏବଂ ଗୌରବର ଦୃଷ୍ଟାନ୍ତ ଦେଖାଇ ଯାଇଛନ୍ତି, ସେଥିରୁ ଏତେ ଟିକିଏ ମାତ୍ର ସ୍ଖଳିତ ହୋଇଗଲେ ମଧ୍ୟ ଦେଶବନ୍ଧୁଙ୍କର ଉତ୍ତରାଧିକାରୀଙ୍କୁ ସାରା ଜୀବନ ଲାଗି ଆପଣାର ସମସ୍ତ ସୁଖ୍ୟାତିକୁ ହରାଇବାକୁ ପଡ଼ିବ; - ଏହା ହେଉଛି ଏକ ଜୀବନ୍ତ ମୃତ୍ୟୁ, କେବଳ ଶରୀରର ମୃତ୍ୟୁଠାରୁ ଅଧିକ ପୀଡ଼ାଦାୟକ । ତେଣୁ ମୁଁ ନିଜକୁ ଓ ମୋ'ର ବନ୍ଧୁମାନଙ୍କୁ କଲିକତା ସହରର ମେୟର୍ ହେବାଲାଗି ଶ୍ରୀଯୁକ୍ତ ସେନଗୁପ୍ତ କରୁଥିବା ଦାବିକୁ ସମର୍ଥନ କରିବାନିମନ୍ତେ ବୁଝାଇବାକୁ ଚେଷ୍ଟା କରିଥିଲି । ଏବଂ ମୁଁ କୃତଜ୍ଞତା ସହିତ ଏଠାରେ ଏହିକଥା ଲିପିବଦ୍ଧ କରିବାକୁ ଯାଉଛି ଯେ, କଂଗ୍ରେସ ଦଳ ତଥା କଂଗ୍ରେସ ମ୍ୟୁନିସିପାଲ୍ ପାର୍ଟି ଉଭୟେ ମୋ' ଯୁକ୍ତିକୁ ବୁଝିଲେ, ତାହାର ଔଚିତ୍ୟକୁ ହୃଦୟଙ୍ଗମ କଲେ ଏବଂ ମାତ୍ର ଅଳ୍ପ କେତେଜଣ ସଦସ୍ୟଙ୍କୁ ଛାଡ଼ିଦେଲେ ଶ୍ରୀଯୁକ୍ତ ସେନଗୁପ୍ତଙ୍କର ମନୋନୟନକୁ ଗ୍ରହଣ କରି ନେଇଥିଲେ । ମୁଁ କେବଳ ଏତିକି ଆଶା କରିବି ଯେ, ସେମାନେ ଆପଣାର ଯଥାଶକ୍ତି ତାଙ୍କର ବୋଝଟିକୁ ହାଲୁକା କରିବାକୁ ସବୁମନ୍ତେ ନିଷ୍ଠୟ ଚେଷ୍ଟା କରିବେ । ମୋ' ମନରେ ଆଦୌ କୌଣସି ସନ୍ଦେହ ନାହିଁ ଯେ, ଦେଶବନ୍ଧୁ ଯେଉଁ ଉଚ୍ଚ ମାନର ଦୃଷ୍ଟାନ୍ତ ଦେଖାଇ ଯାଇଛନ୍ତି, ଶ୍ରୀ ସେନଗୁପ୍ତ ବାସ୍ତବ କ୍ଷେତ୍ରରେ ସେହି ଦୃଷ୍ଟାନ୍ତକୁ ଅବଶ୍ୟ ବଜାୟ ରଖିବେ ।....

ପୌରସଂସ୍ଥାର ସଦସ୍ୟ ହେବା ବିଷୟରେ ମୋ'ର ଯେଉଁ ଆକର୍ଷଣ ରହିଛି ଏବଂ ସେହି ଭୂମିକାଟିର ପ୍ରକୃତ ମହତ୍ତ୍ୱ ବିଷୟରେ ମୋର ଯେଉଁ ଜ୍ଞାନ ରହିଛି, ତାହା ସତ୍ତ୍ୱେ ଯେ ମୁଁ ଜଣେ ବ୍ୟକ୍ତିଙ୍କ ମୁଣ୍ଡ ଉପରେ ତିନୋଟିଯାକ କାର୍ଯ୍ୟକୁ ଏପରି ବିପଦପୂର୍ଣ୍ଣ ଭାବରେ ନେଇ ଲଦିଦେବାର ପରାମର୍ଶ ଦେଉଛି, ତାହାର କାରଣ ହେଉଛି ବର୍ତ୍ତମାନର ପରିସ୍ଥିତିକୁ ମୁଁ ଏକ ଅଭୂତପୂର୍ବ ମୁହୂର୍ତ୍ତ ବୋଲି ବିଚାର କରୁଛି, ଏବଂ ଏହି ମୁହୂର୍ତ୍ତଟିର ମୁକାବିଲା କରିବାଲାଗି ଏକ କଠୋର, ଏପରିକି ଏକ ବିପଜ୍ଜନକ ପଦକ୍ଷେପ ଗ୍ରହଣ କରିବାର ପ୍ରୟୋଜନ ରହିଛି।... ଭଗବାନ୍ ଶ୍ରୀଯୁକ୍ତ ସେନଗୁପ୍ତଙ୍କୁ ଆବଶ୍ୟକ ପ୍ରଜ୍ଞା ଏବଂ ସମର୍ଥତା ପ୍ରଦାନ କରନ୍ତୁ।''

ଏହି ନିଷ୍ପତ୍ତିଟିର ଦୃଢ଼ ବିରୋଧ ହୋଇଥିଲା। କଂଗ୍ରେସ କିମ୍ବା ସ୍ୱରାଜ୍ୟ ପାର୍ଟି ସହିତ ସଂପୂର୍ଣ୍ଣ ଭାବରେ ଏକମତ ହୋଇପାରୁ ନ ଥିବା କଲିକତାର ଏକ ନାଗରିକଗୋଷ୍ଠୀ ବ୍ୟତୀତ, ସାମ୍ବାଦିକ ମହଲର ଏକ ବର୍ଗ, ବିଶେଷ କରି 'ବେଙ୍ଗଲୀ' କାଗଜ (ଶ୍ରୀ ସୁରେନ୍ଦ୍ରନାଥ ବାନର୍ଜୀଙ୍କ ଦ୍ୱାରା ପ୍ରତିଷ୍ଠିତ)ର ପୃଥ୍ୱୀଶ ଚନ୍ଦ୍ର ରାୟଙ୍କର ସମ୍ପାଦକତ୍ୱରେ ପରିଚାଳିତ ସମ୍ପାଦନା (ଶ୍ରୀ ରାୟ ପରେ ଦେଶବନ୍ଧୁଙ୍କର ଏକ ଜୀବନୀ ଲେଖିଥିଲେ) ଶ୍ରୀ ସେନଗୁପ୍ତ ମେୟରରୂପେ ନିର୍ବାଚିତ ହେବାର ସମ୍ଭାବନା ବିରୋଧରେ ବିଷୋଦ୍‌ଗାର କରିବାକୁ ଲାଗିଲେ। ଏକ ସମ୍ପାଦକୀୟ ଅଗ୍ରଲେଖାରେ ଯତୀନ୍ଦ୍ରମୋହନଙ୍କୁ 'ଚିଟାଗଙ୍ଗରୁ ଆଗତ ଜଣେ ଅନୁପ୍ରବେଶକାରୀ' ବୋଲି ବର୍ଣ୍ଣନା କରା ଯାଇଥିଲା। ଆଙ୍ଗ୍ଲୋ-ଇଣ୍ଡିଆନ୍ କାଗଜଗୁଡ଼ିକ ମଧ୍ୟ ପ୍ରାୟ ସେହିପରି ଏକ ସ୍ୱରରେ ନିନ୍ଦାଗାନ କରିବାକୁ ଆରମ୍ଭ କଲେ ଏବଂ ପୁନର୍ବାର ଆଉ ଜଣେ କଂଗ୍ରେସ ନେତା କର୍ପୋରେସନ୍‌ର ପ୍ରଶାସନରେ ମୁଖ୍ୟ ଭାବରେ ବସିବାକୁ ଆସୁଛନ୍ତି ବୋଲି ନାନା ବିରୋଧାତ୍ମକ ଟିପ୍ପଣୀ କରିଥିଲେ।

କାର୍ଯ୍ୟକାରୀ କମିଟି ଏହିପରି ଏକ ନିଷ୍ପତ୍ତି କରିଥିଲା ଯେ, ନିର୍ଦ୍ଦେଶନାଗତ ଐକ୍ୟର ପ୍ରୟୋଜନ ଦୃଷ୍ଟିରୁ କଲିକତାର ମେୟରପଦ ବଙ୍ଗ ପ୍ରଦେଶ କଂଗ୍ରେସ କମିଟିର ସଭାପତିଙ୍କୁ ହିଁ ଅର୍ପଣ କରାଯିବା ଉଚିତ। ସପକ୍ଷରେ 31 ଓ ବିପକ୍ଷରେ 6 ଭୋଟ୍ ଦ୍ୱାରା କଂଗ୍ରେସ ମ୍ୟୁନିସିପାଲ ଆସୋସିଏସନ୍ ସେହି ନିଷ୍ପତ୍ତିକୁ ଗ୍ରହଣ କରି ନେଇଥିଲା। ଆସୋସିଏସନ୍‌ର ଏହି ବୈଠକରେ କୌଣସି ଗୋପନୀୟତା ରଖାଯାଇ ନ ଥିଲା ଏବଂ ଜନସାଧାରଣ ପ୍ରାୟ ସଙ୍ଗେ ସଙ୍ଗେ ସେହି ନିଷ୍ପତ୍ତି ବିଷୟରେ ଅବଗତ ହୋଇ ପାରିଥିଲେ। ଏପରି ଶୁଣା ଯାଇଥିଲା, ''ଯଦି କରଦାତାମାନେ ପ୍ରକୃତରେ ଶ୍ରୀଯୁକ୍ତ ସେନଗୁପ୍ତଙ୍କର ବିରୋଧ କରୁଛନ୍ତି, ତେବେ, ଆମ୍ଭର ଜାଣତାରେ ପ୍ରତିନିଧିମୂଳକ କୌଣସି ଗୋଟିଏ ସଭାରେ ମଧ୍ୟ ତାଙ୍କର ଏଥିରେ ସମର୍ଥନ ନାହିଁ ବୋଲି ଘୋଷଣା କରାଗଲା ନାହିଁ କିପରି ? ଏପରି ଏକ ସଭାର ଆୟୋଜନ କରିବାକୁ କିମ୍ବା ସେଥିରେ ବକ୍ତା ହେବାକୁ ଆଦୌ ସଂଗଠକମାନଙ୍କର ଅଭାବ ହୋଇ ନ ଥାନ୍ତା। କେତେକ ନିର୍ଦ୍ଦିଷ୍ଟ ସଂବାଦପତ୍ରରେ ସଂପାଦକୀୟ ଲେଖାମାନଙ୍କରେ ଯେତେଯେତେ ପ୍ରତିବାଦ ବ୍ୟକ୍ତ କରାଯାଇଛି, ସେଥିରୁ ବିଚାର କରି ଏପରି ନିଶ୍ଚୟ କୁହାଯାଇ ପାରିବ। 'ଚିଟାଗଙ୍ଗର ସେହି ତରୁଣ ବାରିଷ୍ଟର'ଙ୍କର ନିନ୍ଦାଗାନ କରିବାଲାଗି ହୁଏତ ଏଠି ସେଠି ଜଣେ ଜଣେ ବ୍ୟକ୍ତି ଅବଶ୍ୟ ମିଳି ପାରିବେ। ମାତ୍ର ମନେହେଉଛି, ଏକ ଗୋଷ୍ଠୀ ହିସାବରେ କରଦାତାମାନେ ଦୃଢ଼ଭାବରେ ତାଙ୍କ ପଛରେ ରହିଛନ୍ତି। ଅନ୍ତତଃ ଏତିକି ପେଷ୍ଟ ବୁଝିପାରିବା ଲାଗି ସେମାନଙ୍କଠାରେ ସମର୍ଥ ବୁଦ୍ଧି ରହିଛି ଯେ, ବାହାରକୁ ବେଶ୍ ଅହାନିକର ବୋଲି ମନେ ହେଉଥିବା ଜଣେ ଅରାଜନୀତିକ ବ୍ୟକ୍ତିଙ୍କୁ ମେୟର୍ କରିବାର ପ୍ରସ୍ତାବଟି ପଛରେ ବହିଃସ୍ଥ କୌଣସି ସଂଗଠନକୁ କ୍ଷମତାର ହସ୍ତାନ୍ତରଟି କରିବାଲାଗି ଏକ ଅନିଚ୍ଛା ଯେ ଅତ୍ୟନ୍ତ ସୁନିଶ୍ଚିତ ଭାବରେ ରହିଛି, ସେମାନେ ତାହା ଅବଶ୍ୟ ବୁଝିପାରୁଛନ୍ତି।''

## ଯତୀନ୍ଦ୍ରମୋହନଙ୍କର ପଥ ପରିଷ୍କାର ହୋଇଗଲା

ଆସ୍ତେ ଆସ୍ତେ ଅଥଚ ଅତ୍ୟନ୍ତ ନିଶ୍ଚିତ ଭାବରେ ଯତୀନ୍ଦ୍ରମୋହନଙ୍କର ମେୟରପଦ ଲାଭ କରିବାର ପଥ ପରିଷ୍କାର ହୋଇ ଯାଉଥିଲା । ଅବଶ୍ୟ ଏକଥା ସତ ଯେ ନ୍ୟସ୍ତସ୍ୱାର୍ଥମାନଙ୍କ ଆଡୁ ଏଥିଲାଗି ପ୍ରକୃତ ବିରୋଧ ମଧ ହୋଇଥିଲା । ମେୟର୍ ନିର୍ବାଚନ ପୂର୍ବରୁ ପ୍ରତ୍ୟେକ ପ୍ରାର୍ଥୀ ପ୍ରଥମେ କର୍ପୋରେସନ୍‌ର ଜଣେ ପୌରପ୍ରତିନିଧି ରୂପେ ନିର୍ବାଚିତ ହେବା ଆବଶ୍ୟକ ହେଉଥିଲା । ବିରୋଧୀ ପକ୍ଷର କେତେକ ପୌରସଭା ସଦସ୍ୟ ନୂତନ ପୌର-ପ୍ରତିନିଧି ଏବଂ ମେୟର୍ ନିର୍ବାଚନକୁ ଏକାବେଳକେ କରାଇବାକୁ ଚେଷ୍ଟା କରିଥିଲେ । ଅବଶ୍ୟ ପୌରସଭାର କଂଗ୍ରେସ ସଭ୍ୟମାନେ ସେହିସବୁ ପ୍ରଚେଷ୍ଟାକୁ ପଣ୍ଡ କରି ଦେଇଥିଲେ ଏବଂ ପୌର-ପ୍ରତିନିଧିଙ୍କ ନିର୍ବାଚନକୁ ଜୁଲାଇ 14 ତାରିଖ ଲାଗି ଏବଂ ମେୟର୍‌ଙ୍କ ନିର୍ବାଚନକୁ ଜୁଲାଇ 16 ତାରିଖ ଲାଗି ଧାର୍ଯ୍ୟ କରି ଦେଇଥିଲେ ।

ଏକ ତୁମୁଳ କଳହ ଓ କୋଳାହଳମୟ ବୈଠକରେ ପୌରପ୍ରତିନିଧି ନିର୍ବାଚନ ସମ୍ପନ୍ନ ହୋଇଥିଲା । ରାୟ ବାହାଦୁର ରାମତାରଣ ବାନର୍ଜୀ ବୈଠକର ସଭାପତି ହୋଇଥିଲେ । ଶ୍ରୀ ଟି. ସି. ଗୋସ୍ୱାମୀ ଯତୀନ୍ଦ୍ରମୋହନ ସେନଗୁପ୍ତଙ୍କ ନାମ ପ୍ରସ୍ତାବ କରିଥିଲେ ଏବଂ ଡାକ୍ତର ବି. ସି. ଘୋଷ ସେହି ପ୍ରସ୍ତାବର ଅନୁମୋଦନ କରିଥିଲେ । ଉଇଲ୍‌ସନ୍, ରାୟ ବାହାଦୁର କେ. ସି. ଘୋଷ ଏବଂ ସାର୍ ପ୍ରଫୁଲ୍ଲଚନ୍ଦ୍ର ରାୟ, ଏହିପରି ତିନୋଟି ଅନ୍ୟନାମ ମଧ ପ୍ରସ୍ତାବିତ ହୋଇଥିଲା । ପ୍ରଫୁଲ୍ଲଚନ୍ଦ୍ର ତାଙ୍କର ନାମକୁ ପ୍ରତ୍ୟାହାର କରି ନେଉଛନ୍ତି ବୋଲି ଜଣାଇ ଦେଇଥିଲେ; ମାତ୍ର ଅନେକ ବିଳମ୍ବରେ ହେଲେ ମଧ ରାୟ ବାହାଦୁର ହରିଧନ ଦତ୍ତ ଏବଂ ସି. ସି. ବିଶ୍ୱାସ (ମନୋନୀତ ଦୁଇଜଣ ପୌରସଭା ସଦସ୍ୟ) ସେନଗୁପ୍ତଙ୍କ ବିରୋଧରେ କେତେକ ଆପତ୍ତି ଉତ୍ଥାପନ କରିବାର ପ୍ରୟାସ କରିଥିଲେ ମଧ କଂଗ୍ରେସ ନେତାଙ୍କୁ ସମର୍ଥନ ଜଣାଇ ହେଉଥିବା ବିପୁଳ ହର୍ଷଧ୍ୱନି ମଧରେ ସେମାନଙ୍କର ଆପତ୍ତି ସ୍‌ତେଅବା କୁଆଡ଼େ ବୁଡ଼ିଗଲାପରି ମନେହେଲା । ନିର୍ବାଚନର ଫଳାଫଳରୁ ଜଣାଗଲା ଯେ, ଯତୀନ୍ଦ୍ରମୋହନ ଅତ୍ୟଧିକ ସଂଖ୍ୟାଗରିଷ୍ଠତା ଲାଭ କରି 45 ଟି ଭୋଟ ପାଇଛନ୍ତି । ତାଙ୍କର ପ୍ରତିଦ୍ୱନ୍ଦ୍ୱୀମାନେ ଅତ୍ୟନ୍ତ ନୈରାଶ୍ୟଜନକ ଭାବରେ ପରାସ୍ତ ହୋଇଛନ୍ତି । ଏହିପରି ଭାବରେ ଚିତ୍ତରଂଜନଙ୍କ ସ୍ଥାନରେ ଶ୍ରୀ ସେନଗୁପ୍ତ ଜଣେ ପୌରପ୍ରତିନିଧି ରୂପେ ନିର୍ବାଚିତ ହେଲେ ବୋଲି ଘୋଷିତ ହୋଇଥିଲେ ।

ଏହାର ତିନିଦିନ ପରେ ମେୟରପଦ ଲାଗି ନିର୍ବାଚନ ହେଲା । ସେହି ବୈଠକକୁ କର୍ପୋରେସନ୍ କାଉନ୍‌ସିଲ୍‌ର ଏକ ଅସାଧାରଣ ବୈଠକ ବୋଲି ହିଁ କୁହାଯିବ । ଉପସ୍ଥିତ ଥିବା ବିଶିଷ୍ଟ ବ୍ୟକ୍ତିମାନଙ୍କ ମଧରେ ସେତେବେଳେ କଲିକତା ଆସିଥିବା କେତେକ ପ୍ରବୀଣ କଂଗ୍ରେସ ନେତାଙ୍କର ନାମ ଉଲ୍ଲେଖ କରାଯାଇ ପାରିବ । ସେମାନେ ହେଉଛନ୍ତି; ସର୍ଦ୍ଦାର ବିଠଲଭାଇ ପଟେଲ, ସରୋଜିନୀ ନାଇଡୁ, ଯମୁନା ଦାସ ମେହେଟା, ରଙ୍ଗସ୍ୱାମୀ ଆୟଙ୍ଗାର୍ ଓ ନେଲୀ ସେନଗୁପ୍ତ । ସେମାନଙ୍କ ବ୍ୟତୀତ କଲିକତା ସହରର ବିଭିନ୍ନ କ୍ଷେତ୍ରର ବିଶିଷ୍ଟ ନାଗରିକମାନେ ମଧ ଉପସ୍ଥିତ ରହିଥିଲେ ।

## ସେ ଶେଷରେ ମେୟର୍‌ରୂପେ ନିର୍ବାଚିତ ହେଲେ

ସହକାରୀ ମେୟର୍ ଏଚ୍. ଏସ୍. ସୁରାୱର୍ଦ୍ଦୀ ସେହି ବୈଠକରେ ସଭାପତିତ୍ୱ କରୁଥିଲେ । ଜଣେ ପୌରପ୍ରତିନିଧି ହିସାବରେ ଶ୍ରୀଯୁକ୍ତ ସେନଗୁପ୍ତ ଶପଥ ଗ୍ରହଣ କରି ସାରିବା ପରେ ମେୟର୍ ନିର୍ବାଚନର ବେଳ ଆସି ପହଞ୍ଚିଲା । ଜଣେ ବିଶିଷ୍ଟ ପୌରସଭା ସଭ୍ୟ (ମନୋନୀତ) ରାୟ ବାହାଦୁର ରାମତାରଣ

ବାନର୍ଜୀ ମେୟରପଦ ସକାଶେ ଯତୀନ୍ଦ୍ରମୋହନ ସେନଗୁପ୍ତଙ୍କ ନାମ ପ୍ରସ୍ତାବ କରି ପ୍ରସ୍ତାବ ଆଗତ କରିଥିଲେ । ଏମ୍. ଏ. ରଜ୍ଜାକ ପ୍ରସ୍ତାବର ଅନୁମୋଦନ କଲେ ଏବଂ ପୌରପ୍ରତିନିଧି ଚାନ୍ଦ ହୁସେନ୍ ତାହାକୁ ସମର୍ଥନ କରିଥିଲେ । ଏକ ଅତ୍ୟନ୍ତ ଉତ୍ତେଜନାପୂର୍ଣ୍ଣ ବାତାବରଣ ମଧ୍ୟରେ ଜଣେ ୟୁରୋପୀୟ ସଭ୍ୟ ପ୍ରସ୍ତାବର ବିରୋଧରେ କହିଥିଲେ । ତା'ପରେ ପୌରସଭା ସଭ୍ୟ ଷ୍ଟୁଆର୍ଟ ସ୍ମିଥ୍ ଜି. ମାର୍ଗାନ୍‌ଙ୍କ ନାମ ପ୍ରସ୍ତାବ କଲେ । ମିସ୍ ଲଏଡ୍ ତାହାର ଅନୁମୋଦନ କଲେ । ନିର୍ବାଚନ କିପରି କରାଯିବ, ସେହି ବିଷୟ ନେଇ ଏକ ମତଭେଦ ଦେଖା ଦେଇଥିଲା । ମାର୍ଗାନ୍‌ଙ୍କର ସମର୍ଥକମାନେ ଭୋଟ୍‌ବାକ୍ସରେ ଭୋଟ୍ ନିଆଯାଉ ବୋଲି ଯୁକ୍ତି କରିଥିଲେ; ଅପର ପକ୍ଷରେ କଂଗ୍ରେସ ସଭ୍ୟମାନେ ହାତ ଟେକି ଭୋଟ୍ ଦିଆଯାଉ ବୋଲି ଦାବି କଲେ । ଏକ ବୃହତ୍ ବହୁମତରେ ଦ୍ୱିତୀୟ ପଦ୍ଧତିଟି ଗୃହୀତ ହୋଇଗଲା । ଭୋଟ୍ ନିଆଯିବା ପରେ ଯତୀନ୍ଦ୍ରମୋହନଙ୍କ ସପକ୍ଷରେ 52ଟି ଭୋଟ୍ ପଡ଼ିଥିବାର ଦେଖାଗଲା । ତାଙ୍କର ପ୍ରତିଦ୍ୱନ୍ଦ୍ୱୀ 17 ଟି ଭୋଟ୍ ପାଇଥିଲେ । ଅର୍ଥାତ୍ ଯତୀନ୍ଦ୍ରମୋହନ ନିର୍ବାଚିତ ହେଲେ ବୋଲି ଘୋଷିତ ହେଲା ।

କକ୍ଷରେ ହର୍ଷଧ୍ୱନି ଖେଳି ଯାଇଥିଲା । ଇଉରୋପୀୟ ଗୋଷ୍ଠୀର ନେତା ଫେଲ୍‌ପସ୍‌ଙ୍କ ନେତୃତ୍ୱରେ ସଭ୍ୟମାନଙ୍କର ଏକ ଦଳ ସେନଗୁପ୍ତଙ୍କୁ ମେୟରଙ୍କ ଆସନ ଯାଏ ପାଛୋଟି ନେଇଥିଲେ । ତଳେ କକ୍ଷରେ ଏବଂ ଉପରେ ପରିଦର୍ଶକ ଗ୍ୟାଲେରିରେ ଉପସ୍ଥିତ ସମସ୍ତେ ସେତେବେଳେ ବିପୁଳ ହର୍ଷଧ୍ୱନି କରିବାରେ ଲାଗିଥାନ୍ତି ।

**କଲିକତାର ମେୟର୍‌ପଦ**

ମଝିରେ କେବଳ ଗୋଟିଏ ବ୍ୟତିକ୍ରମ ସହିତ (ପରେ ଦ୍ରଷ୍ଟବ୍ୟ) ପ୍ରାୟ ଲାଗ୍‌ଲାଗ୍ ପାଞ୍ଚଥର ସକାଶେ କଲିକତାର ମେୟର୍ ନିଯୁକ୍ତ ହୋଇ ଯତୀନ୍ଦ୍ରମୋହନ ଯେଉଁ ଅଦ୍ଭୁତ ଦକ୍ଷତାର ପରିଚୟ ଦେଇଥିଲେ, କର୍ପୋରେସନ୍‌ର ଇତିହାସରେ ତାହାର ପ୍ରକୃତରେ କୌଣସି ପଟାନ୍ତର ନାହିଁ । ବିରୋଧୀ ପକ୍ଷର ସଭ୍ୟମାନେ, ବିଶେଷତଃ ଇଉରୋପୀୟ ଗୋଷ୍ଠୀଟି, ଯତୀନ୍ଦ୍ରମୋହନ ଗୋଟିଏ ରାଜନୀତିକ ଦଳ (କଂଗ୍ରେସ)ର ନେତା ହୋଇଥିବାରୁ ପ୍ରଥମେ ପ୍ରଥମେ କେତେକ ଆପତ୍ତି କରିଥିଲେ ହେଁ ମେୟର୍ ଆସନରେ ବସି ସେନଗୁପ୍ତ ଯେ ପ୍ରକୃତରେ ଜନସାଧାରଣଙ୍କର ହିଁ ଜଣେ ବ୍ୟକ୍ତିରୂପେ କାର୍ଯ୍ୟ କରୁଛନ୍ତି, ଏକ ଆଶ୍ୱସ୍ତକାରୀ ବିସ୍ମୟର ସହିତ ସେମାନେ ତାହା ଦେଖିବାକୁ ପାଇଥିଲେ ଏବଂ କ୍ରମଶଃ ତାଙ୍କ ବିରୋଧରେ ଥିବା ସେମାନଙ୍କର ଭୁଲ୍‌ଧାରଣାକୁ ଦୂର କରି ଦେଇଥିଲେ । ନିଜର ବ୍ୟକ୍ତିତ୍ୱ ଦ୍ୱାରା ସେ ଜଣେ ଅତୀବ ଜ୍ଞାନସଂପନ୍ନ ପୌରନେତା ରୂପେ ଆପଣାର ପରିଚୟ ଦେଇଥିଲେ, ସର୍ବଦା ନିଷ୍ପକ୍ଷ ଓ ଉଦାର ଥିଲେ ଏବଂ ଦଳ, ମତ‌ ବିଶ୍ୱାସ, ବର୍ଣ୍ଣ ତଥା ସଂପ୍ରଦାୟ ନିର୍ବିଶେଷରେ ସବୁ ନାଗରିକଙ୍କର ସ୍ୱାର୍ଥର ସମଗ୍ର ଉନ୍ନତି ବିଧାନ ଲାଗି ସର୍ବଦା ତତ୍ପର ହୋଇ ରହିଥିଲେ ।

ବହୁଳ ସଂଖ୍ୟାରେ ବାଳିକାମାନଙ୍କ ପାଇଁ ପ୍ରାଥମିକ ବିଦ୍ୟାଳୟଗୁଡ଼ିକର ସ୍ଥାପନା,- ମେୟର୍ ହିସାବରେ ତାଙ୍କର ପ୍ରଥମ ପଦଗ୍ରହଣ କାଳର (1925-26) ଏହାହିଁ ହେଉଛି ଉଲ୍ଲେଖଯୋଗ୍ୟ ଘଟଣା । ସେତେବେଳେ ଖ୍ରୀଷ୍ଟିଆନ୍ ମିସନାରୀମାନଙ୍କ ତରଫରୁ ଯେଉଁସବୁ ବିଦ୍ୟାଳୟ ସ୍ଥାପିତ ହୋଇଥିଲା, ଏଗୁଡ଼ିକ ହେଉଛି ତାହାର ବାହାରେ । ଏଗୁଡ଼ିକର ଉଚ୍ଚ ଶିକ୍ଷା-ମାନ ରହିଥିଲା । ଚିକିତ୍ସା ଏବଂ ସ୍ୱାସ୍ଥ୍ୟସେବା କ୍ଷେତ୍ରରେ ମଧ୍ୟ ଉନ୍ନତି ଘଟିଥିଲା; ସ୍ୱାସ୍ଥ୍ୟରକ୍ଷା, ଜଳ ସରବରାହ, ଖାଦ୍ୟ ଓ ଦୁଗ୍ଧଯୋଗାଣ, ରାସ୍ତାନିର୍ମାଣ ଓ ଯୋଗାଯୋଗ କ୍ଷେତ୍ରରେ ପ୍ରଭୂତ ଉନ୍ନତି ସାଧିତ

ହୋଇଥିଲା । ସହରରେ ରହିଥିବା ବସ୍ତିଗୁଡ଼ିକର ଉନ୍ନତି ହେଲା, 'ମ୍ୟୁନିସିପାଲ୍ ଗେଜେଟ୍' ପ୍ରକାଶିତ ହେଲା ଏବଂ ସମବାୟ ଭଣ୍ଡାରମାନ ଖୋଲାଗଲା । ସର୍ବୋପରି, ଯତୀନ୍ଦ୍ରମୋହନ ସାଂପ୍ରଦାୟିକ ସଂହତି ତଥା ସଦ୍‌ଭାବ ବିଷୟରେ ବିଶେଷ ଦୃଷ୍ଟି ରଖିଥିଲେ । ହିନ୍ଦୁ ଏବଂ ମୁସଲମାନ ମାନଙ୍କ ମଧରେ ଭ୍ରାତୃଭାବର ସଂପର୍କ ପ୍ରତିଷ୍ଠାକୁ ସେ ଜାତୀୟ ଉନ୍ନତିର ସର୍ବପ୍ରଧାନ ଅବଲମ୍ବନ ବୋଲି ମାନୁଥିଲେ ଏବଂ ଏହି କ୍ଷେତ୍ରରେ ତାଙ୍କର ସମ୍ମାନାସ୍ପଦ ପୂର୍ବଗାମୀ ଦେଶବନ୍ଧୁ ଚିତ୍ତରଂଜନଙ୍କର ପଦାଙ୍କ ଅନୁସରଣ କରିଥିଲେ । ମେୟର୍‌ପଦରେ ରହିଥିବାର ସଂକ୍ଷିପ୍ତ ମିଆଦଟିରେ ଦେଶବନ୍ଧୁ ଜଣେ ପୁରୋଗାମୀ ରୂପେ ପୌରଶାସନଗତ ପ୍ରଗତିକାମୀ ଆଦର୍ଶକୁ ନିର୍ଦ୍ଧାରିତ କରିଦେଇ ଯାଇଥିଲେ । ଯତୀନ୍ଦ୍ରମୋହନ ସେଗୁଡ଼ିକୁ କାର୍ଯ୍ୟରେ ପରିଣତ କରିବାଲାଗି ସଦାସଚେତନ ହୋଇ ରହିଥିଲେ । ବସ୍ତୁତଃ, ଦେଶବନ୍ଧୁଙ୍କର କାର୍ଯ୍ୟନିର୍ଘଣ୍ଟକୁ, ଦେଶବନ୍ଧୁଙ୍କର ଆଦର୍ଶଗୁଡ଼ିକୁ ଅବ୍ୟବଚ୍ଛିନ୍ନ ଭାବରେ କାର୍ଯ୍ୟକାରୀ କରିବାର ଏକ ବ୍ରତସାଧନା ବୋଲି କୁହାଯାଇପାରିବ । କଲିକତାର ମେୟର୍ ରୂପେ ନିଯୁକ୍ତ ହୋଇ ଯତୀନ୍ଦ୍ରମୋହନଙ୍କ ଉପରେ ଭାରତର ବୃହତ୍ତମ ନଗରୀର ପ୍ରଧାନ ପାଳକ ଭାବରେ କାର୍ଯ୍ୟ କରିବାର ଗୁରୁଦାୟିତ୍ୱ ଆସି ନ୍ୟସ୍ତ ହୋଇଥିଲା । କଲିକତା ଏସିଆରେ ତଥା ବ୍ରିଟିଶ୍ କମନ୍‌ୱେଲ୍‌ଥରେ ଦ୍ୱିତୀୟ ବୃହତ୍ତମ ନଗରୀ ଥିଲା ।

ମେୟର୍ ହିସାବରେ ସେନଗୁପ୍ତଙ୍କର ପ୍ରଥମ କାର୍ଯ୍ୟକାଳଟି 1926 ମାର୍ଚ୍ଚ ମାସରେ ପୂରିଯିବାରୁ ତାଙ୍କର ନାମ ଆଉଥରେ ସେହି ପଦ ପାଇଁ ପ୍ରସ୍ତାବିତ ହୋଇଥିଲା । 1926 ଏପ୍ରିଲ ପହିଲାଦିନ ମେୟର୍‌ପଦ ଲାଗି ନିର୍ବାଚନ ହେଲା । ସେହି ପଦ ସକାଶେ ଶରତଚନ୍ଦ୍ର ବୋଷ୍ ଯତୀନ୍ଦ୍ରମୋହନଙ୍କର ନାମ ଆଗତ କଲେ ଏବଂ ଏମ୍.ଏ.ରଜାକ ତାହାର ଅନୁମୋଦନ କରିଥିଲେ । ଆଉ ଅନ୍ୟ ଦ୍ୱିତୀୟ ପ୍ରାର୍ଥୀ ନଥିବାରୁ ବିପୁଳ ହର୍ଷଧ୍ୱନି ମଧରେ ଯତୀନ୍ଦ୍ରମୋହନ ଦ୍ୱିତୀୟ ଥର ପାଇଁ କଲିକତାର ମେୟର୍ ରୂପେ ନିର୍ବାଚିତ ହେଲେ ବୋଲି ଘୋଷଣା କରାଗଲା । ମେୟର୍ ହିସାବରେ ତାଙ୍କର ପ୍ରଥମ କାର୍ଯ୍ୟକାଳ ମାତ୍ର ଆଠମାସର ଏକ ସଂକ୍ଷିପ୍ତ ସମୟ ଥିଲା (ଦେଶବନ୍ଧୁଙ୍କର ମୃତ୍ୟୁ ପରେ ମିଆଦଟିର ଯେତିକି ବାକି ଥିଲା ସେତିକି) ସତ, ତଥାପି, ସେହି ସ୍ୱଳ୍ପ ମିଆଦ ମଧରେ ବି ସେ ପୌରସଭାସ୍ଥ ସବୁ ଗୋଷ୍ଠୀଙ୍କର ବିପୁଳ ବିଶ୍ୱାସ, ଆସ୍ଥା ଏବଂ ପ୍ରଶଂସା ଅର୍ଜନ କରି ପାରିଥିଲେ; ଉପରୁ ତଳ ପର୍ଯ୍ୟନ୍ତ ମ୍ୟୁନିସିପାଲ୍ କର୍ପୋରେସନ୍‌ର ବିରାଟ ପ୍ରଶାସନିକ କର୍ମୀମଣ୍ଡଳୀର ମଧ ତାଙ୍କଠାରେ ପୂର୍ଣ୍ଣ ପ୍ରତ୍ୟୟ ରହିଥିଲା । କହିବା ବାହୁଲ୍ୟ, ସବୁ ନାଗରିକଙ୍କର ପ୍ରଶଂସାଭାଜନ ହୋଇପାରିଥିଲେ ।

ଦ୍ୱିତୀୟ ଥର ପାଇଁ ନିର୍ବାଚିତ ହେବା ପରେ ଯତୀନ୍ଦ୍ରମୋହନ ପ୍ରମୁଖ ସବୁ ପୌରସଭା ସଭ୍ୟଙ୍କର ଅଭିନନ୍ଦନ ଦ୍ୱାରା ଅଭିଭୂତ ହୋଇ ଯାଇଥିଲେ; ସେମାନେ ସମସ୍ତେ ସେହି ଅବସରରେ ଭାଷଣ ଦେଇଥିଲେ । ଏପରିକି, ସି. ସି. ବିଶ୍ୱାସ, ରାୟ ବାହାଦୁର ଏନ୍. ଏନ୍. ବାନର୍ଜୀ ଓ ଏଚ୍. ଇ. ୱାଟ୍‌ସନ୍‌ଙ୍କ ପରି ତାଙ୍କର ପୂର୍ବତନ ସମାଲୋଚକ ଏବଂ ବିରୋଧୀମାନେ ମଧ ଭାଷଣ ଦେଲେ । ପୌରସଂସ୍ଥାର ପାଳକ ରୂପେ ସେ ଯେପରି ଅସାଧାରଣ ଭାବରେ ନିଜ ଦାୟିତ୍ୱଗୁଡ଼ିକର ନିର୍ବାହ କରିଥିଲେ, ସେମାନେ ସମସ୍ତେ ତାହାର ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ । ସେମାନେ ଏହି କଥାଟିକୁ ସବୁଠାରୁ ଅଧିକ ଉଲ୍ଲେଖଯୋଗ୍ୟ ବୋଲି ଜୋର୍‌ଦେଇ କହିଥିଲେ ଯେ, ଆପଣାର ଯାବତୀୟ ନିଷ୍ପତ୍ତି ଏବଂ କାର୍ଯ୍ୟାନୁଷ୍ଠାନରେ ପ୍ରତ୍ୟେକ କ୍ଷେତ୍ରରେ ଯତୀନ୍ଦ୍ରମୋହନ ସର୍ବଦା ଦଳଗତ ରାଜନୀତିର ଊର୍ଦ୍ଧ୍ୱରେ ରହିଥିଲେ । କରଦାତାମାନଙ୍କର ସର୍ବାଙ୍ଗୀଣ ହିତସାଧନ ହିଁ ତାଙ୍କ ସେବାର ଅସଲ ମୀମାଂସକ ହୋଇ ରହିଥିଲା ଏବଂ ତେଣୁ, ମହାନଗରୀ କଲିକତାର ମେୟର୍ ହେବାର ଗୁରୁଦାୟିତ୍ୱଟିକୁ

ତାଙ୍କୁ ପୁନର୍ବାର ଅର୍ପଣ କରିବାଲାଗି ସେ ଏକାନ୍ତ ଭାବରେ ଉପଯୁକ୍ତ ହିଁ ଥିଲେ । ତାଙ୍କର ଦ୍ୱିତୀୟ କାର୍ଯ୍ୟକାଳ ପ୍ରଥମଟିର ତୁଳନାରେ ଅଧିକ ବିଶିଷ୍ଟ-ଘଟଣାବହୁଳ ହେବ ଏବଂ ଆହୁରି ଅଧିକ ସଫଳତା ହାସଲ କରିପାରିବ ବୋଲି ସେମାନେ ସମସ୍ତେ କାମନା କରିଥିଲେ ।

ଯତୀନ୍ଦ୍ରମୋହନ ଅଭିନନ୍ଦନର ଐକ୍ୟତାନଟିର ଏକ ଯଥାଯଥ ଉତ୍ତର ଦେଇଥିଲେ । ତାଙ୍କର ଭାଷଣକୁ ସମସ୍ତେ ସଂପୂର୍ଣ୍ଣ ଭାବରେ ଆନ୍ତରିକତାଯୁକ୍ତ ଏବଂ ଜଣେ ଯଥାର୍ଥ କର୍ମଯୋଗୀର ସୁଚିନ୍ତିତ ଉକ୍ତିରୂପେ ସ୍ୱାଗତ କଲେ ।

ଭଲ କାମରେ ଶହେ ବାଧା ଆସି ପହଞ୍ଚିଥାଏ ବୋଲି ବଙ୍ଗଳାଭାଷାରେ ଏକ ପ୍ରବାଦ ରହିଛି । ଯତୀନ୍ଦ୍ରମୋହନ ମେୟର୍ ହିସାବରେ ଆପଣାର ଦ୍ୱିତୀୟ କାର୍ଯ୍ୟକାଳ ଆରମ୍ଭ କରିବା ସଙ୍ଗେ ସଙ୍ଗେ, - ପ୍ରକୃତରେ କହିବାକୁ ଗଲେ ଠିକ୍ ତହିଁ ଆରଦିନ, (ଏପ୍ରିଲ୍ 2 1926)- ସହରରେ ଏକ ବଡ଼ ଧରଣର ସାଂପ୍ରଦାୟିକ ଦଙ୍ଗା ଘଟିଥିଲା । ବ୍ୟାଣ୍ଡବାଜା ବଜାଇ, ଗୀତ ବୋଲି ଆର୍ଯ୍ୟସମାଜୀମାନେ ହରିସନ୍ ରୋଡ୍ (ବର୍ତ୍ତମାନ ମହାତ୍ମା ଗାନ୍ଧି ରୋଡ଼) ଏବଂ ଚିତ୍ତରଂଜନ ଆଭିନିଉର ଛକଜାଗାରେ ଥିବା ଗୋଟିଏ ମସ୍‌ଜିଦ୍ ପାଖ ଦେଇ ଏକ ଶୋଭାଯାତ୍ରା ନେଇ ଗଲାବେଳେ ଦଙ୍ଗା ଆରମ୍ଭ ହୋଇ ଯାଇଥିଲା । ହିଂସାତ୍ମକ ଘଟଣାମାନ ସାରା ବଡ଼ ବଜାରରେ ବ୍ୟାପିଗଲା ଏବଂ କେତେକ ପ୍ରାଣହାନି ମଧ ଘଟିଥିଲା । ଏହି ଅବସ୍ଥା ରାତିସାରା ଲାଗି ରହିଲା ଓ ଅନ୍ୟାନ୍ୟ ଅଞ୍ଚଳକୁ, ବିଶେଷ କରି ସହରର ମଧ ଓ ପୂର୍ବ ଅଞ୍ଚଳକୁ ମଧ ବ୍ୟାପି ଯାଇଥିଲା । ଚତୁର୍ଦ୍ଦିଗରେ ଆତଙ୍କ ଖେଳିଗଲା ଏବଂ ସେହି ଉନ୍ମାଦକର ପରିସ୍ଥିତି ମଧରେ ଏଠିସେଠି କେତେକ ଆକ୍ରମଣ ମଧ ହେଲା । ଉପଦ୍ରୁତ ଅଞ୍ଚଳଗୁଡ଼ିକରେ ଧନ ଓ ଜୀବନ ବିପନ୍ନ ହୋଇପଡ଼ିଲା ।

''ମସ୍‌ଜିଦ୍ ସାମନାରେ ଗୀତବାଦ୍ୟ ହୋଇପାରିବ କି ନାହିଁ,'' ଏହି ପ୍ରଶ୍ନଟି ସରକାରୀ ସ୍ତରରେ ଏକ ଅସାଧାରଣ ଓ ଦୁର୍ଭାଗ୍ୟଜନକ ମତଭେଦର ଉଦ୍ରେକ କରିଥିଲା ଓ ତାହାର ଆପାତତଃ କୌଣସି ସମାଧାନ ରହିଛି ବୋଲି ଆଦୌ ଦେଖାଗଲା ନାହିଁ । ସାଧାରଣଙ୍କ ତରଫରୁ ହେଉଥିବା ଉଦ୍ୟମଗୁଡ଼ିକରେ ମଧ ଆହୁରି କମ୍ ଆଶା ରହିଥିବା ପରି ମନେ ହେଉଥିଲା । ''ବିଭାଜନ ଦ୍ୱାରା ଶାସନ'' କରିବାର ସ୍ୱୀକୃତ ନୀତିଟି ଯେ ପ୍ରକୃତରେ କେଡ଼େ ଚମତ୍କାର ଭାବରେ ସଫଳ ହେଉଛି, ତାହା ଦେଖି ବିଦେଶୀ ଶାସନକର୍ତ୍ତାମାନେ ହୃଷ୍ଟ ହୋଇ ଉଠୁଥିଲେ । ହିନ୍ଦୁ ଓ ମୁସଲମାନ ମାନଙ୍କ ମଧରେ ଏକ ସ୍ଥାୟୀ ଏକତାର ପ୍ରତିଷ୍ଠା ହେବାର ଯେ ଅପରିହାର୍ଯ୍ୟ ଭାବରେ କେତେ ଅଧିକ ଆବଶ୍ୟକତା ରହିଛି, ଦେଶବନ୍ଧୁ ଚିତ୍ତରଂଜନ ତାହାକୁ ବହୁ ପୂର୍ବରୁ ହୃଦୟଙ୍ଗମ କରିଥିଲେ ଏବଂ ସେଥିଲାଗି ବଙ୍ଗ-ଚୁକ୍ତିର ପ୍ରଣୟନ କରିଥିଲେ । ଭାରତବର୍ଷ ତାହାର ସ୍ୱାଗତ କରିଥିଲା ଏବଂ ଶ୍ରୀମତୀ ସରୋଜିନୀ ନାଇଡୁଙ୍କର ସଭାପତିତ୍ୱରେ ବସିଥିବା ଭାରତୀୟ ଜାତୀୟ କଂଗ୍ରେସର କାନପୁର ଅଧିବେଶନରେ ତାହା ଗୃହୀତ ହୋଇଥିଲା । ଯତୀନ୍ଦ୍ରମୋହନ ସ୍ୱନେତାଙ୍କର ଏହି ନୀତିଟିକୁ ଅନୁସରଣ କରିଥିଲେ ଏବଂ ମ୍ୟୁନିସିପାଲ କର୍ପୋରେସନ୍ ଏବଂ ସାଧାରଣ କ୍ଷେତ୍ରର ଯାବତୀୟ ସମ୍ବନ୍ଧରେ ମଧ ସେହି ଅନୁସାରେ କାର୍ଯ୍ୟ କରିଥିଲେ । ଦୁର୍ଭାଗ୍ୟର କଥା ଯେ, ଅକର୍ମଣ୍ୟମାନେ ବଙ୍ଗ ତଥା ସମଗ୍ର ଭାରତବର୍ଷର ଭବିଷ୍ୟ ଲାଗି ଏତେ ଅଧିକ ତାତ୍ପର୍ଯ୍ୟ ରଖୁଥିବା ଦେଶବନ୍ଧୁଙ୍କର ସେହି ଅବଦାନଟିର ଜାତୀୟ ମୂଲ୍ୟକୁ ଆଦୌ ବୁଝିପାରିଲେ ନାହିଁ । ତାହାର ପରିଣାମ ଅଚିରେ ଭୋଗିବାକୁ ପଡ଼ିଲା ଏବଂ ମହାର୍ଘ ମୂଲ୍ୟ ଦେଇ ଦେଶକୁ ସେହି ବିଫଳତାର ସମ୍ମୁଖୀନ ହେବାକୁ ହୋଇଥିଲା ।

ସେକଥା ଯାହା ହେଉ ପଛକେ, ଉପସ୍ଥିତ ଅବସ୍ଥାଟିର ସମ୍ମୁଖୀନ ହେବାକୁ ହିଁ ପଡ଼ିଲା ଓ ତାହାକୁ ଆୟତ୍ତରେ ଆଣିବାକୁ ହେଲା । ଶେଷରେ ଶାନ୍ତିର ମଧ ପ୍ରତିଷ୍ଠା ହେଲା । ନଗରର ଜୀବନ ପ୍ରାୟ ଅଚଳ ହୋଇ ଯାଇଥିଲା । ପୌରସଂସ୍ଥାର କାର୍ଯ୍ୟମାନ ସଂପୂର୍ଣ୍ଣ ଭାବରେ ବନ୍ଦ ହୋଇ ଯାଇଥିଲା । ପ୍ରମୁଖ ନାଗରିକ ଏବଂ କର୍ପୋରେସନ ସଭ୍ୟମାନଙ୍କୁ ନେଇ ମେୟର୍ ଯତୀନ୍ଦ୍ରମୋହନ ଏକ ଶାନ୍ତି-ବାହିନୀ ଗଠନ କରିଥିଲେ । ତାଙ୍କ ସହିତ ମୌଲାନା ଆବୁଲ୍ କାଲାମ୍ ଆଜାଦ୍, ପଣ୍ଡିତ ଶ୍ୟାମସୁନ୍ଦର ଚକ୍ରବର୍ତ୍ତୀ (The Servant ର ସମ୍ପାଦକ), କିରଣ ଶଙ୍କର ରାୟ, ଡାକ୍ତର ଜେ. ଏମ୍. ଦାଶଗୁପ୍ତ, ଡାକ୍ତର ପ୍ରତାପଚନ୍ଦ୍ର ଗୁହରାୟ ( ପରେ ବେଙ୍ଗଲ୍ ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ର ସଭାପତି ହୋଇଥିଲେ) ଓ ଆଉ କେତେଜଣ ବ୍ୟକ୍ତି ସହଯୋଗ କରିଥିଲେ । ସେମାନେ ଦଙ୍ଗା-ପ୍ରପୀଡ଼ିତ ସମସ୍ତ ଅଞ୍ଚଳ ବୁଲି ଦୁଇ ସଂପ୍ରଦାୟର ଜନସାଧାରଣଙ୍କୁ ଯେପରି ଆଉ ଅଧିକ ରକ୍ତପାତ ଏବଂ ଉପଦ୍ରବ ନ ହୁଏ, ସେଥିଲାଗି ଆଦୌ କୌଣସି କାଳ ବିଳମ୍ବ ନ କରି ଶାନ୍ତି ଏବଂ ସ୍ଥିରମସ୍ତିଷ୍କତା ପ୍ରତିଷ୍ଠା କରିବାର ଆବଶ୍ୟକତା ବିଷୟରେ ବୁଝାଇଥିଲେ ଏବଂ ସାଧାରଣ ଅବସ୍ଥା ଫେରାଇ ଆଣିବାରେ ସାହାଯ୍ୟ କରିବାଲାଗି ସେମାନଙ୍କୁ ନିବେଦନ କରି ସେମାନଙ୍କ ଉଦ୍ଦେଶ୍ୟରେ ବ୍ୟାକୁଳ ଭାବରେ ଏକ ନିବେଦନ ମଧ କରିଥିଲେ । ସେମାନଙ୍କ ତରଫରୁ ସଙ୍ଗେ ସଙ୍ଗେ ଆଶାନୁରୂପ ଜବାବ ମିଳିଲା । ତରୁଣ ଛାତ୍ରମାନଙ୍କର କେତେ କେତେ ଦଳ ଅଣ୍ଟା ଭିଡ଼ି ବାହାରି ପଡ଼ିଲେ ଏବଂ ସହରର ବିଭିନ୍ନ ଅଞ୍ଚଳର ପୌରସଭା ସଭ୍ୟ ତଥା ଅନ୍ୟ ନାଗରିକମାନଙ୍କ ସହିତ ଏକାଠି ମିଶି ଜମା ହୋଇ ରହିଥିବା ଅଳିଆ ସଫା କରିବାରେ ଏବଂ ରାସ୍ତାରେ ଝାଡୁ ଦେଇ ରାସ୍ତାକୁ ପରିଷ୍କାର କରିବାରେ ମହତ୍ତ୍ୱପୂର୍ଣ୍ଣ ଭାବରେ ସହଯୋଗ କରିଥିଲେ । ଏପରିକି, ପାଇଖାନା ସଫା କରିବାକୁ ମଧ ସେମାନେ କୌଣସି ଘୃଣା ପ୍ରକାଶ କରି ନ ଥିଲେ । ମେୟର୍ ଯତୀନ୍ଦ୍ରମୋହନ ଦିନରାତି ସେମାନଙ୍କର ପାଖେ ପାଖେ ରହି ସେମାନଙ୍କୁ ଉତ୍ସାହିତ କରୁଥିଲେ, ସାଂପ୍ରଦାୟିକତା- ରାକ୍ଷସର ସମ୍ମୁଖୀନ ହେବାଲାଗି ସେ ବଦ୍ଧପରିକର ହୋଇଥିଲେ । ଏହି ସମ୍ମିଳିତ ଅଭିଯାନ ଅନେକ ଦିନଯାଏ ଚାଲିଲା ଏବଂ ପରିଶେଷରେ ସହରରେ ସ୍ୱାଭାବିକ ଅବସ୍ଥା ଫେରି ଆସିଥିଲା ।

ସହରରେ ପୁନର୍ବାର ସ୍ୱାଭାବିକ ଅବସ୍ଥା ପ୍ରତିଷ୍ଠିତ ହୋଇଥିଲେ ମଧ, ଯୁଗ ଯୁଗ ଧରି ରହି ଆସିଥିବା ସାମାଜିକ ତଥା ସାଂପ୍ରଦାୟିକ ସଂହତି ଓ ସଦ୍‌ଭାବ ପ୍ରତି କରାଯାଇଥିବା କ୍ଷତିକୁ ପୂରଣ କରିବା ପ୍ରକୃତରେ ଏକ କଠିନ କାର୍ଯ୍ୟ ଥିଲା । ଘଟିଥିବା ଘଟଣାଗୁଡ଼ିକର ପ୍ରତିକ୍ରିୟା ଖାଲି ଯେ କଲିକତା ସହରରେ ଦେଖିବାକୁ ମିଳିଲା ତା ନୁହେଁ, ବଙ୍ଗଳାର ଅନେକ ଜିଲ୍ଲାରେ ଏବଂ ଅବଶିଷ୍ଟ ଦେଶ ଉପରେ ମଧ ତାହାର ଆଘାତ ଯାଇ ବାଜିଲା । ଏକ ପ୍ରତ୍ୟକ୍ଷ ପ୍ରତିକ୍ରିୟା ରୂପେ କର୍ପୋରେସନ୍‌ର ପନ୍ଦରଜଣ ମୁସଲମାନ ସଭ୍ୟ ନିଜର ଇସ୍ତଫାପତ୍ର ପ୍ରଦାନ କରିଥିଲେ, ମାତ୍ର ତଦ୍ୱାରା ସାଂପ୍ରଦାୟିକ ଉତ୍ତେଜନା ଆହୁରି ବୃଦ୍ଧି ପାଇବାର ଆଶଙ୍କା କରି ମେୟର୍ ସେଗୁଡ଼ିକୁ ଗ୍ରହଣ କରି ନ ଥିଲେ । ସେ ଆପଣାର ଶାନ୍ତି-ଅଭିଯାନକୁ ଚାଲୁ ରଖିଥିଲେ; ମାତ୍ର ଦୁର୍ଭାଗ୍ୟବଶତଃ କର୍ପୋରେସନ୍‌ର ଅନେକ ରକ୍ଷଣଶୀଳ ହିନ୍ଦୁ ସଭ୍ୟ ଏବଂ ସାଧାରଣ ଜୀବନର ଅନ୍ୟ ଅନେକ ବ୍ୟକ୍ତି ତାହାର ନିନ୍ଦା କରିଥିଲେ । ଅବଶ୍ୟ ପରିଶେଷରେ ଏହି ବାରଜଣଯାକ ବିରୋଧୀ ସଭ୍ୟ ନିଜ ନିଜର ଇସ୍ତଫାପତ୍ରକୁ ପ୍ରତ୍ୟାହାର କରି ନେଇଥିଲେ ।

ଇଉରୋପୀୟ ଆସୋସିଏସନ୍‌ର ବାର୍ଷିକ ସାଧାରଣ ବୈଠକରେ ସଂସ୍ଥାର ସଭାପତି ଲାଇଫୋର୍ଡ଼ ଜେମ୍‌ସ୍ ଯେଉଁ ମତଭେଦର ସୃଷ୍ଟି କରାଇଲେ, ସେହି ବର୍ଷର ଶେଷବେଳକୁ ଯତୀନ୍ଦ୍ରମୋହନ ମଧ

ତାହାର ପ୍ରଧାନ ଶରବ୍ୟ ହୋଇଥିଲେ । ଭାରତର ତତ୍‌କାଳୀନ ଭାଇସରୟ ଏବଂ ଗଭର୍ଣ୍ଣର-ଜେନେରାଲ ଲର୍ଡ଼ ଇରୱିନ୍ ସେତେବେଳେ ଶୀତଦିନିଆ ଗସ୍ତରେ କଲିକତା ଆସିଥିଲେ । ସିଏ ଏବଂ ବଙ୍ଗଲାଟ୍ ଲର୍ଡ ଲିଟନ୍ ଉଭୟେ ସଂସ୍ଥାର ସେହି ବୈଠକରେ ବିଶିଷ୍ଟ ଅତିଥିରୂପେ ଉପସ୍ଥିତ ଥିଲେ । ସେମାନଙ୍କର ଉପସ୍ଥିତିରେ ଲାଙ୍ଗ୍‌ଫୋର୍ଡ ଜେମ୍‌ସ୍ ପ୍ରାୟ ଅତ୍ୟନ୍ତ ତେଢ଼ା ଭାବରେ ଏକ ମତ ବ୍ୟକ୍ତ କରିଥିଲେ ଯେ ଆପଣାର ସ୍ୱାର୍ଥରକ୍ଷା କରିବା କ୍ଷେତ୍ରରେ ଇଉରୋପୀୟମାନଙ୍କୁ ସ୍ୱୟଂ ଅଗ୍ରସର ହେବାକୁ ପଡ଼ିବ ଓ ଏହି କାର୍ଯ୍ୟରେ ବିରୋଧାଚରଣ କରୁଥିବା ଭାରତୀୟମାନଙ୍କର ଆଦୌ କୌଣସି ସହଯୋଗର ପ୍ରୟୋଜନ ହେବ ନାହିଁ, ସେଥିଲାଗି କୌଣସି ଅପେକ୍ଷା ମଧ୍ୟ ରହିବ ନାହିଁ । ଭାରତବର୍ଷରେ ଇଉରୋପୀୟମାନଙ୍କର ଯେଉଁସବୁ ନ୍ୟସ୍ତସ୍ୱାର୍ଥ ରହିଛି, ତାହାକୁ ସଂପୂର୍ଣ୍ଣ ଏକତରଫା ଭାବରେ ସୁରକ୍ଷିତ କରିବାକୁ ହେବ ବୋଲି ସେ ମତବ୍ୟକ୍ତ କରିଥିଲେ ।

ତହିଁ ଆରଦିନର ସମ୍ବାଦପତ୍ରମାନଙ୍କରେ ଲାଙ୍ଗ୍‌ଫୋର୍ଡ୍ ଜେମ୍‌ସ୍‌ଙ୍କର ଭାଷଣ ଏଡେ ଏଡେ ଅକ୍ଷରରେ ବାହାରିଲା ଏବଂ, ଇଉରୋପୀୟ ସଂପ୍ରଦାୟ ଏହି ଦେଶ ପ୍ରତି ଯେଉଁ ଉଦ୍ଧତ ମନୋଭାବ ପୋଷଣ କରୁଥିଲେ, ଆତ୍ମସମ୍ମାନ ରହିଥିବା ପ୍ରତ୍ୟେକ ଭାରତୀୟ ସେଥିରେ ଅତ୍ୟନ୍ତ ଆଘାତ ଅନୁଭବ କଲେ । ଏହାର ନିନ୍ଦାବାଦ ନ କରି ଏହାକୁ ସେହିପରି ଭାବରେ ଛାଡ଼ିଦେବା ଆଦୌ ଉଚିତ୍ ହେବ ନାହିଁ ବୋଲି ଯତୀନ୍ଦ୍ରମୋହନ ମଧ୍ୟ ଅନୁଭବ କରିଥିଲେ । ସେ ସଙ୍ଗେ ସଙ୍ଗେ ଆସୋସିଏଟେଡ୍ ପ୍ରେସ୍ ଅଫ୍ ଇଣ୍ଡିଆ (ବର୍ତ୍ତମାନ ପି.ଟି. ଆଇ.) ଜରିଆରେ ଏକ ଶକ୍ତିଶାଳୀ ବିବୃତି ପ୍ରଦାନ କରିଥିଲେ । ସେହି ବିବୃତିରେ ସେ କହିଥିଲେ :

''ଭାରତରେ ଥିବା ସରକାରୀ ଏବଂ ବେସରକାରୀ ଇଉରୋପୀୟଙ୍କ ମଧ୍ୟରେ ଭାରତବାସୀ ଆଦୌ କୌଣସି ଭେଦବିଚାର କରନ୍ତି ନାହିଁ ଏବଂ ସେହି ମନୋଭାବକୁ ମୁଁ ଯଥାର୍ଥ ବୋଲି ବିଚାରୁଛି । ଭାରତବର୍ଷ ଏବଂ ଇଂଲଣ୍ଡର ଲୋକମାନଙ୍କ ଭିତରେ ପାରସ୍ପରିକ ବିଶ୍ୱାସଭାବ ଅବଶ୍ୟ ରହିବା ଉଚିତ ବୋଲି ସେଦିନ ରାତିରେ ଲର୍ଡ୍ ଲିଟନ୍ ମତବ୍ୟକ୍ତ କରିଛନ୍ତି । ମାତ୍ର ବଙ୍ଗଳାର ଲାଟ୍ ଓ ଭାରତର ବଡ଼ଲାଟଙ୍କ ଉପସ୍ଥିତିରେ ଏବେ ଇଉରୋପିଆନ ଆସୋସିଏସନ୍‌ର ସଭାପତି ଏହାର ଉତ୍ତରରେ ଏକ ସିଧା 'ନାହିଁ'ବୋଲି ଜବାବ ଦେଇଛନ୍ତି ଏବଂ କର୍ତ୍ତାଦ୍ୱୟ ତାହାର କୌଣସି ପ୍ରତିବାଦ କରିନାହାନ୍ତି ।'' ସେନଗୁପ୍ତ ସହଯୋଗର ଏହି ସବୁ ଉକ୍ତିକୁ ଏକ 'ବୃହତ୍ ପ୍ରହସନ' ବୋଲି ବର୍ଣ୍ଣନା କରିଥିଲେ । ''ଶ୍ରୀ ଲାଙ୍ଗ୍‌ଫୋର୍ଡ଼ ଜେମ୍‌ସ୍ ବଙ୍ଗଳାରେ ଥିବା ଇଉରୋପିଆନ୍ ଆସୋସିଏସନ୍‌ର ସଭାପତି ହିସାବରେ ସେହିପରି ମତ ଦେଇଥିଲେ,'' ନଚେତ୍ ତାଙ୍କର କଥା ଉପରେ ସେ ଆଦୌ କୌଣସି ଗୁରୁତ୍ୱ ଦେଇ ନଥାନ୍ତେ ବୋଲି ସେନଗୁପ୍ତ ସ୍ପଷ୍ଟ କରି ଦେଇଥିଲେ ।

ଯତୀନ୍ଦ୍ରମୋହନ ଜୋର୍ ଦେଇ କହିଥିଲେ,

''ଭାରତୀୟ ଜାତୀୟ କଂଗ୍ରେସର ଜଣେ ସଦସ୍ୟ ରୂପେ, ବଙ୍ଗଳାରେ ସ୍ୱରାଜ୍ୟ ପାର୍ଟିର ନେତା ରୂପେ ଏବଂ କଲିକତା ସହରର ମେୟର୍‌ରୂପେ ଏହି ବିଷୟରେ ସଂପୃକ୍ତ ସମସ୍ତଙ୍କୁ ସତର୍କ କରାଇ ଦେବାକୁ ମୁଁ ନିଜର କର୍ତ୍ତବ୍ୟ ବୋଲି ଅନୁଭବ କରୁଛି । ଯଥାସମ୍ଭବ ଅଧିକ ଗୁରୁତ୍ୱ ଦେଇ ଓ ମୋର ଦାୟିତ୍ୱ ବିଷୟରେ ସଂପୂର୍ଣ୍ଣ ଭାବରେ ସଚେତନ ରହି ମୁଁ କହିବି ଯେ, ଗତ ମଙ୍ଗଳବାର ରାତିରେ (ଡିସେମ୍ବର 13 ,1926) ଆମେ ଯେଉଁ ଧରଣର ଗୋଟିଏ ବକ୍ତୃତା ଶୁଣିବାକୁ ପାଇଲୁ, ଶ୍ରୀ ଲାଙ୍ଗ୍‌ଫୋର୍ଡ଼୍ ଜେମ୍‌ସ୍ ଏବଂ ତାଙ୍କର ସହଚରମାନେ ଯଦି ସେହିପରି ବିବୃତିମାନ

କରିବାରେ ଲାଗନ୍ତି, ତେବେ ଭାରତର ଜନଗଣ ଅଚିରେ ହିଁ ଏହାକୁ ୟୁରୋପୀୟ ସଂପ୍ରଦାୟର ଏକ ଆହ୍ୱାନ ରୂପେ ଗ୍ରହଣ କରିବେ । ....ମୁଁ ପୁନର୍ବାର ଶ୍ରୀ ଲାଙ୍ଗଫୋଡ଼ ଏବଂ ତାଙ୍କର ବନ୍ଧୁମାନଙ୍କୁ ଆମେ ଏବେ ଶୁଣିବାକୁ ପାଉଥିବା ଉଦ୍‌ଗାରଗୁଡ଼ିକ ବିଷୟରେ ସତର୍କ କରି ଦେଉଛି । ବିଧାତାଙ୍କର ଚକ ଧୀରେ ଧୀରେ ଅବଶ୍ୟ ବୁଲିବାରେ ଲାଗିଥାଏ ସତ, ମାତ୍ର ତାହା ଅତିରିକ୍ତ ଭାବରେ ଅଳ୍ପ ଆକ୍ରାନ୍ତରେ ବୁଲୁଥାଏ । ଇଉରୋପୀୟ ସଂପ୍ରଦାୟ ମଧ୍ୟରେ ଯେଉଁ ଅପେକ୍ଷାକୃତ ଅଧିକ ଅତ୍ୟୁତ୍ସାହୀମାନେ ରହିଛନ୍ତି, ଚୀନ୍‌ରେ ଘଟିଥିବା ଘଟଣାବଳୀ ସେମାନଙ୍କର ଆଖିକୁ ଖୋଲିଦେଇ ପାରୁଥିବା ଉଚିତ ।''

କଲିକତାର ମେୟର୍ ଭାବରେ ତାଙ୍କର ଏହି ଦ୍ୱିତୀୟ କାର୍ଯ୍ୟକାଳ ସମୟରେ ଦେଶପ୍ରିୟଙ୍କ କୃତିର ଆଉ ଏକ ସ୍ମରଣୀୟ ପର୍ଯ୍ୟାୟ ହେଉଛି ଯେ, ବିନା ବିଚାରରେ କାରାରୁଦ୍ଧ ହୋଇ ରହିଥିବା ତାଙ୍କର ଜଣେ ଅତି ସମ୍ମାନିତ ସହକର୍ମୀ ଓ ବନ୍ଧୁ ସୁଭାଷ ଚନ୍ଦ୍ର ବୋଷଙ୍କର ମୁକ୍ତି ଦାବି କରି ସେ ଏକ ନିର୍ଦ୍ଦିଷ୍ଟ ପଦକ୍ଷେପ ଗ୍ରହଣ କରିଥିଲେ । ଦେଶବନ୍ଧୁ ଚିତ୍ତରଞ୍ଜନ କଲିକତା କର୍ପୋରେସନ୍‌ର ମେୟର୍ ଥିଲାବେଳେ ସୁଭାଷଚନ୍ଦ୍ର ତାହାର ଚିଫ୍ ଏକ୍‌ଜିକ୍ୟୁଟିଭ ଅଫିସର ଥିଲେ । ସେତେବେଳେ ସ୍ୱାଧୀନତା ଆନ୍ଦୋଳନ ଏକ ଉଚ୍ଚ ସୀମାରେ ଯାଇ ରହିଥିଲା । ସେତିକିବେଳେ ତାଙ୍କୁ ଏହି କର୍ମମୟ ଦୃଶ୍ୟପଟଟି ମଧ୍ୟରୁ ଅନ୍ତର କରି ନିଆଯାଇଥିଲା । 1924 ମସିହାରେ ତାଙ୍କୁ ଜଣେ ସରକାରୀ ବନ୍ଦୀ କରି ରଖାଗଲା । ବନ୍ଦୀ ହୋଇ ରହିଥିବା ବେଳେ ସେହି ମହାନ୍ ଦେଶଭକ୍ତ ଓ ନେତାଙ୍କର ସ୍ୱାସ୍ଥ୍ୟ ଆଦୌ ଭଲ ରହୁ ନଥିଲା ଏବଂ ତାଙ୍କର ଅସୁସ୍ଥତା ଦେଶବାସୀଙ୍କ ମନରେ ଘୋର ଉଦ୍‌ବେଗ ସୃଷ୍ଟି କରୁଥିଲା । ତେଣୁ, ଯତୀନ୍ଦ୍ରମୋହନ ନିଜର ଚାପ ପକାଇ କର୍ପୋରେସନ୍‌ର ଏକ ବିଶେଷ ବୈଠକ ଡକାଇଥିଲେ, ତାହାର ଏକ୍‌ଜିକିଉଟିଭ୍ ଅଫିସର୍‌ଙ୍କର ସ୍ୱାସ୍ଥ୍ୟ ବିଷୟରେ ସରକାରୀ ଭାବରେ ଉଦ୍‌ବେଗ ପ୍ରକାଶ କରାଗଲା ଏବଂ ତାଙ୍କୁ ଜେଲ୍‌ରୁ ତୁରନ୍ତ ଖଲାସ କରି ଦିଆଯାଉ ବୋଲି ଦାବି କରାଯାଇଥିଲା ।

ଏହି ସଂକ୍ରାନ୍ତୀୟ ପ୍ରସ୍ତାବଟିକୁ ଆଗତ କରି ଯତୀନ୍ଦ୍ରମୋହନ ଅବିଳମ୍ବେ ସୁଭାଷ ବୋଷଙ୍କୁ ମୁକ୍ତ କରି ଦେବାଲାଗି ଅତ୍ୟନ୍ତ ଭାବପୂର୍ଣ୍ଣ ଭାବରେ ନିବେଦନ କରିଥିଲେ ।

ଭାଇସରୟ୍ ଲର୍ଡ଼ ଇର୍‌ଉଇନ୍‌ଙ୍କର ସର୍ବଶେଷ ଘୋଷଣାଟିର ଉଲ୍ଲେଖ କରି ସେନଗୁପ୍ତ ସରକାରଙ୍କୁ ଜଣାଇଥିଲେ ଯେ, '' ନିଜର କ୍ଷମତା ଦ୍ୱାରା ପ୍ରେରିତ ନହୋଇ ସରକାର ଯେପରି ଆପଣାର ସେହି ଯୁକ୍ତିଟି ବିଷୟରେ ବିସ୍ମୃତ ହୋଇ ନଯାନ୍ତି'' । ଉକ୍ତ ସରକାରୀ ଘୋଷଣାରେ କୁହାଯାଇଥିଲା ଯେ, ''ସରକାର ଯେପରି ନିର୍ବିଘ୍ନ ଭାବେ ଦେଶର ଶାସନକୁ ପରିଚାଳିତ କରିପାରିବେ, ସେଥିଲାଗି ଦେଶର ଯୁବକ ଓ ସାଧାରଣ କ୍ଷେତ୍ରର କର୍ମୀମାନଙ୍କୁ ଗିରଫ କରିନେଇ ବିନା ବିଚାରରେ ଅଟକାଇ ରଖିବାକୁ ସରକାରଙ୍କର ଭାରତ ସାମ୍ରାଜ୍ୟ-ବ୍ୟବସ୍ଥାରେ ବିଶେଷ କ୍ଷମତା ମାନ ଅବଶ୍ୟ ରହିବା ଉଚିତ ।''

ଯତୀନ୍ଦ୍ରମୋହନ ଅତ୍ୟନ୍ତ ଜୋର୍ ଦେଇ କହିଥିଲେ, ''ଆଜି ଏହି କର୍ପୋରେସନ୍ ତରଫରୁ ତାଙ୍କ ପାଖକୁ ଯେଉଁ ନିବେଦନଟି ପ୍ରେରିତ ହେଉଛି, ଲର୍ଡ଼ ଇର୍‌ଉଇନ୍ ତାହା ଉପରେ ଟିକିଏ ଚିନ୍ତା କରନ୍ତୁ ଏବଂ ପ୍ରତ୍ୟେକ ଇଂରେଜ ମୋର ଏହି ନିବେଦନଟିକୁ ବିଚାର କରି ଦେଖନ୍ତୁ । ରାଷ୍ଟ୍ରର ନିରାପତ୍ତା ରକ୍ଷା କରିବାର ଦୁହାଇ ଦେଇ ଆପଣମାନେ ଯେଉଁମାନେ ଆପଣା ଲାଗି ସୃଷ୍ଟି ରକ୍ଷାକାରୀ ବିଷ୍ଣୁଙ୍କର କ୍ଷମତା ଆତ୍ମସାତ୍ କରି ପୀଡ଼ିତ ହୋଇ ପ୍ରାୟ ଅକର୍ମଣ୍ୟ ହୋଇ ପଡ଼ିଥିବା ଜଣେ ବ୍ୟକ୍ତିର ଜୀବନକୁ ବିପନ୍ନ କରି ପକାଇବାକୁ ଚାହୁଁଛନ୍ତି, ଆପଣମାନଙ୍କ ବିଷୟରେ ଭାରତ ବାହାରେ ତଥା ଭାରତ ଭିତରେ ରହିଥିବା ଲୋକମାନେ ଟିକିଏ ବିଚାର କରି ଦେଖନ୍ତୁ । ସୁଭାଷ ଚନ୍ଦ୍ର ବୋଷଙ୍କୁ ଆଜି ଜେଲ୍‌ରୁ ଖଲାସ କରି ଦିଆଯାଉ ।''

ଆପଣା ବାଗ୍ମିତାର ସର୍ବୋଚ୍ଚ ଶିଖରକୁ ଉଠି ଶ୍ରୀଯୁକ୍ତ ସେନଗୁପ୍ତ କହିଲେ, ''ମୁଁ ମନୁଷ୍ୟତାର ଦରବାରରେ ନିବେଦନ କରି କହୁଛି, ଆପଣମାନଙ୍କୁ ଭୟ ଦେଖାଇବା ପାଇଁ, ବାଧ୍ୟ କରିବାପାଇଁ ଅଥବା ପ୍ରବର୍ତ୍ତାଇ ରାଜି କରାଇବା ପାଇଁ ଆମ ଭାରତବାସୀଙ୍କ ପାଖରେ ଆଜି ଆଦୌ କୌଣସି କ୍ଷମତା ନାହିଁ । ଆପଣାର ପ୍ରକୃତ କ୍ଷମତା ମଧରେ ରହି, ଆପଣମାନଙ୍କ ମଧ୍ୟରେ ଯେଉଁ ଶାନ୍ତ ସ୍ଥିର ବାଣୀଟି ''ସୁଭାଷ ଚନ୍ଦ୍ର ବୋଷଙ୍କୁ ଖଲାସ କରି ଦିଆଯାଉ'' ବୋଲି କହିବାରେ ଲାଗିଛି, ଆପଣମାନେ ସେହି ବାଣୀଟିର କଥା ଶୁଣନ୍ତୁ । ସମଗ୍ର ଜନଗଣଙ୍କର ନୀରବ ବେଦନା ତାଙ୍କୁ ଖଲାସ କରି ଦିଆଯାଉ ବୋଲି ଚିତ୍କାର କରି ଉଠୁଛି; ଯେଉଁ ଶକ୍ତି ରାଷ୍ଟ୍ରର ପରିଚାଳନା କରୁଛି ଏବଂ ବ୍ୟକ୍ତିର ବିବେକକୁ ପ୍ରେରଣା ଦେଉଛି, ତାହା ତାଙ୍କୁ ଖଲାସ କରାଯାଉ, ସୁଭାଷ ବୋଷ୍‌ଙ୍କୁ ଖଲାସ କରି ଦିଆଯାଉ ବୋଲି ନିର୍ଦ୍ଦେଶ ଦେଇଯାଉଛି ।''

ସେଦିନ ନଗର କର୍ପୋରେଶନ୍‌ର ସଭାକକ୍ଷରେ ଯେଉଁମାନେ ଯତୀନ୍ଦ୍ରମୋହନଙ୍କର ଭାବମୟ ଭାଷଣଟିକୁ ଶୁଣିଥିଲେ ଅଥବା ତହିଁ ଆରଦିନ ସକାଳେ ତାହାର ବିବରଣୀକୁ ପାଠ କରିଥିଲେ, ବା ଯେଉଁମାନେ ନିରପେକ୍ଷ ଏବଂ ନିରାସକ୍ତ ଭାବରେ ସମସାମୟିକ ବଙ୍ଗଳାର ଘଟଣାବଳୀକୁ ଅବଲୋକନ କରୁଥିଲେ, ସେମାନେ ଏହି କଥାଟିକୁ ବିଶ୍ୱାସ କରିବା ଲାଗି ଆପଣାକୁ କଦାପି ପ୍ରବର୍ତ୍ତାଇ ପାରି ନଥିଲେ ଯେ, ବଙ୍ଗଳାର ଏହି ଦୁଇଜଣ ଦେଶଭକ୍ତ ମହାନ୍ ନେତା ଏବଂ ସନ୍ତାନଙ୍କ ମଧରେ ପାରସ୍ପରିକ ଶ୍ରଦ୍ଧାଭାବର ପ୍ରକୃତରେ ଆଦୌ କୌଣସି ଅଭାବ ରହିଥିଲା । ବୟସ ଓ ଅଭିଜ୍ଞତା ଦୃଷ୍ଟିରୁ ଦୁହିଁଙ୍କ ମଧରେ କିଞ୍ଚିତ୍ ପାର୍ଥକ୍ୟ ରହିଥିଲା ସତ, ମାତ୍ର ସେମାନେ ଉଭୟେ ଦେଶବନ୍ଧୁ ତଥା ଦେଶବାସୀଙ୍କ ପାଖରେ ସମାନ ଭାବରେ ପ୍ରିୟ ହୋଇ ରହିଥିଲେ । ଅସହଯୋଗ ଆନ୍ଦୋଳନ ସମୟରେ ଯତୀନ୍ଦ୍ରମୋହନ ଏବଂ ସୁଭାଷଚନ୍ଦ୍ର ଦୁହେଁ ଆଲିପୁର ଜେଲ୍‌ରେ ସହବନ୍ଦୀ ହୋଇ ରହିଥିବା ସମୟରେ ପୂର୍ବରୁ ଆଉ ଗୋଟିଏ ଘଟଣା ମଧ୍ୟ ଘଟିଥିଲା । ଅନ୍ୟ ଅନେକ କଂଗ୍ରେସ ଲୋକ ଏବଂ ନେତାଙ୍କ ସହିତ କାରାଦଣ୍ଡ ଭୋଗ କରୁଥିବାବେଳେ ସେମାନେ ଦୁହେଁ ଜେଲ୍ ୱାର୍ଡ୍ରେନ୍‌ମାନଙ୍କର ଲାଠିପ୍ରହାର ମଧ୍ୟ ସହ୍ୟ କରିଥିଲେ ଓ ଆଘାତ ପାଇଥିଲେ । ସୁଭାଷଚନ୍ଦ୍ର ଅଧିକ ପରିମାଣରେ ଆହତ ହୋଇଥିଲେ । ଲାଠିମାଡ଼ ଫଳରେ ସେ ମୂର୍ଚ୍ଛା ହୋଇ ଯାଇଥିଲେ । ଯତୀନ୍ଦ୍ରମୋହନ ତତ୍‌କ୍ଷଣାତ୍ ଉଠିଯାଇ ଆପଣାର ବନ୍ଧୁଙ୍କୁ ଯଥାସମ୍ଭବ ଆବଶ୍ୟକ ସାହାଯ୍ୟ ଦାନ କରିଥିଲେ ଏବଂ ତାଙ୍କୁ ଡାକ୍ତରଖାନା ପଠାଯିବାର ବ୍ୟବସ୍ଥା କରି ଦେଇଥିଲେ । ସେ ପର୍ଯ୍ୟନ୍ତ ସେମାନଙ୍କ ମଧରେ ଯେ ପ୍ରକୃତରେ କିପରି ହାର୍ଦ୍ଦିକ ସମ୍ବନ୍ଧମାନ ରହିଥିଲା, ତାହାକୁ ପ୍ରମାଣିତ କରିଦେବା ପାଇଁ ଆହୁରି ଅନ୍ୟ ଅନେକ ଉଦାହରଣ ମଧ୍ୟ ରହିଥିଲା ।

ମାତ୍ର, ଏକଥା ସତ ଯେ, ରାଜନୀତି ଏକ କୁତ୍ସିତ ଖେଳରେ ପରିଣତ ହେବା ଲାଗି ଆଦୌ ଅଧିକ ସମୟ ଲାଗେ ନାହିଁ । ଦୁର୍ଭାଗ୍ୟବଶତଃ ବଙ୍ଗଳାର ରାଜନୀତିରେ ଦ୍ୱିତୀୟ ଦଶକର ଶେଷଭାଗରେ କୌଣସି ଏକ ପ୍ରକାରର ପ୍ରତିଦ୍ୱନ୍ଦ୍ୱିତା ଆସି ପଶିଯାଇଥିଲା । ଦେଶବନ୍ଧୁଙ୍କର ତିରୋଧାନ ଓ ଯାହାକୁ ନେତୃତ୍ୱର 'ମୁକୁଟ ତ୍ରୟ' ବୋଲି କୁହାଯାଏ, ଦେଶପ୍ରିୟଙ୍କ ଉପରେ ତାହାକୁ ନ୍ୟସ୍ତ କରାଯିବାର କିଛିଦିନ ପରେ ଏପରି ଘଟିଥିଲା । ତତ୍କାଳୀନ ରାଜନୀତିକ ନେତାମାନଙ୍କ ସହମତି ସହିତ ହିଁ ସମଗ୍ରତଃ ତାହା ହୋଇଥିଲେ ମଧ୍ୟ, ଆପଣାକୁ 'ବୃହତ୍ ପାଞ୍ଚଜଣ' ବୋଲି କହୁଥିବା ଏକ ବିରୋଧୀ ଗୋଷ୍ଠୀ ଜନ୍ମଲାଭ କରିଥିଲା । ଏପରି ବିଶ୍ୱାସ କରାଯାଉଥିଲା ଯେ, ସୁଭାଷଚନ୍ଦ୍ରଙ୍କର ଅନୁଗାମୀମାନେ ମଧ୍ୟ ଆପଣାକୁ ଏପରି ନାନା କାର୍ଯ୍ୟରେ ଲିପ୍ତ କରି ରଖିଲେ, ଯାହାକି

ଯତୀନ୍ଦ୍ରମୋହନଙ୍କର ନେତୃତ୍ୱର ଔଚିତ୍ୟକୁ ଏକ ଆହ୍ୱାନ ଦେଇଥିଲେ । ଯତୀନ୍ଦ୍ରମୋହନ ଗାନ୍ଧି ସିଦ୍ଧାନ୍ତ ଏବଂ ଦେଶବନ୍ଧୁଙ୍କର ଆଦର୍ଶବାଦରେ ନିଜକୁ ଅନୁପ୍ରେରିତ କରି ରଖିଥିବାରୁ ଉଭୟ ନିଜର ବ୍ୟକ୍ତିଗତ ତଥା ସାଧାରଣ ଜୀବନରେ ସେହି ବିଷୟରେ କୌଣସି ଦୃଷ୍ଟି ନଦେଇ ନିଜର ପ୍ରଶସ୍ତମନା ଉଦାରତା ସହିତ ଅଗ୍ରସର ହେବାକୁ ଲାଗିଲେ ଓ ଯାବତୀୟ ପ୍ରତିକୂଳତାର ସମ୍ମୁଖରେ ମଧ୍ୟ ଦୃଢ଼ ରହିଥିଲେ । ପୁନଶ୍ଚ, ସେନଗୁପ୍ତଙ୍କୁ କଦାପି ଛାଡ଼ି ଚାଲିଯାଇ ନଥିବା କଂଗ୍ରେସଲୋକଙ୍କ ବ୍ୟତୀତ ମଧ୍ୟ ତାଙ୍କର ଆହୁରି ଅନେକ ସମର୍ଥକ ଏବଂ ପ୍ରଶଂସାକାରୀ ରହିଥିଲେ, ଏବଂ ସେ ସର୍ବଦା ଯେପରି ସିଧା ଏବଂ ଆବର୍ଜନାଶୂନ୍ୟ ମାର୍ଗ ଅନୁସରଣ କରି କାର୍ଯ୍ୟ କରୁଥିଲେ, ତାହା ତାଙ୍କ ଲାଗି ଯାବତୀୟ କ୍ଷେତ୍ରରେ ଉତ୍ତରୋତ୍ତର ସଫଳତା ଏବଂ ଲୋକପ୍ରିୟତା ଆଣି ଦେବାରେ ଲାଗିଥିଲା ।

ବଙ୍ଗଳା ରାଜନୀତିର ଏହି ଗୁରୁତ୍ୱପୂର୍ଣ୍ଣ ଦିଗଟି ସଂକ୍ରାନ୍ତରେ ବିଚାର କରି ତତ୍କାଳୀନ ନିରପେକ୍ଷ ତଥା ତଟସ୍ଥ ଅବଲୋକନକାରୀମାନେ ଏହିପରି ଅନୁଭବ କରିଥିଲେ ଯେ, ସେତେବେଳେ ରାଜନୀତିକୁ ଜୀବିକାଶ୍ରୟରେ ପରିଣତ କରି ଧରିଥିବା ବ୍ୟକ୍ତିମାନେ ଏସବୁ କରି କେବଳ ଏକ ବିକ୍ଷୁବ୍ଧ ପରିସ୍ଥିତିରୁ ଫାଇଦା ଉଠାଇବା ସକାଶେ ହିଁ ଚେଷ୍ଟା କରୁଥିଲେ । ସେମାନଙ୍କର ଏହିସବୁ କାର୍ଯ୍ୟକଳାପର ପରବର୍ତ୍ତୀ ଫଳ କ'ଣ ଯେ ଫଳିବ, ସେମାନେ ସେ ବିଷୟରେ କିଛି ଚିନ୍ତା କରୁ ନ ଥିଲେ । ସୁଭାଷଚନ୍ଦ୍ରଙ୍କୁ ଏହି କ୍ଷେତ୍ରରେ ସତେଅବା ବଳି ପଡ଼ିବାକୁ ଆସିଥିବା ଏକ ଛାଗଳ ପରି ବ୍ୟବହୃତ କରା ଯାଉଥିଲା । ମୁହଁକୁ କ୍ରୋଧାନ୍ୱିତ କରିବା ଉଦ୍ଦେଶ୍ୟରେ ସତେଅବା ନାକଟାକୁ କାଟି ଦେବା ହିଁ ଅଭିପ୍ରାୟ ହୋଇ ରହିଥିଲା । ଯତୀନ୍ଦ୍ରମୋହନ ବୁଝିପାରିଥିଲେ ଯେ, ଯଦି ସେ ସୁଭାଷଚନ୍ଦ୍ରଙ୍କୁ ଏକାକୀ ଭେଟିବାର ଏକ ସୁଯୋଗ ପାଇପାରନ୍ତେ, ତେବେ ଏହି ଶତ୍ରୁତାପୂର୍ଣ୍ଣ ବାତାବରଣଟି ସଂପୂର୍ଣ୍ଣ ଭାବରେ କଟିଯାଇ ପାରନ୍ତା । ମାତ୍ର ସେପରି ହେବାର କୌଣସି ସମ୍ଭାବନା ନଥିଲା । ଆଗାମୀ ଅନେକ ବର୍ଷ ଲାଗି ବଙ୍ଗଳା ଯାତନା ଭୋଗକରୁ ବୋଲି ସତେଅବା ନିୟତି ନିର୍ଦ୍ଦିଷ୍ଟ ହୋଇ ରହିଥିଲା । ତାହାର ଠିକ୍ ପରବର୍ତ୍ତୀ ବର୍ଷରେ ହିଁ ଯତୀନ୍ଦ୍ରମୋହନଙ୍କର ଜୀବନରେ ଏକ ଉଲ୍ଲେଖଯୋଗ୍ୟ ପର୍ଯ୍ୟାୟର ସୂତ୍ରପାତ ହେଲା । ସେ ତୃତୀୟ ଥର ସକାଶେ (ଏପ୍ରିଲ 27, 1927 ଦିନ) କଲିକତା କର୍ପୋରେସନ୍‌ର ମେୟର୍ ନିର୍ବାଚିତ ହୋଇଥିଲେ । ମେୟର୍ ପଦ ଲାଗି ପୂର୍ବତନ ଦୁଇଟିଯାକ ନିର୍ବାଚନରେ ତାଙ୍କୁ ସର୍ବସମ୍ମତିକ୍ରମେ ନିର୍ବାଚିତ କରାଯାଇଥିଲା । ତୃତୀୟଥର ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା ହେଲା । 1926 ମସିହାରେ ସେ ଦ୍ୱିତୀୟଥର ପାଇଁ ନିର୍ବାଚିତ ହେବା ପରେ କଲିକତାରେ ଏକ ସାଂପ୍ରଦାୟିକ ଦଙ୍ଗା ଲାଗିଥିଲା ଏବଂ ତାହା ଫଳରେ କଂଗ୍ରେସ ଦଳର ବେଶ୍ କେତେକ ମୁସଲମାନ୍ ପୌରସଭା ସଦସ୍ୟ ବିମୁଖ ହୋଇପଡ଼ିଥିଲେ । ଅବଶ୍ୟ ଏକଥା ସତ ଯେ, ସାଂପ୍ରଦାୟିକ ଶାନ୍ତି ଏବଂ ସଦ୍‌ଭାବର ପୁନଃ ପ୍ରତିଷ୍ଠା ପାଇଁ ମେୟର୍ ଯେଉଁ ଅକ୍ଲାନ୍ତ ଉଦ୍ୟମ କରିଥିଲେ, ସଂପୃକ୍ତ ସମସ୍ତେ ତାହାର ପ୍ରଶଂସା କରିଥିଲେ । ଅବଶ୍ୟ, ମହମ୍ମଦ ଅକ୍ଲିଙ୍କ ସମେତ ଏହି ମୁସ୍‌ଲିମ୍ ସଦସ୍ୟମାନେ ତୃତୀୟ ନିର୍ବାଚନରେ ଯତୀନ୍ଦ୍ରମୋହନଙ୍କ ସପକ୍ଷରେ ଭୋଟ୍ ଦେଇଥିଲେ । ଉଦାରବାଦୀ ପାର୍ଟିର ଜଣେ ପ୍ରମୁଖ ପୌରସଭା ସଦସ୍ୟ ଯତୀନ୍ଦ୍ରନାଥ ବୋଷ ମେୟର୍ ପଦ ଲାଗି ପ୍ରତିଦ୍ୱନ୍ଦ୍ୱିତା କରିଥିଲେ । ଏହି ପ୍ରତିଦ୍ୱନ୍ଦ୍ୱିତାରେ ଶ୍ରୀ ସେନଗୁପ୍ତ 45 ବନାମ୍ 39 ଭୋଟ୍‌ରେ ବିଜୟୀ ହୋଇଥିଲେ, କାରଣ ଚେୟାରମ୍ୟାନ୍ ପ୍ରଥମ ମୁଥରେ ତାଙ୍କର ନିଜ ଭୋଟଟିକୁ ଦେଇ ନଥିଲେ । ତେଣୁ ଦ୍ୱିତୀୟ ଥର ଗଣତିରେ ଏହି ଅନୁପାତ 46 ବନାମ 39 ରହିଥିବାର ଦୃଷ୍ଟିଗୋଚର ହୋଇଥିଲା । ରାୟ ବାହାଦୁର ରାମତାରଣ ବାନର୍ଜୀ ଯତୀନ୍ଦ୍ରମୋହନଙ୍କ ନାମ ପ୍ରସ୍ତାବ କରିଥିଲେ ଏବଂ ଦାଉଦ ସେହି ପ୍ରସ୍ତାବର ଅନୁମୋଦନ କରିଥିଲେ । ଭୋଟଗ୍ରହଣ

ବେଶ୍ ଉତ୍ତେଜନାପୂର୍ଣ୍ଣ ହୋଇଥିଲା ଏବଂ ସଦସ୍ୟମାନଙ୍କ ଦ୍ୱାରା ପୂର୍ଣ୍ଣ ହୋଇଥିବା କକ୍ଷଟି ଶ୍ରୀ ସେନଗୁପ୍ତଙ୍କର ବିଜୟକୁ ହାର୍ଦ୍ଦିକ ସ୍ୱାଗତ ଜ୍ଞାପନ କରିଥିଲା ।

ରାଜନୀତିକ ଏବଂ ପ୍ରଗତିଶୀଳ ନାନା ଅନ୍ଦୋଳନର ପୁରୋଭାଗଟିର ପଶ୍ଚାତରେ ବେଶ୍ କେତେ କାଳ ଧରି ବଙ୍ଗ ଏକ କ୍ଷୟକାରୀ ସାମାଜିକ ଅସୁସ୍ଥତା ଦ୍ୱାରା ପୀଡ଼ିତ ହୋଇ ରହିଥିଲା । ଏଠାରେ ଅପ୍ରାପ୍ତବୟସ୍କା ବାଳିକା ଏବଂ ତରୁଣୀମାନଙ୍କୁ ଅପହରଣ କରି ନେଇଯିବାର ସମସ୍ୟାଟିର କଥା କୁହାଯାଉଛି । ଅନେକ ସମୟରେ ବିବାହିତାମାନେ ମଧ ଏହାର ଶିକାର ହେଉଥିଲେ । ନାରୀମାନଙ୍କୁ ନେଇ କରାଯାଉଥିବା ଅବୈଧ କାରବାର ବୃଦ୍ଧି ପାଇବାରେ ଲାଗିଥିଲା । ସମସ୍ୟାଟି କ୍ରମେ ଏକ ଆତଙ୍କଦାୟକ ଆକାର ଧାରଣ କରି ସାରିଥିଲା । ସରକାରୀ ସ୍ତରରେ, ସମାଜସେବକ ମାନଙ୍କର ଗୋଟିଏ ଗୋଷ୍ଠୀ ଦ୍ୱାରା ଅନୁରୁଦ୍ଧ ହୋଇ ବଙ୍ଗଳାର ଲାଟ ଲର୍ଡ୍ ଲିଟନ୍ ଏହି ବାଳିକାମାନଙ୍କୁ ଉଦ୍ଧାର କରି ସେମାନଙ୍କର ପୁନର୍ବାସନ କରାଇବାର କାର୍ଯ୍ୟଟିକୁ ହାତକୁ ନେଇଥିଲେ । ଏପରିକି, ଉଦ୍ଧାର କରି ଆଣିବା ପରେ ମଧ୍ୟ ଏହି ବାଳିକାମାନେ ପୁଣି ଖସି ପଳାଇ ଯାଉଥିଲେ ଅଥବା ସମାଜରେ ସେମାନଙ୍କୁ ପ୍ରବେଶ କରିବାଲାଗି ଅନୁମତି ମିଳୁନଥିଲା । ଏହି ଦୁରାଚରଣଟିକୁ ବନ୍ଦ କରିବା ପାଇଁ ଖୁବ୍ ଯଥେଷ୍ଟ ପରିମାଣରେ ସାଧାରଣଙ୍କର ଦୃଷ୍ଟି ପଡୁଥିବାରୁ ଓ ଜନମତ ଜାଗ୍ରତ ହୋଇପାରୁ ନ ଥିବାରୁ ଏଇ କ୍ଷେତ୍ରରେ ଜନସାଧାରଣଙ୍କର ଆଗ୍ରହ ସୃଷ୍ଟି କରିବାଲାଗି ଲିଟନ୍ ମେୟର୍ ଶ୍ରୀ ସେନ୍‌ଗୁପ୍ତଙ୍କୁ ତାଙ୍କର ମୂଲ୍ୟବାନ୍ ସହାୟତା ଲାଗି ଅନୁରୋଧ କରିଥିଲେ । ସବୁ କ୍ଷେତ୍ର ପରି ଏହି କ୍ଷେତ୍ରରେ ମଧ ଯତୀନ୍ଦ୍ରମୋହନ ସଙ୍ଗେ ସଙ୍ଗେ ଏହି ମାନବ ହିତକାରୀ କାର୍ଯ୍ୟଟିର ସମର୍ଥନ କରି ସକ୍ରିୟ ଭାବରେ ଅଗ୍ରସର ହୋଇ ଯାଇଥିଲେ ଏବଂ କର୍ପୋରେସନ୍ ତରଫରୁ ଏକ, ମେୟରଙ୍କ ପାଣ୍ଠି' ଆରମ୍ଭ କରିଦେଲେ ଏବଂ ସେହି ପାଣ୍ଠିକୁ ସାହାଯ୍ୟ କରିବାଲାଗି ଉଦାରମନା ଜନସାଧାରଣଙ୍କୁ ନିବେଦନ କରିଥିଲେ ।

1927 ମସିହା ମାର୍ଚ୍ଚ 21 ତାରିଖରେ ଲିଖିତ ଏକ ପତ୍ରରେ ଲର୍ଡ୍ ଲିଟନ୍ ଯତୀନ୍ଦ୍ରମୋହନଙ୍କୁ ''ସେ ତାଙ୍କର ଜ୍ଞାତସାରକୁ ଆଣିବାଲାଗି ସ୍ଥିର କରିଥିବା ଅପ୍ରାପ୍ତବୟସ୍କା ବାଳିକାମାନଙ୍କର ଦୁର୍ଭାଗ୍ୟମୟ ଜୀବନର ଉଦ୍ଧାର କରିବା'' ସକାଶେ ପତ୍ର ଲେଖିଥିଲେ । ଯତୀନ୍ଦ୍ରମୋହନ ସଙ୍ଗେ ସଙ୍ଗେ ସେହି ଦିଗରେ ଯେଉଁ ଉଦ୍ୟମ କଲେ ସେ ସେଥିଲାଗି ତାଙ୍କ ପ୍ରତି କୃତଜ୍ଞତା ଜ୍ଞାପନ କରିଥିଲେ । ମେୟର୍‌ଙ୍କ ପାଣ୍ଠିରେ ଯେଉଁ ଅର୍ଥପରିମାଣ ସଂଗୃହୀତ ହେଉଛି, ସେ ତାହାକୁ ''ଏହି ବୃହତ୍ ଦୁର୍ଦ୍ଦଶାଟିର ସମ୍ମୁଖୀନ ହେବାଲାଗି ଯାବତୀୟ ଦାୟିତ୍ୱ ବହନ କରିବାଲାଗି'' ଆରମ୍ଭ କରାଯାଇଥିବା ଭିଜିଲାନ୍‌ସ୍ ଆସୋସିଏସନ୍ ହାତରେ ଦେଇଦେବା ପାଇଁ ଅନୁରୋଧ କରିଥିଲେ ।

ସାର୍ ଷ୍ଟାନ୍‌ଲି ଜ୍ୟାକ୍‌ସନ୍ ବଙ୍ଗଳାର ପରବର୍ତ୍ତୀ ଗଭର୍ଣ୍ଣର୍ ହୋଇ ଆସିଲେ । ଲର୍ଡ୍ ଲିଟନ୍‌ଙ୍କ ପରି ସେ ମଧ ଏହି ସମାଜ ଉନ୍ନୟନର କାର୍ଯ୍ୟକ୍ରମରେ ସମାନ ଆଗ୍ରହ ପ୍ରଦର୍ଶନ କରିଥିଲେ । ପାଣ୍ଠି-ସଂଗ୍ରହ କାର୍ଯ୍ୟରେ ଅଧିକ ବେଗ ଏବଂ ଉତ୍ସାହ ସୃଷ୍ଟି କରିବା ସକାଶେ 1927 ଜୁଲାଇ ଏଗାର ତାରିଖ ଦିନ କଲିକତା ଟାଉନ୍ ହଲ୍‌ରେ ଗୋଟିଏ ସାଧାରଣ ସଭା ଡାକିବା ଲାଗି ପ୍ରସ୍ତାବ ହେଲା । ସେଥିରେ ଗଭର୍ଣ୍ଣର ଜ୍ୟାକ୍‌ସନ୍ ସଭାପତିତ୍ୱ କଲେ ଏବଂ କଲିକତାର ମେୟର ପାଣ୍ଠି ଲାଗି ମୁଖ୍ୟ ଆବେଦକ ହୋଇ ଭାଷଣ ଦେଲେ । ଗଭର୍ଣ୍ଣର୍ ସଭାପତି ହୁଅନ୍ତୁ ବୋଲି ପ୍ରସ୍ତାବ କରି ଯତୀନ୍ଦ୍ରମୋହନ ପ୍ରଥମରୁ ହିଁ, ନିଜେ କଂଗ୍ରେସ ସଂଗଠନର ଜଣେ ଦୃଢ଼ନିଷ୍ଠ ସଦସ୍ୟ ହୋଇଥିଲେ ମଧ୍ୟ ଜଣେ ବ୍ରିଟିଶ୍ ଗଭର୍ଣ୍ଣର୍‌ଙ୍କର ସଭାପତିତ୍ୱରେ ଆୟୋଜିତ ହୋଇଥିବା ଏହି ସଭାଟି ସହିତ ସେ କାହିଁକି ଓ କିପରି ସଂପୃକ୍ତ କରି ରଖିଥିଲେ, ତାହାର କାରଣଟିକୁ ସ୍ପଷ୍ଟ କରି ଦେଇଥିଲେ । ଏହି ସଭା କଲିକତାର

ନାଗରିକମାନଙ୍କର ଏକ ସଭା ଥିଲା ଏବଂ ସଭାର ଆଲୋଚ୍ୟ ବିଷୟ ସଂପୂର୍ଣ୍ଣ ଭାବରେ ସମାଜ କଲ୍ୟାଣ ଏବଂ ମାନବହିତ ଦିଗରେ ଉଦ୍ଦିଷ୍ଟ ହୋଇ ରହିଥିଲା । ସେ କହିଥିଲେ, ''ମାତ୍ର ଯଦି ସେମାନେ (ସଂଶୟ ପ୍ରକାଶ କରୁଥିବା ବ୍ୟକ୍ତିମାନେ) କ୍ଷଣକ ପାଇଁ ମଧ ଚିନ୍ତା କରି ଦେଖିବେ, ତେବେ ଅବଶ୍ୟ ଉପଲବ୍ଧି କରିପାରିବେ ଯେ, ଆମେ ଯେଉଁ ଅବସରରେ ଏବଂ ଯେଉଁ ଉଦ୍ଦେଶ୍ୟରେ ଏଠାରେ ଏକତ୍ର ହୋଇଛୁ, ସେଥିରେ ଜାତି, ଧର୍ମ, ବର୍ଣ୍ଣ, ସଂପ୍ରଦାୟ ଅଥବା ରାଜନୀତିର ଆଦୌ କୌଣସି ବିଚାର କରାହୋଇ ନାହିଁ । ଏହି ବିଷୟଟି ପ୍ରକୃତରେ ଏକ ଉଚ୍ଚତର ବିଷୟ ଏବଂ ତାହା ହେଉଛି ଯାବତୀୟ ବିବାଦର ଅନେକ ଉର୍ଦ୍ଧ୍ୱରେ ।''

ସଭାପତି ହିସାବରେ ନିଜର ଅଭିଭାଷଣରେ ଗଭର୍ଣ୍ଣର ସାର ଷ୍ଟାନ୍‌ଲି ଜ୍ୟାକ୍‌ସନ୍ ଅପ୍ରାପ୍ତବୟସ୍କା ବାଳିକାମାନଙ୍କର ଉଦ୍ଧାର ପାଇଁ ତାଙ୍କର ପୂର୍ବାସୀନଙ୍କର ନିବେଦନ ପ୍ରତି ମେୟର ଯତୀନ୍ଦ୍ରମୋହନ ସଙ୍ଗେ ସଙ୍ଗେ ଯେଉଁ ସକ୍ରିୟ ସମର୍ଥନ ଜଣାଇଛନ୍ତି, ସେଥିଲାଗି ତାଙ୍କର ପ୍ରଶଂସା କରିଥିଲେ । କାରଣ, ସେ ପୂର୍ବରୁ କରିଥିବା ନିବେଦନଟି ପ୍ରାପ୍ତ ହୋଇଥିବା ସାଧାରଣ ସମର୍ଥନ ଦୃଷ୍ଟିରୁ ଏକାନ୍ତ 'ଯଥେଷ୍ଟ' ବୋଲି ପ୍ରମାଣିତ ହୋଇଥିଲା । ଗଭର୍ଣ୍ଣର କହିଥିଲେ, 'ଶ୍ରୀଯୁକ୍ତ ମେୟର୍, ଆପଣ ଯେ ଏଠାକୁ ପୁନର୍ବାର ଆସିଛନ୍ତି, ଆପଣଙ୍କର ଏହି ଉଚ୍ଚ ଆସନ ଏବଂ ପ୍ରଭୂତ ବ୍ୟକ୍ତିଗତ ପ୍ରଭାବ ବଳରେ ଏହି ନିବେଦନର ଯେ ଅଧିକ ଭଲ ଫଳ ଫଳିବ, ସେ ବିଷୟରେ ମୋର ଆଦୌ କୌଣସି ସନ୍ଦେହ ନାହିଁ ।'

ଅବାଞ୍ଛିତ ପରିବେଶମାନଙ୍କରୁ ଉଦ୍ଧାର କରି ଅଣାଯାଇଥିବା ବାଳିକାମାନଙ୍କ ସକାଶେ ଗୋଟିଏ ଆଶ୍ରୟ-ସଦନର ସ୍ଥାପନା ପାଇଁ ଏବଂ ତାହାର ରକ୍ଷଣାବେକ୍ଷଣ ନିମନ୍ତେ ଗୋଟିଏ ସ୍ଥାୟୀ ପାଣ୍ଠିର ବରାଦ କରିବା ପାଇଁ ମେୟର୍ ଗୋଟିଏ ପ୍ରସ୍ତାବ ଆଗତ କରିଥିଲେ (ସଭା ତାହାକୁ ଗ୍ରହଣ କରିଥିଲା) ଏବଂ ଏହି ହିତକାରୀ ଉଦ୍ଦେଶ୍ୟ ପାଇଁ ଅର୍ଥସାହାଯ୍ୟ ଦେବା ଲାଗି ଦେଶବାସୀଙ୍କୁ ଅନୁରୋଧ କରିଥିଲେ । ପ୍ରସ୍ତାବଟିକୁ ପ୍ରାଞ୍ଜଳ ଭାବରେ ବୁଝାଇ ଦେଇଥିଲେ ଏବଂ ତା' ସହିତ, ଅପ୍ରାପ୍ତବୟସ୍କା ବାଳିକାମାନଙ୍କୁ ଅପହରଣ କରି ସେମାନଙ୍କୁ ଦୁର୍ଗତି ମଧ୍ୟକୁ ଠେଲି ଦେଉଥିବା ଅପରାଧରେ ଅଭିଯୁକ୍ତ ବ୍ୟକ୍ତିମାନଙ୍କ ପ୍ରତି ଯେପରି ଦୃଷ୍ଟାନ୍ତ ମୂଳକ ଶାସ୍ତିର ବିଧାନ ହୋଇପାରିବ, ସେଥିଲାଗି ଆବଶ୍ୟକ ବିଧାନର ପ୍ରଣୟନ କରିବା ଲାଗି ଗଭର୍ଣ୍ଣରଙ୍କ ପାଖରେ ଦାବି କରିଥିଲେ । ସେ ଆହୁରି ସୂଚନା ଦେଇ କହିଥିଲେ ଯେ, ଯଦି ତାଙ୍କ ହାତରେ କ୍ଷମତା ଥାଆନ୍ତା, ତେବେ ସେ ଯେ ଏହି କିସମର ଅପରାଧୀମାନଙ୍କ ପାଇଁ କେବଳ ଜୋରିମାନା ଓ କଠୋର କାରାଦଣ୍ଡର ବ୍ୟବସ୍ଥା କରନ୍ତେ ତା' ନୁହେଁ, ମାତ୍ର ସମାଜ ଲାଗି ଅତ୍ୟନ୍ତ ଅନର୍ଥକାରୀ ଏହି ଘୃଣ୍ୟ ଅପରାଧ ସକାଶେ ସାଧାରଣରେ ବେତମାଡ଼ର ପ୍ରଚଳନ ମଧ କରନ୍ତେ ।

ଆପଣାର ଉପସଂହାର ଭାଷଣରେ ଗଭର୍ଣ୍ଣର ଉପଯୁକ୍ତ ପ୍ରତିକ୍ରିୟା ବ୍ୟକ୍ତ କରି କହିଥିଲେ 'ମେୟର୍ ମତ ବ୍ୟକ୍ତ କରିଛନ୍ତି ଯେ, ଏଠାରେ ସେ ଏବଂ ମୁଁ ଗୋଟିଏ ସଭାମଞ୍ଚରେ ଏକତ୍ରିତ ହୋଇଛୁ ଏବଂ ତାହା ହୁଏତ ଅନେକଙ୍କ ମନରେ ଏକ ବିସ୍ମୟ ସୃଷ୍ଟି କରୁଥିବ । ମାତ୍ର, ଏହିପରି ଏକ ଅବସରରେ ଯଦି ଆପଣ ଏବଂ ମୁଁ ଗୋଟିଏ ସଭାମଞ୍ଚରେ ଏକତ୍ର ଉପସ୍ଥିତ ହୋଇ ନଥାନ୍ତେ, ତେବେ ମୁଁ ଅତ୍ୟନ୍ତ ବିସ୍ମୟ ପ୍ରକାଶ କରିଥାନ୍ତି । ଆପଣ ହେଉଛନ୍ତି ଏହି ନଗରର ମୁଖ୍ୟ ଶାସକ ଏବଂ ମୁଁ ଗଭର୍ଣ୍ଣର ପଦରେ ଅବସ୍ଥାପିତ । ଏହି ପଦକୁ ଏକ ସୌଭାଗ୍ୟସୂଚକ ଅଥବା ଦୁର୍ଭାଗ୍ୟସୂଚକ ପଦ ବୋଲି ବେଶ୍ କୁହାଯାଇପାରେ ( ସମସ୍ତେ ହସିଲେ ) । ଏହି ଦୁଇଟିଯାକ ହେଉଛନ୍ତି ଦୁଇଟି ପଦ । ମାତ୍ର ମୁଁ କଲିକତାର ଅଧିବାସୀ ତଥା ସମସ୍ତ ପ୍ରଦେଶର ସ୍ୱାର୍ଥଲାଗି ମଧ ଅତୀବ ଆଗ୍ରହ ରଖିଛି ।''

ଗଭର୍ଣ୍ଣର ଶ୍ରୀଯୁକ୍ତ ସେନଗୁପ୍ତଙ୍କର ପ୍ରସ୍ତାବକୁ ସ୍ମରଣରେ ରଖିଲେ ଏବଂ ଏହି ମାନବହିତକର କାର୍ଯ୍ୟକ୍ରମରେ ତାଙ୍କର ସହଯୋଗ ମିଳିବ ବୋଲି ପ୍ରତିଶ୍ରୁତି ଦେଇଥିଲେ ।

1927 ମସିହାର ଶେଷ ଭାଗରେ ସୁଭାଷଚନ୍ଦ୍ର ବୋଷ୍ ଜେଲ୍‌ରୁ ମୁକ୍ତ ହୋଇ ଆସିବା ପରେ ପ୍ରାଦେଶିକ କଂଗ୍ରେସର ନେତୃତ୍ୱରେ ଏକ ପରିବର୍ତ୍ତନ ଘଟିଥିଲା । ରାଜନୀତିକ ଦୃଶ୍ୟପଟକୁ ଫେରିଆସି ସୁଭାଷଚନ୍ଦ୍ରଙ୍କର ସମର୍ଥକମାନେ ତାଙ୍କୁ ସ୍ୱଭାବତଃ ଏକ ଉଚ୍ଚ ସ୍ଥାନରେ ଆସୀନ ରହିବାକୁ ଇଚ୍ଛା କରିଥିଲେ ଏବଂ ସଂଖ୍ୟାଗରିଷ୍ଠ ସମର୍ଥନ ଦ୍ୱାରା ସେ ବଙ୍ଗ ପ୍ରଦେଶ କଂଗ୍ରେସ କମିଟିର ସଭାପତି ନିର୍ବାଚିତ ହେଲେ । 1928 ମସିହାର କର୍ପୋରେସନ୍ ନିର୍ବାଚନରେ ମଧ୍ୟ ତାଙ୍କୁ ଅତ୍ୟନ୍ତ ସ୍ୱାଭାବିକ ଭାବରେ ମେୟର ପଦରେ ଅଭିଷିକ୍ତ କରାଇବା ଲାଗି ଅନୁକୂଳ ମତ ପ୍ରକାଶ ପାଇଲା । 1925 ପରେ ଯତୀନ୍ଦ୍ରମୋହନ ଲାଗଲାଗ ତିନିଥର ମେୟର ହୋଇସାରିଥିଲେ । ପୁନର୍ବାର ସେହି ପଦକୁ ନିର୍ବାଚିତ ହେବାଲାଗି ତେଣୁ ତାଙ୍କର ବିଶେଷ ଆଗ୍ରହ ନଥିଲା । ସୁଭାଷଚନ୍ଦ୍ରଙ୍କ ପକ୍ଷ ସମର୍ଥନ କରି ସେ ପ୍ରକାଶ୍ୟ ଘୋଷଣା କରି ଆପଣାକୁ ପ୍ରତ୍ୟାହୃତ କରି ନେଇଥିଲେ ଏବଂ ତାଙ୍କ ଲାଗି ସମର୍ଥନ ଯୋଗାଡ଼ କରିବାକୁ ତତ୍ପର ହେଲେ । ମାତ୍ର କୌଣସି କାରଣରୁ ଅବସ୍ଥା କଷ୍ଟକର ହେବାକୁ ଆରମ୍ଭ କଲା । ଅଧିକାଂଶ ଅଣକଂଗ୍ରେସ ପୌରସଭା ସଦସ୍ୟ ସେମାନଙ୍କ ଭିତରେ ମୁସଲମାନ୍ ଥିଲେ, ମନୋନୀତ ଇଉରୋପୀୟ ଏବଂ ଅନ୍ୟମାନେ ମଧ୍ୟ ରହିଥିଲେ - ଏକ ପରିବର୍ତ୍ତନ ଇଚ୍ଛା କରିଥିଲେ । ମେୟରପଦ ପାଇଁ ସେମାନେ ଜଣେ ଅଣକଂଗ୍ରେସ ପ୍ରାର୍ଥୀ ବିଜୟକୃଷ୍ଣ ବୋଷ୍‌ଙ୍କ ପକ୍ଷରେ ସକ୍ରିୟ ହେବାକୁ ଲାଗିଲେ । କେବଳ କଂଗ୍ରେସ ଦଳୀୟ ପୌରସଭା ସଦସ୍ୟମାନେ ସଂଖ୍ୟାଲଘୁ ହୋଇ ରହିଥିଲେ । ପ୍ରଭାବଶାଳୀ ପୌରସଭା ସଦସ୍ୟ ଫେଲ୍‌ପ୍‌ସ୍ ଏବଂ ସି.ସି. ବିଶ୍ୱାସ ଆପଣା ମାର୍ଗରେ ଶ୍ରୀ ସେନଗୁପ୍ତଙ୍କୁ ମେୟରପଦ ଲାଗି ଛିଡ଼ା ହେବାକୁ ପ୍ରବର୍ତ୍ତାଇବାକୁ ଚେଷ୍ଟା କରୁଥିଲେ । ତା' ନହେଲେ ସେମାନେ ବି.କେ. ବୋଷଙ୍କ ପକ୍ଷରେ ଭୋଟ୍ ଦେବେ ବୋଲି ସ୍ଥିର କରିଥିଲେ । ମାତ୍ର ସେନଗୁପ୍ତ ଏଥିରେ ସମ୍ମତ ହେଲେ ନାହିଁ ଏବଂ ସୁଭାଷଚନ୍ଦ୍ରଙ୍କୁ ସମର୍ଥନ କରିବାକୁ ଲାଗିଲେ । ସୁଭାଷଚନ୍ଦ୍ର ମଧ୍ୟ ନିର୍ବାଚନରେ ନିଜର ସଫଳତା ବିଷୟରେ ଆଶାବାଦୀ ହୋଇ ରହିଥିଲେ । ସ୍ୱୟଂ ସେନଗୁପ୍ତ ମେୟରପଦ ପାଇଁ ସୁଭାଷଚନ୍ଦ୍ରଙ୍କୁ ନିର୍ବାଚିତ କରିବାଲାଗି ପ୍ରସ୍ତାବ ଆଗତ କରିଥିଲେ । ମାତ୍ର ଅତି ଅଳ୍ପସଂଖ୍ୟକ ଭୋଟ ଲାଗି ସୁଭାଷ ଦୁର୍ଭାଗ୍ୟବଶତଃ ହାରିଗଲେ (ଏପ୍ରିଲ 2, 1928) । ଏହା ଫଳରେ ନଗରର ମେୟରପଦ କଂଗ୍ରେସ ହାତରୁ ଅନ୍ୟତ୍ର ଚାଲି ଯାଇଥିଲା । ସୌଭାଗ୍ୟର କଥା ଯେ, ବି. କେ. ବୋଷ୍ ମଧ୍ୟ ଆପଣାର ଦୃଷ୍ଟିକୋଣରେ ଦେଶଭକ୍ତ ଓ ପ୍ରଗତିକାମୀ ମନୋଭାବର ଥିଲେ ଏବଂ ଘୋଷଣା କରିଥିଲେ ଯେ, ସେ ତାଙ୍କ ପୂର୍ବଗାମୀମାନଙ୍କର ଅନୁସୃତ ମାର୍ଗରେ ହିଁ କର୍ପୋରେସନ୍‌ରେ କାର୍ଯ୍ୟ ଚଳାଇବେ । ଏଣୁ ଏହି କ୍ଷେତ୍ରରେ ଆଦୌ କୌଣସି କଂଗ୍ରେସ ବିରୋଧୀ ମନୋଭାବ ନଥିଲା ।

ପରବର୍ଷ, ଅର୍ଥାତ୍ 1929 ମସିହାରେ, ପ୍ରଦେଶ କଂଗ୍ରେସରେ ରାଜନୀତିକ ନାନା ତିକ୍ତତା ଏବଂ ମତଭେଦ ଜନ୍ମଲାଭ କରିଥିଲା ଏବଂ ଠିକ୍ ଏହି ସମୟରେ କର୍ପୋରେସନ୍‌ର ବାର୍ଷିକ ମେୟର୍ ନିର୍ବାଚନର ବେଳ ବି ଆସି ପହଞ୍ଚିଗଲା । ଏହାର ଠିକ୍ ପୂର୍ବ ବର୍ଷ କଂଗ୍ରେସ ପୌରସଭାରେ ଆପଣାର କର୍ତ୍ତୃତ୍ୱ ହରାଇ ସାରିଥିଲା । ଏଥର ପୌରସଭାର ସଦସ୍ୟମାନେ ସମଗ୍ରତଃ ଯତୀନ୍ଦ୍ରମୋହନ ସେନଗୁପ୍ତଙ୍କୁ ପୁନର୍ବାର କର୍ପୋରେସନ୍‌ର ମୁଖ୍ୟ ରୂପେ ଫେରି ପାଇବାର ସପକ୍ଷରେ ରହିଥିଲେ ।

ମେୟର୍ ନିର୍ବାଚନ ଏକ ଶୁଭ ସଦ୍‌ଭାବମୟତା ମଧ୍ୟରେ ଅନୁଷ୍ଠିତ ହୋଇଥିଲା । ପୌରସଭା ସଦସ୍ୟ ଶରତଚନ୍ଦ୍ର ବୋଷ୍ ବୈଠକଟିର ସଭାପତିତ୍ୱ କରୁଥିଲେ । ଅଭିପ୍ରେତ ପ୍ରାର୍ଥୀମାନଙ୍କର ନାମ ଘୋଷିତ ହୋଇସାରିବା ପରେ ସୁଭାଷଚନ୍ଦ୍ର ବୋଷ୍ ଯତୀନ୍ଦ୍ରମୋହନଙ୍କର ନାମ ପ୍ରସ୍ତାବ କଲେ । ପୌରସଭା ସଦସ୍ୟ ଦାଉଦ ତାହାର ଅନୁମୋଦନ କଲେ । ପ୍ରତିଦ୍ୱନ୍ଦ୍ୱୀ ଅନ୍ୟ କୌଣସି ପ୍ରାର୍ଥୀ ନଥିବାରୁ ସେନଗୁପ୍ତ ପୁଣିଥରେ ସର୍ବସମ୍ମତିକ୍ରମେ 10 ଏପ୍ରିଲ, 1929 ରେ କଲିକତାର ମେୟର୍ ରୂପେ ନିର୍ବାଚିତ ହୋଇଥିଲେ । ଶରତଚନ୍ଦ୍ର ବୋଷ୍ ନୂତନ ମେୟରଙ୍କୁ ସ୍ୱାଗତ କଲେ ଓ ମାଳା ପିନ୍ଧାଇଦେଲେ । ସେଦିନ ସିଟି କର୍ପୋରେସନ୍ ହଲ୍‌ରେ ଆନନ୍ଦର ବିବିଧ ଅଭିବ୍ୟକ୍ତି ମଧ୍ୟରେ ସମ୍ମିଳିତ ଭାବରେ ସମସ୍ତଙ୍କର ଅଭିନନ୍ଦନ ଓ ହର୍ଷଧ୍ୱନି ଶୁଣିବାକୁ ମିଳିଥିଲା । ଚତୁର୍ଥଥର ସକାଶେ ମେୟରପଦକୁ ନିର୍ବାଚିତ ହୋଇଥିବା ଯତୀନ୍ଦ୍ରମୋହନ ସେନଗୁପ୍ତଙ୍କ ଉପରେ ଫୁଲପାଖୁଡ଼ା ବର୍ଷା କରାଯାଇଥିଲା ।

ପୌରମୁଖ୍ୟ ତଥା ପୌରସଭା ସଦସ୍ୟମାନଙ୍କର ଶ୍ରୀ ସେନଗୁପ୍ତ ଉତ୍ତର ଦେଇଥିଲେ । ଆପଣାର ବିଜୟଭୂଷିତ ମସ୍ତକକୁ ଉତ୍ତୋଳିତ କରି ଧରି ଏବଂ ପୂର୍ଣ୍ଣ ନମ୍ରତା ତଥା ଆଶାବାଦୀ ସ୍ୱଚ୍ଛତା ସହିତ ସେ କହିଥିଲେ, 'ଆପଣମାନେ ଜାଣନ୍ତି, ମୁଁ ହେଉଛି ଦେଶବନ୍ଧୁ ଚିତ୍ତରଞ୍ଜନଙ୍କର ଜଣେ ବିନମ୍ର ଅନୁଗାମୀ ମାତ୍ର । ମୋର ରାଜନୀତି ବିଷୟରେ ମଧ୍ୟ ଆପଣମାନେ ଅବହିତ ଅଛନ୍ତି । ଆମେ କଂଗ୍ରେସର ଯେଉଁ କାର୍ଯ୍ୟକ୍ରମର ପ୍ରତିନିଧିତ୍ୱ କରୁଛୁ, ଏହି ଗୃହର ପରିପ୍ରେକ୍ଷୀରେ ତାହା ହେଉଛି ଏକ ରଚନାତ୍ମକ କାର୍ଯ୍ୟକ୍ରମ, ତାହା ଆଦୌ କୌଣସି ପ୍ରତିବନ୍ଧକ ସୃଷ୍ଟି କରିବାଲାଗି ଉଦ୍ଦିଷ୍ଟ ନୁହେଁ । ମୁଁ ପୂର୍ବରୁ ଯେପରି କହିଛି, ମୁଁ ଆପଣମାନଙ୍କର ପ୍ରତ୍ୟେକଙ୍କର ସଦିଚ୍ଛା ଓ ସାହାଯ୍ୟ କାମନା କରୁଛି । ମାତ୍ର, ଆପଣମାନଙ୍କୁ ମୋର ଅବଶ୍ୟ ସ୍ମରଣ କରାଇଦେବା ଉଚିତ ଯେ, ଦେଶ ହେଉଛି ଯେକୌଣସି ବ୍ୟକ୍ତି ଅପେକ୍ଷା ଅଧିକ ବୃହତ୍ ଏବଂ ମୋ ଲାଗି ଭାରତୀୟ ଜାତୀୟ କଂଗ୍ରେସ ହେଉଛି ଅନ୍ୟ ଯେକୌଣସି ସଂସ୍ଥାଠାରୁ ଅଧିକ ବଡ଼ । ତେଣୁ ଆମେ ସର୍ବଦା ଏହି ବୃହତ୍ ନଗରୀରେ ବାସ କରୁଥିବା ଜନଗଣଙ୍କର ପ୍ରକୃତ କଲ୍ୟାଣ ପାଇଁ ହିଁ କାର୍ଯ୍ୟ କରିଥାଉ ।''

ତା'ପରେ ସେ ପ୍ରତିଶ୍ରୁତିବଦ୍ଧ ଭାବରେ ଏହି ବାକ୍ୟଗୁଡ଼ିକୁ ଉଚ୍ଚାରଣ କରିଥିଲେ, ''ଆମେ ଇଉରୋପୀୟମାନଙ୍କ ବିରୋଧୀ ନୋହୁ କିମ୍ବା ମୁସଲମାନମାନଙ୍କର ବି ବିରୋଧୀ ନୋହୁ । ଆମେ ଏକ ଜାତୀୟବାଦୀ ସଂସ୍ଥା, ଆମେ ଜାତି, ବର୍ଣ୍ଣ ଏବଂ ଧର୍ମ ବିଷୟରେ ଯେକୌଣସି ପାତ୍ରାନ୍ତର-ବିଚାରର ବିରୋଧୀ ।''

ସେହି ବର୍ଷ, ଶ୍ରୀ ସେନଗୁପ୍ତ ମେୟର୍ ହୋଇ ରହିଥିବା ସମୟରେ ଲାହୋର ଜେଲ୍‌ରେ ଯତୀନ୍ଦ୍ରନାଥ ଦାସ ମୃତ୍ୟୁବରଣ କରିଥିଲେ । ସେହି ଜେଲରେ ରାଜନୀତିକ ବନ୍ଦୀମାନଙ୍କ ପ୍ରତି କର୍ତ୍ତୃପକ୍ଷମାନେ ପ୍ରଦର୍ଶନ କରୁଥିବା ନିର୍ମମ ବ୍ୟବହାର ବିରୋଧରେ ଦୃଢ଼ ପ୍ରତିବାଦ ଜଣାଇ ସେ ଅନଶନ କରିଥିଲେ । ତାଙ୍କର ମୃତ୍ୟୁ ସମ୍ବାଦ ଶୁଣି ସମଗ୍ର ଦେଶ ଓ ବିଶେଷ ଭାବରେ କଲିକତା ସହର ସ୍ତମ୍ଭୀଭୂତ ହୋଇ ଯାଇଥିଲା । ନବେ ଦିନ ଅନଶନ କରିବା ପରେ ସେ ମୃତ୍ୟୁବରଣ କରିଥିଲେ (ସେପ୍ଟେମ୍ବର 13, 1929) । ଭାରତର ସ୍ୱାଧୀନତା ସଂଗ୍ରାମରେ ଜଣେ ଅଗ୍ରଗଣ୍ୟ ସଂହିଦ ରୂପେ ସେ ଆପଣାର ଜୀବନ ବଳି ଦେଇଥିଲେ । କଲିକତା ହିଁ ଯତୀନ୍ଦ୍ରନାଥଙ୍କର ଯାବତୀୟ ରାଜନୀତିକ କାର୍ଯ୍ୟର କେନ୍ଦ୍ର ହୋଇ ରହିଥିଲା ଏବଂ ଏକଦା ସେ ଦକ୍ଷିଣ କଲିକତା କଂଗ୍ରେସ କମିଟିର ସହକାରୀ ସମ୍ପାଦକ ମଧ୍ୟ ଥିଲେ ।

ଯତୀନ୍ଦ୍ରନାଥଙ୍କର ମୃତ୍ୟୁ ସମ୍ବାଦ କଲିକତାରେ ପହଞ୍ଚିବାର ଅବ୍ୟବହିତ ପରେ କର୍ପୋରେସନ୍ ସଦସ୍ୟମାନେ ଏକ ଜରୁରୀ ଶୋକସଭାରେ ସମ୍ମିଳିତ ହୋଇଥିଲେ । ସେହି ସଭାରେ ସଭାପତିତ୍ୱ କରି ମେୟର୍ ଦେଶପ୍ରିୟ ଯତୀନ୍ଦ୍ରମୋହନ ସହିଦ ଯତୀନ୍ ଦାସଙ୍କର ଉଦ୍ଦେଶ୍ୟରେ ଉଦ୍ଦୀପ୍ତ ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ । ଅନ୍ୟ ନାନା କଥା ମଧ୍ୟରେ ସେ କହିଥିଲେ: ''ରାଜନୀତିକ ବନ୍ଦୀମାନଙ୍କ ପ୍ରତି ଅଧିକ ଭଲ ବ୍ୟବହାର ପ୍ରଦର୍ଶନ କରାଯାଉ ବୋଲି ଯତୀନ୍ ଦାସ ସଂଗ୍ରାମ କରୁଥିଲେ । ସବୁ ସଭ୍ୟ ଦେଶରେ, ଆମେ ଜାଣିଛୁ ଯେ, ରାଜନୀତିକ ବିଭିନ୍ନ ଉଦ୍ଦେଶ୍ୟ ଦ୍ୱାରା ପରିଚାଳିତ ହୋଇ ରାଜନୀତିକ ବନ୍ଦୀମାନେ ଆପଣାର ଏହି ଭୂମିକାଟିର ସମ୍ମାନ ବଜାୟ ରଖିବାଲାଗି ସେମାନଙ୍କର ଏକ ଅଧିକାର ରହିଛି ବୋଲି ଅନୁଭବ କରିଥାନ୍ତି । ଏପରିକି ସେମାନେ ଯେଉଁ ସରକାର ବିରୋଧରେ ଆନ୍ଦୋଳନ କରୁଥାନ୍ତି, ସେହି ସରକାର ସେମାନଙ୍କୁ କାରାରୁଦ୍ଧ କରି ରଖିଥିବା ବେଳେ ମଧ୍ୟ ସେମାନେ ସେହିପରି କରିଥାନ୍ତି ।

> ''ଏପରି ହୁଏତ ଦାବି କରାଯାଇ ପାରିବ ଯେ, ଏହି କ୍ଷେତ୍ରରେ ସରକାର ହିଁ ଜୟଲାଭ କରିଛନ୍ତି, କାରଣ ସେମାନେ ଦାବିଗୁଡ଼ିକୁ ମାନି ନେଇନାହାନ୍ତି । ମାତ୍ର ଏହାଦ୍ୱାରା ଯତୀନ୍ଦ୍ରନାଥ ଏପରି ଜଣେ ବଡ଼ ବୀର ହୋଇ ରହିଲେ, ଯାହାଙ୍କୁ କି ପ୍ରତ୍ୟେକ ବଙ୍ଗବାସୀ ତଥା ପ୍ରତ୍ୟେକ ଭାରତୀୟ ଅବଶ୍ୟ ପୂଜା କରିବ । ଏବଂ ଯେଉଁ ଉଦ୍ଦେଶ୍ୟରେ ସେ ଆପଣାର ଜୀବନକୁ ବଳି ଦେଲେ, ବର୍ତ୍ତମାନ ସରକାର ଜୟଲାଭ କରିଛନ୍ତି ବୋଲି ଭାବୁଥିଲେ, କେବଳ ଭ୍ରାନ୍ତ ଭାବରେ ଭାବୁଥିଲେ ମଧ୍ୟ, ସେହି ଉଦ୍ଦେଶ୍ୟର ଅବଶ୍ୟ ବିଜୟ ହେବ ।... ମାକ୍ସୁଇନିଙ୍କର ଜୀବନରେ ଠିକ୍ ଏହିକଥା ଘଟିଥିଲା ଏବଂ ଯତୀନ୍ଦ୍ରନାଥ ଦାସଙ୍କ କ୍ଷେତ୍ରରେ ମଧ୍ୟ ଠିକ୍ ତାହା ହିଁ ଘଟିବ । ଏହି ଦେଶର ସରକାର ଆମର ଶରୀରକୁ କାରାରୁଦ୍ଧ କରି ରଖିବାଲାଗି ଯେତେଯାହା କଲେ ମଧ୍ୟ ଆମର ଆତ୍ମାକୁ କଦାପି ଅଟକାଇ ରଖି ପାରିବ ନାହିଁ ।'

## ନଗର କର୍ପୋରେସନ ଉପରେ ଜାତୀୟ ପତାକା

ଚତୁର୍ଥ ଥର ପାଇଁ ଦେଶପ୍ରିୟ କଲିକତାର ମେୟର୍ ହୋଇଥିବା ସମୟରେ ଆଉଗୋଟିଏ ଅତ୍ୟନ୍ତ ରାଜନୀତିକ ମହତ୍ତ୍ୱ ଥିବା ଘଟଣା ଘଟିଥିଲା । ଭାରତୀୟ ଜାତୀୟ କଂଗ୍ରେସର ଲାହୋର ଅଧିବେଶନର ପ୍ରାୟ ମାସକ ପରେ ଜାନୁଆରୀ 1930ରେ ସେହି ଘଟଣାଟି ଘଟିଥିଲା । ସେହି ଅଧିବେଶନରେ ପୂର୍ଣ୍ଣ ସ୍ୱାଧୀନତାର ଦାବି କରି ସେହି ଐତିହାସିକ ପ୍ରସ୍ତାବଟି ଗୃହୀତ ହୋଇ ଯାଇଥିଲା ଏବଂ କାର୍ଯ୍ୟକାରୀ କମିଟି 1930 ଜାନୁଆରୀ 26 ତାରିଖ ଦିନ ଭାରତସାରା ଆନୁଷ୍ଠାନିକ ଭାବରେ ସ୍ୱାଧୀନତାର ପତାକା ଉତ୍ତୋଳନ କରିବା ପାଇଁ ନିଷ୍ପତ୍ତି ଗ୍ରହଣ କରିଥିଲା । ବିଦେଶୀ ଆଧିପତ୍ୟରୁ ମୁକ୍ତିଲାଭ କରିବାଲାଗି ଭାରତବର୍ଷର ସାହସିକ ଅଭିଯାନର ଇତିହାସରେ ଏହି ରାଜନୀତିକ ବିଶେଷ ଘଟଣାଟି ବିଷୟରେ ଦେଶବ୍ୟାପୀ ଏକ ସଚେତନତା ସୃଷ୍ଟି କରିବା ହିଁ ତା'ର ଅଭିପ୍ରାୟ ଥିଲା ।

ସ୍ୱାଧୀନତା ଆନ୍ଦୋଳନର ମାର୍ଗରେ ଦେଶ ସେତେବେଳେ ଏକ ନୂତନ ଯୁଗର ଦ୍ୱାରଦେଶରେ ଆସି ଉପନୀତ ହେଉଥାଏ । ତତ୍କାଳୀନ ପୁରୋଭାଗସ୍ଥ ନେତାମାନଙ୍କ ମଧ୍ୟରେ ଜଣେ ହୋଇଥିବାରୁ ମେୟର୍ ସେନଗୁପ୍ତ ଜାନୁଆରୀ 25 ତାରିଖ ଦିନ କର୍ପୋରେସନ୍‌ର ସଦସ୍ୟମାନଙ୍କର ଏକ ବିଶେଷ ବୈଠକ ଡକାଇଥିଲେ । ସେ ସେତେବେଳେ ଅବଶ୍ୟ ଏତେ ସାଂଘାତିକ ଭାବରେ ଅସୁସ୍ଥ ଥିଲେ ଯେ, କୁଆଡ଼କୁ ଯାଇପାରିବା ତ ଦୂରର କଥା, ସିଧା ହୋଇ ଠିଆ ବି ହୋଇପାରୁ ନ ଥିଲେ । ସେ ଅତ୍ୟନ୍ତ

ଉଚ୍ଚ ରକ୍ତଚାପ ଭୋଗୁଥିଲେ । ଡାକ୍ତରମାନେ ତାଙ୍କୁ ବାହାରେ କୁଆଡ଼େ ନଯିବା ବିଷୟରେ ସତର୍କ କରି ଦେଇଥିଲେ, ମାତ୍ର ଯତୀନ୍ଦ୍ରମୋହନ ଆପଣାର କୌଣସି ଦାୟିତ୍ୱକୁ ଏଡ଼ିଦେବାର ସମ୍ଭାବନାକୁ ହିଁ ସହ୍ୟ କରିପାରିଲେ ନାହିଁ ଏବଂ ଏହି ବୈଠକରେ ମେୟର୍ ଆସନରେ ବସିବାଲାଗି ଦୃଢ଼ ସଂକଳ୍ପ କରିଥିଲେ । ନେଲୀ ସେନଗୁପ୍ତ ଓ ଅନ୍ୟ ଆତ୍ମୀୟସ୍ୱଜନଙ୍କ ଗହଣରେ ସେ ଯେକୌଣସି ପ୍ରକାରେ କର୍ପୋରେସନ କକ୍ଷରେ ଯାଇ ପହଞ୍ଚିଲେ । ଡେପୁଟି ମେୟର୍ ରଜାକ୍ ଏବଂ ପୌରସଭା-ସଦସ୍ୟ ସନ୍ତୋଷ କୁମାର ବୋଷ ତାଙ୍କୁ ତାଙ୍କର ଚଉକିରେ ବସିବାକୁ ସାହାଯ୍ୟ କରିଥିଲେ । ଡେପୁଟୀ ମେୟର୍ ବୈଠକର କାର୍ଯ୍ୟ ପରିଚାଳନା କରିଥିଲେ ଏବଂ ମେୟରଙ୍କର ବକ୍ତୃତା ପାଠ କରିଥିଲେ ।

ଭାରତୀୟ ଜାତୀୟ ପତାକାର ସାମଗ୍ରିକ ମହତ୍ତ୍ୱ ବିଷୟରେ ସଂକ୍ଷେପରେ ବୁଝାଇଦେଇ ମେୟର୍ ସେନଗୁପ୍ତ ତା'ପରେ ଅତ୍ୟନ୍ତ ହୃଦୟସ୍ପର୍ଶୀ ଭାବରେ ଏହି କଥାଗୁଡ଼ିକୁ କହିଥିଲେ:

''...କକ୍ଷ ସମ୍ମୁଖରେ ଥିବା ପ୍ରସ୍ତାବଟିର ପ୍ରକୃତ ମହତ୍ତ୍ୱ ଏବଂ ଗାମ୍ଭୀର୍ଯ୍ୟ ରହିଛି । ଏହାକୁ ଆମେ ଆଦୌ ହାଲୁକା ଭାବରେ ଗ୍ରହଣ କରିବା ନାହିଁ । ଆମର ସମୁଦାୟ ଅସ୍ତିତ୍ୱ ହିଁ ଏହାରି ଉପରେ ନିର୍ଭର କରୁଛି । ଜନସାଧାରଣଙ୍କର ମତ ହିଁ ଏହି ପ୍ରସ୍ତାବଟି ଗୃହୀତ ହେଉ ବୋଲି ଦାବି କରୁଛି ଏବଂ, ସମଗ୍ର ଦେଶର ମତ ସହିତ ଆପଣାର ଅନୁସନ୍ଧନ ଜଣାଇବାକୁ ଏବଂ, ଏହା ଯେ ଦେଶ ସହିତ ତାଳ ମିଳାଇ ସବୁକଥା ଅନୁଭବ କରିପାରୁଛି ଏବଂ ତଦ୍ୱାରା ଆପଣାର ସୁନାମକୁ ଅକ୍ଷୁଣ୍ଣ ରଖିବାକୁ ଇଚ୍ଛା କରୁଛି, ତାହା ଦେଖାଇ ଦେବାକୁ ମୁଁ କଲିକତା କର୍ପୋରେସନ ପକ୍ଷରେ ଏକ ସର୍ବନିମ୍ନ କାର୍ଯ୍ୟ ବୋଲି ବିଶ୍ୱାସ କରୁଛି ।

ଯେଉଁମାନଙ୍କ ନିଜର ଏକ ଜାତୀୟ ପତାକା ରହିଛି ଓ ଯେଉଁମାନଙ୍କର ପତାକା ଆମ ପତାକା ଠାରୁ ଭିନ୍ନ,'' ସେମାନଙ୍କ ଲାଗି କିଛି କହିବା ପ୍ରୟୋଜନ ବୋଲି ଅନୁଭବ କରି (ତଦ୍ୱାରା ସେ ଇଉରୋପୀୟ ସଦସ୍ୟମାନଙ୍କ କଥା ଭାବୁଥିଲେ) ଶ୍ରୀ ସେନଗୁପ୍ତ କହିଲେ: ''ଆମ ନିଜଠାରୁ ଏହି କଥାଟିକୁ ଗୋପନ କରି ରଖିବାକୁ ଆଦୌ କୌଣସି ଆବଶ୍ୟକତା ନାହିଁ ଯେ ଆମେ ଯେତେବେଳେ ଆମ ଜାତୀୟ ଅନୁଷ୍ଠାନମାନଙ୍କ ଉପରେ ବ୍ରିଟିଶ୍ ପତାକା ଉଡ଼ାଉଛୁ, ତାହାକୁ ଆମର ଜାତୀୟ ସମ୍ମାନର ଏକ ଅବମାନନା ବୋଲି ହିଁ କହିବାକୁ ହେବ ଏବଂ ଆମ୍ଭମାନଙ୍କର ମନରେ ତାହା ଅତ୍ୟନ୍ତ ଆତଙ୍କ ସୃଷ୍ଟି କରୁଛି । ଏପରି କହି ମୁଁ ବ୍ରିଟିଶ୍ ପତାକା ପ୍ରତି କୌଣସି ଅସମ୍ମାନ ପ୍ରଦର୍ଶନ କରୁ ନାହିଁ । ମାତ୍ର ମୋ' ନିଜ ଦେଶର ପତାକାକୁ ମୁଁ ଅନ୍ୟ ଯେକୌଣସି ପତାକାର ଊର୍ଦ୍ଧ୍ୱରେ ହିଁ ଦେଖୁଛି ବୋଲି କହିଲେ ମୁଁ ଆମ ଭାବନାଗୁଡ଼ିକ ପ୍ରତି କୌଣସି ବୀତଶ୍ରଦ୍ଧ ହେବାର ଅପରାଧରେ କଦାପି ଅଭିଯୁକ୍ତ ହେବି ନାହିଁ ।

ଆଜି ଆମଲାଗି ଏକ ଜାତୀୟ କର୍ତ୍ତବ୍ୟର ଆହ୍ୱାନ ଆସିଛି.... ଆଜି ଦେଶ ଆମଠାରୁ ଏକ କାର୍ଯ୍ୟ ଦାବି କରିବାକୁ ଆସିଛି; ଏବଂ ସକଳ ଗାମ୍ଭୀର୍ଯ୍ୟ ସହିତ, ଆମ ଉପରେ ରହିଥିବା ଦାୟିତ୍ୱ ଏବଂ ଆମ କାର୍ଯ୍ୟଟିର ସକଳ ପରିଣାମ ବିଷୟରେ ପୂର୍ଣ୍ଣ ସଚେତନତା ସହିତ ଜାତୀୟ ପତାକାକୁ ଉତ୍ତୋଳିତ କରିବାଠାରୁ ବଳି ବର୍ତ୍ତମାନ ବୃହତ୍ତର ଅନ୍ୟ କୌଣସି କାର୍ଯ୍ୟ ଆମ ସମ୍ମୁଖରେ ନାହିଁ ।''

ମେୟର୍ ସେନଗୁପ୍ତ ଏହିପରି ଭାବରେ ତାଙ୍କ ଭାଷଣର ଉପସଂହାର କରିଥିଲେ ।

ତାଙ୍କର ଗଭୀର ବ୍ୟାକୁଳତାପୂର୍ଣ୍ଣ ଭାଷଣ ସଦସ୍ୟମାନଙ୍କର ଚିତ୍ତକୁ ବିଗଳିତ କରି ଦେଇଥିଲା । ଅତ୍ୟଧିକ ସଂଖ୍ୟାଗରିଷ୍ଠତା ସହିତ- ସପକ୍ଷରେ 38 ଓ ବିପକ୍ଷରେ 7- ପ୍ରସ୍ତାବଟି ଗୃହୀତ ହୋଇ

ଯାଇଥିଲା । ଇଉରୋପୀୟ ସଦସ୍ୟଗୋଷ୍ଠୀ ଆପଣାକୁ ସାମୂହିକ ଭାବରେ ଅନୁପସ୍ଥିତ ରଖିଥିଲେ ଏବଂ ଅନ୍ୟ ମନୋନୀତ ସଭ୍ୟମାନଙ୍କ ମଧ୍ୟରୁ ଅଧିକାଂଶ ଏଥିରେ ଯୋଗ ଦେଇ ନ ଥିଲେ । ପ୍ରସ୍ତାବଟି ଅତ୍ୟନ୍ତ ପରିଷ୍କାର ଭାବରେ ଜାତୀୟ ସଂକଳ୍ପଟିକୁ ବ୍ୟକ୍ତ କରି ଦେଉଥିଲା ।

"... ପ୍ରସ୍ତାବଟି କରାଯାଉଛି ଯେ କର୍ପୋରେସନ୍ ତରଫରୁ 1930 ଜାନୁଆରୀ 26 ତାରିଖ ଦିନ ଏବଂ ଭବିଷ୍ୟତରେ ଯାବତୀୟ ଉତ୍ସବ ଅବସରରେ ତାହାର ସବୁ ମ୍ୟୁନିସିପାଲ୍ ଅଟ୍ଟାଳିକା ଏବଂ ଅନୁଷ୍ଠାନ ଉପରେ ଜାତୀୟ ପତାକା ଉତ୍ତୋଳିତ ହେବ ଏବଂ କାଲି ଜାତୀୟ ପତାକାର ଉତ୍ତୋଳନ ଲାଗି ଆବଶ୍ୟକ ବନ୍ଦୋବସ୍ତମାନ କରିବାଲାଗି ଏତଦ୍ୱାରା ଚିଫ୍ ଏକ୍‌ଜିକ୍ୟୁଟିଭ୍ ଅଫିସରଙ୍କୁ ଅନୁରୋଧ କରାଯାଉଛି ।"

ପ୍ରସ୍ତାବଟିକୁ ବିଧିବଦ୍ଧ ଭାବରେ କାର୍ଯ୍ୟକାରୀ କରାଯାଇଥିଲା । କର୍ପୋରେସନ୍‌ର ଅଟ୍ଟାଳିକା ଏବଂ ଅନୁଷ୍ଠାନଗୁଡ଼ିକ ଉପରେ ନାଗରିକମାନଙ୍କର ସଶ୍ରଦ୍ଧ ଅଭିନନ୍ଦନ ସହିତ ଜାତୀୟ ପତାକାକୁ ଆନୁଷ୍ଠାନିକ ଭାବରେ ଉତ୍ତୋଳିତ କରାଯାଇଥିଲା । ବିଦେଶୀ ଶାସକ ଓ ସେମାନଙ୍କର ସଂପ୍ରଦାୟ ଦୂରରୁ ଥାଇ ତାହାର ଅବଲୋକନ କରିଥିଲେ । ସେତେବେଳେ ସେମାନେ ଆପଣାର ଦୃଷ୍ଟି ସମକ୍ଷରେ ସେହି ଦିବସଟିର ସୁଦୂରପ୍ରସାରୀ ମହତ୍ତ୍ୱଟିକୁ ଅବଶ୍ୟ ଅନୁମାନ କରିଥିବେ । ଏହି ସଂକ୍ରାନ୍ତରେ ଏକଥା ମଧ୍ୟ ଉଲ୍ଲେଖ କରାଯାଇପାରେ ଯେ, ତାହାର ମାତ୍ର ଅଳ୍ପ କେତେଦିନ ପୂର୍ବରୁ କଲିକତାର ଚିଫ୍ ପ୍ରେସିଡେନ୍ସି ମାଜିଷ୍ଟ୍ରେଟ୍ ଏକ ଭିନ୍ନ ପରିପ୍ରେକ୍ଷୀରେ ଏକ ମନ୍ତବ୍ୟ ବ୍ୟକ୍ତ କରିଥିଲେ ଯେ, ଭାରତର ଜାତୀୟ ପତାକାର ଉତ୍ତୋଳନ କରିବା ଏକ ବୈଧ କାର୍ଯ୍ୟ । ସେଥିରେ ଆପତ୍ତିଜନକ ହେଲାଭଳି ଆଦୌ କିଛି ନାହିଁ; ଏହାକୁ କଦାପି ରାଜଦ୍ରୋହ ବୋଲି କୁହାଯିବ ନାହିଁ ।

ସେ ଯେଉଁ ମହାନ୍ ସହରର ସର୍ବପ୍ରଥମ ନାଗରିକ ଥିଲେ, ସେହି ସହରରେ ସ୍ୱାଧୀନତା ଦିବସକୁ ଏକ ଆନନ୍ଦମୟ ଅବସରରୂପେ ପାଳନ କରାଯିବାର ଦେଖି ଦେଶପ୍ରିୟ ଯତୀନ୍ଦ୍ରମୋହନ ଅବଶ୍ୟ ପ୍ରକୃତ ସନ୍ତୋଷ ଲାଭ କରିଥିବେ । ଜାନୁଆରୀ 26 ତାରିଖ ଦିନ କଲିକତା ସହରର ଉପକଣ୍ଠରେ ଆହୁରି ଅନେକ ସ୍ଥାନରେ ମଧ୍ୟ ଜାତୀୟ ପତାକା ଉତ୍ତୋଳନ କରା ଯାଇଥିଲା । ଉତ୍ତର କଲିକତାର ଦେଶବନ୍ଧୁ ପାର୍କଠାରେ ପତାକା ଉତ୍ତୋଳନର ଏକ ବୃହତ୍ ଅନୁଷ୍ଠାନର ଆୟୋଜନ ହୋଇଥିଲା । ଆପଣାର ଭଗ୍ନ ସ୍ୱାସ୍ଥ୍ୟ ସତ୍ତ୍ୱେ ସେନଗୁପ୍ତ ପୁନର୍ବାର ଡାକ୍ତରଙ୍କର ପରାମର୍ଶକୁ ଅବଜ୍ଞା କରିଥିଲେ ଏବଂ ଆପଣାର ଜାତୀୟ କର୍ତ୍ତବ୍ୟଟିକୁ ସମ୍ପନ୍ନ କରିବାଲାଗି ବାହାରକୁ ଆସିଥିଲେ । ଶ୍ରୀମତୀ ସେନଗୁପ୍ତ ଏବଂ ଯତୀନ୍ଦ୍ରଙ୍କ ବ୍ୟକ୍ତିଗତ ସେକ୍ରେଟାରୀ କ୍ଷିତୀଶ ଗାଙ୍ଗୁଲି ପାଡ଼ିତ ଭର୍ତ୍ତାଙ୍କ ସହିତ ସେଠାକୁ ଯାଇଥିଲେ । ଏଠାରେ ମଧ୍ୟ ସେ ଏକ ପ୍ରେରଣାମୟ ବକ୍ତୃତା ଦେଇଥିଲେ ଓ ଜାତୀୟ ପତାକାର ମହତ୍ତ୍ୱ ବିଷୟରେ ଆଲୋକପାତ କରିଥିଲେ । ସେ କହିଥିଲେ ଯେ, ଜାତୀୟ ପତାକା ହେଉଛି ଜାତୀୟ ମୁକ୍ତିଲାଭର ଅମର ପ୍ରତୀକ ଏବଂ ଜାତୀୟ କଂଗ୍ରେସ ସେହି ମୁକ୍ତି ହାସଲ କରିବା ନିମନ୍ତେ ଶପଥ ଗ୍ରହଣ କରିଛି । ସେଠାରେ ସମବେତ ସେହି ବିରାଟ ଜନସମୂହରେ ଅନେକ ପ୍ରମୁଖ ନାଗରିକ ଉପସ୍ଥିତ ରହିଥିଲେ ଏବଂ ସେମାନେ ସମସ୍ତେ ଲୋକପ୍ରିୟ ନେତାଙ୍କୁ ହର୍ଷଧ୍ୱନିରେ ସମର୍ଥନ ଜ୍ଞାପନ କରିଥିଲେ । ଆପଣାର ସ୍ୱାସ୍ଥ୍ୟ ଫେରି ପାଇବାକୁ ଯେ ସମୁଦ୍ରଯାତ୍ରାର ଯେଉଁ କଳ୍ପନା ଆଗରୁ କରିଥିଲେ ଓ ଯାହାକୁ ଏକାଧିକବାର ଘୁଞ୍ଚାଇ ଦିଆ ଯାଇଥିଲା, ବର୍ତ୍ତମାନ ତାହାକୁ କାର୍ଯ୍ୟକାରୀ କରିବା ଅତି ଜରୁରୀ ହୋଇପଡ଼ିଲା । ତାଙ୍କର ପୂର୍ଣ୍ଣ ବିଶ୍ରାମ ଆବଶ୍ୟକ ଥିଲା, ଏହି ଯାବତୀୟ ଅବିରାମ ରାଜନୀତିକ କର୍ମବ୍ୟସ୍ତତା ତଥା ଉଦ୍‌ବେଗରୁ ଦୂରକୁ ଚାଲିଯିବା ଅତ୍ୟନ୍ତ ଆବଶ୍ୟକ ଥିଲା । ସପ୍ତାହକ ପରେ 1930 ଫେବୃଆରୀ ପହିଲା ଦିନ ଦେଶପ୍ରିୟ ସିଙ୍ଗାପୁର ଯାତ୍ରା କଲେ; ତାଙ୍କର ପତ୍ନୀ ନେଲୀ ତାଙ୍କ ସଙ୍ଗରେ ଯାଇଥିଲେ ।

ଯତୀନ୍ଦ୍ରମୋହନ ସିଙ୍ଗାପୁର ଠାରେ ପ୍ରାୟ ମାତ୍ର ତିନି ସପ୍ତାହ ରହିପାରିଲେ । ଆଇନ୍ ଅମାନ୍ୟ ଆନ୍ଦୋଳନ (ମାର୍ଚ୍ଚ-ଏପ୍ରିଲ 1930 )ର ଶୁଭାରମ୍ଭ କରି ଲବଣ ଆଇନ୍ ଅମାନ୍ୟ କରିବାକୁ ଗାନ୍ଧିଜୀ କରିଥିବା ଯୋଜନାର ପ୍ରାକ୍‌କାଳରେ ଦେଶର ରାଜନୀତିକ ପରିସ୍ଥିତି ଏକ ସଙ୍କଟ ଆଡ଼କୁ ଗତି କରୁଥିଲା । ସେହି ଦୃଷ୍ଟିରୁ ଯତୀନ୍ଦ୍ରମୋହନଙ୍କୁ ତରତର ହୋଇ କଲିକତା ଫେରି ଆସିବାକୁ ହେଲା ।

ବ୍ରହ୍ମଦେଶକୁ ଭାରତବର୍ଷରୁ ଅଲଗା କରି ଦେବାପାଇଁ ସରକାର ଯେଉଁ ଯୋଜନା କରୁଥିଲେ, ସେହି ଦୃଷ୍ଟିରୁ ସେଠାରେ ଥିବା ଭାରତୀୟ ବାସିନ୍ଦାମାନଙ୍କୁ ଏକ ସଂକଟର ସମ୍ମୁଖୀନ ହେବାକୁ ପଡ଼ିଥିଲା । ସେହି ସମ୍ବାଦ ପାଇ ଦେଶପ୍ରିୟ ସେନଗୁପ୍ତ ଫେରିବା ବାଟରେ ରେଙ୍ଗୁନ୍‌ଠାରେ ଓହ୍ଲାଇଥିଲେ । ତାଙ୍କର ରେଙ୍ଗୁନ ଭାଷଣର ଅବ୍ୟବହିତ ପରେ ହିଁ ସେ ଆଇନ୍ ଅମାନ୍ୟ ଆନ୍ଦୋଳନରେ ଭାଗ ନେଲେ ଏବଂ କାରାବରଣ କଲେ । ଏହି ସବୁଯାକ ଘଟଣା ଗୋଟିଏ ମାସ ଭିତରେ ଘଟିଥିଲା । ଏହି ଘଟଣାଗୁଡ଼ିକ ଅତ୍ୟନ୍ତ କ୍ଷିପ୍ର ଭାବରେ (ଫେବୃଆରୀ-ମାର୍ଚ୍ଚ-ଏପ୍ରିଲ 1930) ପରସ୍ପରର ଅନୁଗମନ କରିଥିଲେ । ତାଙ୍କର ଚତୁର୍ଥ ଥରର ମେୟର୍ ପଦର ମିଆଦ ମାର୍ଚ୍ଚ 31 ତାରିଖରେ ପୂରି ଯାଉଥିଲା ଏବଂ ଜଣେ ନୂତନ ମେୟର୍ ନିର୍ବାଚନ କରିବା ଲାଗି 1930, ଏପ୍ରିଲ 29 ତାରିଖ ଧାର୍ଯ୍ୟ ହୋଇଥିଲା । 1930 ଏପ୍ରିଲ 12 ତାରିଖ ଦିନ କଲିକତାର କର୍ଣ୍ଣୱାଲିସ୍ ସ୍କୋୟାର ଠାରେ ଛାତ୍ର ଆନ୍ଦୋଳନ ସମୟରେ ଜ୍ଞାନାଞ୍ଜନ ନିୟୋଗୀଙ୍କର ଲିଖିତ 'ଦେଶର ଡାକ୍' ବୋଲି ବେଆଇନ୍ ଘୋଷିତ ହୋଇଥିବା ଗୋଟିଏ ପୁସ୍ତକକୁ ପାଠ କରିଥିବା ହେତୁ ଦେଶପ୍ରିୟଙ୍କୁ ରାଜଦ୍ରୋହରେ ଅଭିଯୁକ୍ତ କରାଯାଇଥିଲା ଏବଂ ସେଥିରେ ଛଅମାସ କାରାବାସର ଦଣ୍ଡାଦେଶ ହୋଇଥିଲା । ଏହିପରି ଭାବରେ ତାଙ୍କ କାର୍ଯ୍ୟାବଳୀର କ୍ଷେତ୍ରରୁ ତାଙ୍କୁ ଅପସରାଇ ନିଆଗଲା । ତେବେ ଏଥର ପରବର୍ତ୍ତୀ ମେୟର୍ ପୁଣି କିଏ ହେବେ ?

ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁଯାୟୀ ବୈଠକ ଆରମ୍ଭ ହେଲା । ମେୟର୍-ନିର୍ବାଚନର ପରିଚାଳନା କରିବା ପାଇଁ ପୌରମୁଖ୍ୟ ଶରତଚନ୍ଦ୍ର ବୋଷ୍ ସଭାପତି ରୂପେ ନିର୍ବାଚିତ ହେଲେ । ମେୟର୍‌ପଦ ଲାଗି ସେ ପ୍ରାର୍ଥୀମାନଙ୍କର ନାମ ପ୍ରସ୍ତାବିତ ହେଉ ବୋଲି ଘୋଷଣା କରିବାପରେ ପୌରମୁଖ୍ୟ ଡାକ୍ତର ବିଧାନଚନ୍ଦ୍ର ରାୟ ଯତୀନ୍ଦ୍ରମୋହନ ସେନଗୁପ୍ତଙ୍କର ନାମ ପ୍ରସ୍ତାବ କଲେ । ପୌରସଭା-ସଦସ୍ୟ ଡାକ୍ତର ଯତୀନ୍ଦ୍ରନାଥ ମୈତ୍ର ତାହାର ଅନୁମୋଦନ କରିଥିଲେ । ଗୃହ ଆଗରେ ଆଉ କୌଣସି ଦ୍ୱିତୀୟ ନାମ ଉପସ୍ଥାପିତ ହୋଇ ନ ଥିଲା । ତେଣୁ କେବଳ ଜଣେ ମାତ୍ର ପ୍ରାର୍ଥୀ ହିସାବରେ ଯତୀନ୍ଦ୍ର ମୋହନ ସେନଗୁପ୍ତ ପୁନର୍ବାର କଲିକତାର ମେୟର୍ ହେଲେ ବୋଲି ଘୋଷିତ ହେଲେ । ତାଙ୍କର ଅନୁପସ୍ଥିତିରେ ଏହା ହେଲା । ସେ ପଞ୍ଚମ ଥର ପାଇଁ ମେୟର୍ ହେଲେ ।

ଗୃହ ଭିତରେ ଓ ଗୃହ ଚାରିପାଖରେ ଥିବା ହଜାର ହଜାର ବ୍ୟକ୍ତି ଦେଶପ୍ରିୟଙ୍କର ନିର୍ବାଚନରେ ତୁମୁଳ ହର୍ଷଧ୍ୱନି କରିଥିଲେ । ତା'ପରେ ଜଣେ ଲୋକପ୍ରିୟ ସଦସ୍ୟ ଆଡ଼ଭୋକେଟ ସନ୍ତୋଷ କୁମାର ବସୁ ଡେପୁଟୀ ମେୟର୍ ରୂପେ ନିର୍ବାଚିତ ହେଲେ । ବସୁ ତତ୍‌କ୍ଷଣାତ୍ ମଞ୍ଚ ଉପରକୁ ଉଠି ଆସିଲେ ଏବଂ ସକଳ ସମ୍ମାନର ସହିତ ମେୟର୍‌ଙ୍କର ଆସନ ଉପରେ ଶ୍ରୀଯୁକ୍ତ ସେନଗୁପ୍ତଙ୍କର ଏକ ପୁଷ୍ପବିଭୂଷିତ ପୂର୍ଣ୍ଣାକୃତି ଛବି ଆଣି ରଖିଦେଇଥିଲେ । ଏହା ପ୍ରକୃତରେ ଏକ ଅତ୍ୟନ୍ତ ପ୍ରଭାବଶାଳୀ ଦୃଶ୍ୟର ସୃଷ୍ଟି କରିଥିଲା ଏବଂ ଆପଣାର ରୋମାଞ୍ଚକତାରେ ସମସ୍ତଙ୍କୁ ଅବାକ୍ କରି ଦେଇଥିଲା ।

ତା'ପରେ ଅଭିନନ୍ଦନର ପର୍ବ ଆରମ୍ଭ ହେଲା । ଆପଣାର ମଧୁର କଣ୍ଠ ଲାଗି ସୁବିଦିତ ପୌର ସଭାସଦସ୍ୟ ଶଚୀନ୍ଦ୍ରନାଥ ମୁଖର୍ଜୀ ଅନୁପସ୍ଥିତ ଅବସ୍ଥାରେ ମେୟର୍‌ରୂପେ ନିର୍ବାଚିତ ହୋଇଥିବାରୁ

ଯତୀନ୍ଦ୍ରମୋହନ ସେନଗୁପ୍ତଙ୍କର ବିରାଟ ବ୍ୟକ୍ତିତ୍ୱ ଉଦ୍ଦେଶ୍ୟରେ ସର୍ବୋତ୍ତମ ପ୍ରଶଂସାବାକ୍ୟମାନ ଆଣି ଅଜାଡ଼ି ଦେଉଥିଲେ । ସେ କହିଥିଲେ: "କଲିକତା କର୍ପୋରେସନ୍‌ର ମୁଖ୍ୟ ଏବଂ ସଦସ୍ୟମାନେ ଏହି ସ୍ମରଣୀୟ ଅବସରରେ ପ୍ରକୃତରେ କିପରି ପରିସ୍ଥିତିଟିର ସମାଧାନ କରିବେ, ସେଥିଲାଗି ସମଗ୍ର ବଙ୍ଗପ୍ରଦେଶ, ଏପରିକି ସମଗ୍ର ଦେଶ ମଧ୍ୟ ନାନା ପ୍ରତ୍ୟାଶା ସହିତ ଆଜି ଉଦ୍‌ଗ୍ରୀବ ହୋଇ ଅନାଇ ରହିଛି ।" ଏହି ପ୍ରସଙ୍ଗରେ ସିଏ ପୁରାଣରେ ଥିବା ଏକ ତୁଲ୍ୟ ଘଟଣାର ଉଲ୍ଲେଖ କରିଥିଲେ । ହଜାର ହଜାର ବର୍ଷ ପୂର୍ବେ ଯେତେବେଳେ ଅଯୋଧ୍ୟାର ରାଜା ରାମଚନ୍ଦ୍ର ସତ୍ୟର ପାଳନ ନିମନ୍ତେ ବନବାସକୁ ଯାଉଥିଲେ, ସେତେବେଳେ ତାଙ୍କର ସାନଭାଇ ଭରତ ସିଂହାସନ ଉପରେ ବଡ଼ଭାଇଙ୍କର କାଷ୍ଠପାଦୁକାକୁ ରଖି ରାଜ୍ୟର ଶାସନଭାର ଗ୍ରହଣ କରିଥିଲେ । ସେ କହିଲେ, "ଆଜି ଆମେ ସମସ୍ତେ ଆପଣାର ସମର୍ଥନ ଦେଇ ମେୟରଙ୍କ ଆସନ ଉପରେ ଶ୍ରୀ ସେନଗୁପ୍ତଙ୍କର ଗୋଟିଏ ଫଟୋଚିତ୍ର ସ୍ଥାପନ କରିଛେଁ....ମୋ' ମନରେ କୌଣସି ସନ୍ଦେହ ନାହିଁ ଯେ, ଶ୍ରୀଯୁକ୍ତ ସେନଗୁପ୍ତ ଏଠାରେ ଆମ ସହିତ ସଶରୀରେ ରହି ନ ଥିଲେ ମଧ୍ୟ, ଏହି କକ୍ଷର ସମୁଦାୟ ବାତାବରଣରେ ହିଁ ତାଙ୍କର ଉପସ୍ଥିତି ବ୍ୟାପ୍ତ ହୋଇ ରହିଛି । ଏବଂ ଶ୍ରୀଯୁକ୍ତ ସେନଗୁପ୍ତଙ୍କର ଅନୁପସ୍ଥିତି ସମୟରେ ଏହି ବୃହତ୍ ନଗରୀର ମେୟର୍ ହିସାବରେ ତାଙ୍କର କର୍ତ୍ତବ୍ୟକୁ ସମ୍ପାଦନ କରୁଥିବାବେଳେ ଆମେ ସେହି ଆସନଟି ଉପରେ ହିଁ ଆମର ଦୃଷ୍ଟି ନିବଦ୍ଧ କରି ରଖିବା ଏବଂ ସେଥିରୁ ମାର୍ଗଦର୍ଶନ ଗ୍ରହଣ କରିବା ।"

1930 ମସିହା ସେପ୍ଟେମ୍ବର 30 ତାରିଖରେ ଯାଇ ଯତୀନ୍ଦ୍ରମୋହନଙ୍କର ଛଅମାସ କାରାଦଣ୍ଡର ମିଆଦ ପୂର୍ଣ୍ଣ ହେଲା । ତେଣୁ, ଆଇନ୍ ଏବଂ ବିଧାନ ଅନୁସାରେ ଯେପରି ରହିଥିଲା, ନିର୍ବାଚିତ ହେବାର ତିନିମାସ ମଧ୍ୟରେ ଜଣେ ପୌରମୁଖ୍ୟ ରୂପେ କର୍ମସ୍ଥାନଟି ପ୍ରତି ଅନୁରକ୍ତ ରହିବାର ଶପଥଗ୍ରହଣ ତାଙ୍କଲାଗି ସମ୍ଭବ ହେଲା ନାହିଁ । ଏହି ପ୍ରତିବନ୍ଧକଟି ରହିବା ଫଳରେ ଶ୍ରୀ ସେନଗୁପ୍ତ ଆଉ ପୌରମୁଖ୍ୟ ହୋଇ ରହିପାରି ନ ଥିଲେ ଏବଂ ତେଣୁ ମେୟର୍ ମଧ୍ୟ ହୋଇପାରିଲେ ନାହିଁ । ଏଥିଲାଗି ତାଙ୍କର ବ୍ୟକ୍ତିଗତ ଭାବରେ କୌଣସି ଦୋଷ ନଥିଲେ ମଧ୍ୟ ଏହି ବିଧାନଗତ, ବା କାର୍ଯ୍ୟାନୁଷ୍ଠାନଗତ ଅଭାବଟିକୁ ଅତିକ୍ରମ କରିବା କିମ୍ବା ଟାଳିଦେବା ଲାଗି ଆଉ କୌଣସି ବାଟ ନ ଥିଲା । ତାଙ୍କର କାରାରୁଦ୍ଧ ହେବାର ଅବ୍ୟବହିତ ପରେ ପୌରମୁଖ୍ୟ ଏବଂ ମେୟର୍ ପଦକୁ ନିର୍ବାଚିତ ହେବା ସମୟରେ ଠିକ୍ ସେହି ଅନ୍ତରାୟ ଆସି ପହଞ୍ଚିଥିଲା । ରାଜନୀତି ଏକ କୁତ୍ସିତ ଖେଳ ବୋଲି ଅପବାଦ ରହିଥିବାରୁ, ଆଗରୁ ଆପଣାକୁ ପ୍ରକଟ କରିବାଲାଗି ସମର୍ଥ ହୋଇ ନ ଥିବା ପ୍ରତିଦ୍ୱନ୍ଦ୍ୱିତା ବଙ୍ଗ ପ୍ରଦେଶ କଂଗ୍ରେସ କମିଟିରେ ମଧ୍ୟ ପ୍ରକଟ ହୋଇ ଆସିଲା । ଯତୀନ୍ଦ୍ରନାଥ ଦୃଶ୍ୟଟି ଠାରୁ ଦୂରବର୍ତ୍ତୀ ହୋଇ ରହିଥିବାରୁ ସେପରି ହୋଇଥିଲା ।

ମାତ୍ର ସେକଥା ଯାହା ହୋଇଥାଉ ପଛକେ, ଦେଶପ୍ରିୟ ସୁଦୀର୍ଘ କାଳ ପାଇଁ ମେୟର୍-ଆସନରେ ଅଧିଷ୍ଠିତ ରହିଥିଲେ ଏବଂ ସମସ୍ତଙ୍କ ଠାରୁ ସର୍ବୋତ୍ତମ ସମ୍ମାନ ଲାଭ କରିଥିଲେ । ଆପଣାର ବଳିଷ୍ଠ ବ୍ୟକ୍ତିତ୍ୱ ଆଚରଣର ନିଷ୍କଳଙ୍କ ଚରିତ୍ର ଏବଂ ଆଜି ମଧ୍ୟ ଆଦୌ କୌଣସି ପଟାନ୍ତର ନଥିବା ସାଧାରଣ କ୍ଷେତ୍ରର ସେବା ସକାଶେ ଧର୍ମ ତଥା ସଂପ୍ରଦାୟ ନିର୍ବିଶେଷରେ ସେ ସମସ୍ତଙ୍କର ସମ୍ମାନ ଲାଭ କରି ପାରିଥିଲେ ।

# ସ୍ୱାଧୀନତା ଆନ୍ଦୋଳନରେ ପ୍ରଦର୍ଶିତ ବିଶିଷ୍ଟତା

ଭାରତୀୟ ସ୍ୱାଧୀନତାର ଯେଉଁ ପ୍ରମୁଖ ଅଗ୍ରଗାମୀମାନେ ଆପଣାର ଅସୀମ ତ୍ୟାଗସ୍ୱୀକାର ତଥା ଦୁଃଖବରଣ ଦ୍ୱାରା ଆପଣା ଲାଗି ଗୋଟିଏ ଗୋଟିଏ ବିଶିଷ୍ଟ ସ୍ଥାନ ରଖିଯାଇଛନ୍ତି, ଦେଶପ୍ରିୟ ଯତୀନ୍ଦ୍ରମୋହନ ସେନଗୁପ୍ତ ସେମାନଙ୍କ ମଧ୍ୟରେ ସବା ଆଗ ଧାଡ଼ିରେ ଜଣେ ହୋଇ ରହିଛନ୍ତି । ଯେଉଁ ମୁହୂର୍ତ୍ତରେ ସେ ସ୍ୱାଧୀନତା ସଂଗ୍ରାମ ମଧ୍ୟକୁ ଝାସ ଦେଇଥିଲେ (ଅସହଯୋଗ ଆନ୍ଦୋଳନ, 1921) ସେହି ମୁହୂର୍ତ୍ତରୁ ହିଁ ଅନେକ ଉଲ୍ଲେଖଯୋଗ୍ୟ କୃତିମାନ ହାସଲ କରିବାର ବିଶିଷ୍ଟତା ହାସଲ କରିପାରିଥିଲେ । 1933 ମସିହାରେ ତାଙ୍କର ଅକାଳ ଦେହତ୍ୟାଗ ପର୍ଯ୍ୟନ୍ତ ସେହି କୃତିତ୍ୱ ଅକ୍ଷୁଣ୍ଣ ହୋଇ ରହିଥିଲା । ଏହି ପର୍ଯ୍ୟାୟଟି ମଧ୍ୟରେ ଚିଟାଗଙ୍ଗ ଠାରେ ବିଦେଶୀ ଶାସକମାନଙ୍କ ପ୍ରତି ପ୍ରଧାନତଃ ନାନା ସାହସିକ, ଭୟମୁକ୍ତ ଏବଂ ସକ୍ରିୟ ଆହ୍ୱାନମାନ ପ୍ରଦର୍ଶିତ ହୋଇଥିଲା । କଲିକତା, ଜାଲିଆନ୍‌ୱାଲାବାଗ୍, ଦିଲ୍ଲୀ ଓ ରେଙ୍ଗୁନ ପରି ବ୍ରିଟିଶ ଜାତିର ନିଜ ଭୂମିରେ ମଧ୍ୟ ତାହା ପ୍ରଦର୍ଶିତ ହୋଇଥିଲା । ବ୍ରିଟିଶ୍ ଶାସନରେ ନିରୀହ ଭାରତୀୟମାନେ ଯେଉଁସବୁ ଅସଂଖ୍ୟ ଅତ୍ୟାଚାର ଏବଂ ଅପକର୍ମର ଶିକାର ହୋଇଥିଲେ, ସେହିଗୁଡ଼ିକୁ ଲୋକ ସମକ୍ଷକୁ ଆଣିବାଦ୍ୱାରା ହିଁ ସେହି ଆହ୍ୱାନମାନ ଦିଆଯାଇଥିଲା । ବ୍ରିଟିଶ୍ ଶାସକମାନେ ସେହିସବୁ ଅଭିଯୋଗର ଆଦୌ କୌଣସି ଉତ୍ତର ଦେଇ ପାରି ନ ଥିଲେ ବା ସେହି ଆହ୍ୱାନ ଗୁଡ଼ିକର ସମ୍ମୁଖୀନ ବି ହୋଇପାରିଲେ ନାହିଁ । ଏସବୁର ପରିଣାମ ବିଷୟରେ ସେ ସଂପୂର୍ଣ୍ଣ ଭାବରେ ସଜ୍ଞାନ ରହିଥିଲେ । ଜୀବନ ଦେଇ ତାଙ୍କୁ ଆପଣା ଦେଶଭକ୍ତିର ମୂଲ୍ୟ ଦେବାକୁ ହୋଇଥିଲା । ଯେପରି ସମଗ୍ର ଦେଶକୁ ସୁବିଦିତ ଅଛି, ଜଣେ ରାଜନୀତିକ ବନ୍ଦୀରୂପେ ଯତୀନ୍ଦ୍ରମୋହନ ମୃତ୍ୟୁବରଣ କରିଥିଲେ । ତାଙ୍କ ବିରୋଧରେ କୌଣସି ଅଭିଯୋଗ ନ ଥିଲା କିମ୍ବା ତାଙ୍କର କୌଣସି ବିଚାର ହୋଇ ନ ଥିଲା । ଦୁଇ ବର୍ଷରୁ ଅଧିକ କାଳ ଜେଲ୍ ଭିତରେ ନିର୍ଯାତିତ ହେବାପରେ ସେ ଇହଧାମ ତ୍ୟାଗ କରିଥିଲେ ।

### ସେନଗୁପ୍ତ ସାଇମନ୍ କମିଶନକୁ ପଦାରେ ପକାଇଦେଲେ

1928 ମସିହା ଏପ୍ରିଲ 7 ତାରିଖରେ ବଙ୍ଗ ପ୍ରାଦେଶିକ ସମ୍ମିଳନୀର ବଶିରହାଟ ଅଧିବେଶନରେ ସଭାପତିତ୍ୱ କରି ଯତୀନ୍ଦ୍ରମୋହନ ସାଇମନ କମିଶନ ଏବଂ ତାହାକୁ ବର୍ଜନ କରିବା ବିଷୟରେ ଏକ ମହତ୍ତ୍ୱପୂର୍ଣ୍ଣ କଥା କହିଥିଲେ । ସେତେବେଳେ ସାଇମନ କମିଶନ ଏକ ଅଖିଳ ଭାରତୀୟ ସମସ୍ୟାରେ ପରିଣତ ହୋଇଥିଲା । ଅନ୍ୟ ଅନେକ କଥା ଭିତରେ ସେ କହିଥିଲେ:

> "...ଏହି କମିଶନ ବସୁ ବୋଲି ଭାରତବର୍ଷ ଆଦୌ ଅନୁରୋଧ କରି ନ ଥିଲା । ମାତ୍ର, ବ୍ରିଟିଶ୍ ସରକାର ଭାରି ତରବର ହୋଇ ତାହାକୁ ଏହି ଉଦ୍ଦେଶ୍ୟରେ ଏଠାକୁ ପଠାଇଛନ୍ତି ଯେ, ସାଂପ୍ରଦାୟିକ ମତଭେଦ ଗୁଡ଼ିକରୁ ଫାଇଦା ଉଠାଇ ଏକ ସମାଧାନ ବାହାର କରିବା ନାମରେ କମିଶନ ଭାରତର ଗୋଡ଼ରେ ପଡ଼ିଥିବା ବେଡ଼ିଗୁଡ଼ିକୁ ଆହୁରି ଅଧିକ ଜୋର୍ କରି ବାନ୍ଧିଦେଇ ପାରିବ ।...

ମାତ୍ର ଭାରତବର୍ଷ ଏହି ଖେଳର ଏପାଖରୁ ସେପାଖ ଯାଏ ସବୁ ଦେଖି ସାରିଲାଣି ଏବଂ ସେହି କାରଣରୁ ହିଁ ଆମେ ଦେଶସାରା ସେହି କମିଶନ ଫେରିଯାଆନ୍ତୁ ବୋଲି ଏକ କ୍ରମାଗତ ଚିତ୍କାର ଶୁଣିବାକୁ ପାଉଛୁ । ଜାତୀୟ କଂଗ୍ରେସ, ଟ୍ରେଡ୍ ୟୁନିଅନ୍ କଂଗ୍ରେସ, ଖିଲାଫତ୍ କନ୍‌ଫରେନ୍ସ୍, ହିନ୍ଦୁ ମହାସଭା ଏବଂ ଲିବରାଲ୍ ଫାଉଣ୍ଡେସନ୍ ତଥା ଅନ୍ୟ ସକଳ ସଂଗଠନ ସେହି କମିଶନକୁ ବର୍ଜନ କରିବାଲାଗି ନିଷ୍ପତ୍ତି ଗ୍ରହଣ କରିଛନ୍ତି ।

ଏହାର ସଂପୂର୍ଣ୍ଣ ଭାବରେ ଔଚିତ୍ୟ ରହିଛି । ଆମେ ଏବଂ ଆମର ମାତୃଭୂମି ମଧ୍ୟରେ ଆମେ ଏକ ତୃତୀୟ ପକ୍ଷକୁ ଆସି ଛିଡ଼ା ହେବାକୁ ଦେବୁ କାହିଁକି ? ଆମ ନିଜ ଉପଯୁକ୍ତତାକୁ ତ ପରୀକ୍ଷା କରିବାକୁ ସେମାନେ ଅତ୍ୟନ୍ତ ଉଦ୍ଧତ ଭାବରେ ଯେଉଁ ଦାବି କରୁଛନ୍ତି, ଆମେ ତାହାକୁ କାହିଁକି ସହ୍ୟ କରିବୁ ? ପ୍ରମାଣ ସ୍ୱରୂପ, ମୁଡ଼ିମାନ୍ କମିଟି ଆଗରେ ମଧ୍ୟ ଯଥେଷ୍ଟ କଥା ନେଇ ଉପସ୍ଥାପିତ କରାଯାଇଥିଲା । ନାଇଁ ନାଇଁ, ଆମକୁ ଏହି ଅକାରଣ ଅପମାନର ଅବଶ୍ୟ ପ୍ରତିଶୋଧ ନେବାକୁ ପଡ଼ିବ ।...

ଭାଇ ଓ ଭଉଣୀମାନେ, ଆମର ଜନ୍ମଗତ ଅଧିକାର ସହିତ ଆମେ ଆଉ ଏଭଳି କୌଣସି ଖେଳ ଖେଳାହେବାକୁ କଦାପି ଦେବା ନାହିଁ । ତୁମେମାନେ ଯେ ସେମାନଙ୍କୁ ସଂପୂର୍ଣ୍ଣ ଭାବରେ ଅବଜ୍ଞା କରୁଛ, ସେହି ଉଦ୍ଧତ ଲୋକମାନେ ସେକଥା ବୁଝିବା ଉଚିତ । କମିଶନକୁ ବୟକଟ୍ କରିବା ଲାଗି ରାଜନୀତିକ ଦଳମାନେ ଯେଉଁ ଦାବି କରୁଛନ୍ତି, ତାହା ଏହି ଦେଶର ଏପାଖରୁ ସେପାଖ ସର୍ବତ୍ର ପ୍ରତିଧ୍ୱନିତ ହୋଇଉଠୁ । ପ୍ରତ୍ୟେକ ବ୍ୟକ୍ତିକୁ ବୁଝିବାକୁ ହେବ ଯେ, ଏହି କମିଶନ୍ ସହିତ ସହଯୋଗ କରିବାଦ୍ୱାରା ନାନା ଅନର୍ଥ ହିଁ ଘଟିବ, ଯାହାର କି ଆଦୌ କୌଣସି ପ୍ରତିକାର କରାଯାଇ ପାରିବ ନାହିଁ । ମାତ୍ର, ତାହାକୁ ସଂପୂର୍ଣ୍ଣ ଭାବରେ ବର୍ଜନ କରିପାରିଲେ ଅବଶ୍ୟ ଏକ ସ୍ପଷ୍ଟ ଲାଭ ହେବ ।...

ଏହି ଆତ୍ମଘାତୀ ଚୁକ୍ତିକୁ ଆମେ କେବେହେଲେ ମାନି ନେବା ନାହିଁ । ଆମେ କୌଣସି କମିଶନ ଦାବି କରୁନାହୁଁ, ଆମେ ରୋଲଟେବୁଲ୍ ବୈଠକ ବସୁ ବୋଲି ଦାବି କରୁଛୁ । ଯଦି 1921 ଓ 1924 ରେ ଗୋଲଟେବୁଲ ବୈଠକ ସମ୍ଭବ ହୋଇପାରିଲା, ତେବେ ବର୍ତ୍ତମାନ ମଧ ତାହା ଏପରି ଅସମ୍ଭବ ହେଲା କାହିଁକି ? ଏହି କମିଶନ୍ ଆମକୁ ଆଦୌ କିଛିହେଲେ ଦେଇପାରିବ ନାହିଁ । ଏବଂ ଆମେ ମଧ୍ୟ ତାହାପାଖରୁ ଆଦୌ କିଛିହେଲେ ମାଗିବାକୁ ଯିବୁ ନାହିଁ ।''...

କମିଶନର ଅସଲ ରୂପଟିକୁ ପଦାରେ ପକାଇ ଦେବାଲାଗି ମୁଁ ଏଠାରେ ଏକ ଉଦାହରଣ ଦେବି । ଏହି ଲୋକମାନେ ଆପଣାର ପ୍ରତିଶ୍ରୁତିଗୁଡ଼ିକ ବିରୋଧରେ ମଧ୍ୟ କିପରି କାର୍ଯ୍ୟ କରନ୍ତି, ସେଥିରୁ ତାହାର ସୂଚନା ମିଳିବ । 1922 ମସିହାରେ ଆଇରିଶ୍ କନ୍‌ଷ୍ଟିଚ୍ୟୁସନ୍ ବିଲ୍ ବିଷୟରେ କହିବାକୁ ଯାଇ ସାର୍ ଜନ୍ କହିଥିଲେ, ''ଏହି ସଂବିଧାନର ଚିଠା ଆୟର୍ଲାଣ୍ଡରେ ହୋଇଛି ଓ ଆୟର୍ଲାଣ୍ଡର ଲୋକମାନେ ହିଁ ତାହାର ଚିଠା କରିଛନ୍ତି,- ଆମେ ଏହାକୁ ହିଁ ବର୍ତ୍ତମାନ ସ୍ଥିତିର ଏକ ଉତ୍ସାହଜନକ ଲକ୍ଷଣ ବୋଲି କହିପାରିବା ।'' ମାତ୍ର ସେ ଆଉଗୋଟିଏ ସ୍ଥାନରେ କହିଛନ୍ତି, 'ଏହି ସଂବିଧାନକୁ ବ୍ରିଟିଶ୍ ସରକାର ସ୍ୱୟଂ ତିଆରି କରି ଆୟର୍ଲାଣ୍ଡକୁ ଆଣି ଦେଇନାହାନ୍ତି କିମ୍ବା ତା' ଉପରେ ଲଦି ଦେଇନାହାନ୍ତି, ସ୍ୱୟଂ ଆୟର୍‌ଲାଣ୍ଡର ଲୋକେ ହିଁ ଏହାକୁ ତିଆରି କରିଛନ୍ତି ଏବଂ ସମ୍ରାଟଙ୍କର ପାର୍ଲିଆମେଣ୍ଟ ତାହାକୁ ଅନୁମୋଦନ କରୁ ବୋଲି ଆବେଦନ କରିଛନ୍ତି । ଏହାକୁ ହିଁ ଏଥିରେ ନିହିତ ହୋଇ ରହିଥିବା ଆଶା ଏବଂ ବିଶ୍ୱାସର ଏକ ପ୍ରକୃତ ଉପାଦାନ ବୋଲି କୁହାଯାଇପାରିବ ।...'

ମାତ୍ର, ସେହି ସାର୍ ଜନ୍ ସାଇମନ୍ ବର୍ତ୍ତମାନ ଭାରତକୁ ଆସି ଏକ ଅନ୍ୟ ପ୍ରକାରର ସ୍ୱରରେ ଗୀତ ଗାଇବା ଆରମ୍ଭ କରି ଦେଇଛନ୍ତି । ଆୟର୍ଲାଣ୍ଡର କ୍ଷେତ୍ରରେ ସେ ଯେଉଁ ଉଦାହରଣ ଦେଖାଇଥିଲେ, ଭାରତବର୍ଷ ସହିତ ତାଙ୍କର କୌଣସି କାର୍ଯ୍ୟରେ ତାହା ଆଦୌ ପରିଲକ୍ଷିତ ଯେ ହେଉ ନାହିଁ, ଏହା ଅତ୍ୟନ୍ତ ଦୁଃଖର କଥା । ଏବଂ, ଏହି ''ନୂତନ ରାଷ୍ଟ୍ରନୀତିଜ୍ଞ'' ସେଥିଲାଗି କାରଣ ଦର୍ଶାଇ କହିଛନ୍ତି ଯେ, ପ୍ରଥମତଃ ଆୟର୍ଲାଣ୍ଡରେ ସେହି ଦାବି ସର୍ବସମ୍ମତ ଭାବେ କରାଯାଇଥିଲା ଏବଂ ଦ୍ୱିତୀୟତଃ, ପଣ୍ଡିତ ମୋତିଲାଲଙ୍କ ପରି ଭାରତୀୟ ନେତାମାନେ, ମାଇକେଲ୍ କଲିନ୍‌ସ୍‌ଙ୍କ ପରି ଆଇରିଶ୍ ନେତାମାନେ ଯେପରି ଯଥେଷ୍ଟ ପରିମାଣରେ ବଳଶାଳୀ ଥିଲେ, ଆଦୌ ସେପରି ବଳଶାଳୀ ନୁହନ୍ତି । ଅର୍ଥାତ୍, ଆପଣାର ଦାବି ପୂରଣ ହୋଇ ନ ଥିଲେ ଆୟର୍ଲାଣ୍ଡ ଯେପରି ଖଡ୍ଗଧାରଣ କରିପାରିଥାନ୍ତା, ତାହା କରିବାଲାଗି ଭାରତର ଅନୁରୂପ କୌଣସି ଶକ୍ତି ନାହିଁ ।....

ଏହି ନ୍ୟାୟଯୁକ୍ତିର ପ୍ରକୃତରେ ପ୍ରଶଂସା କରିବାକୁ ପଡ଼ିବ । ମାତ୍ର ସେକଥା ଯାହା ହୋଇଥାଉ ନା କାହିଁକି, ସାର୍ ଜନ୍ ଆୟର୍ଲାଣ୍ଡ ବେଳକୁ ଯାହା କହିଥିଲେ, ଆମେ ବର୍ତ୍ତମାନ ସେହି ନୀତିର ଅନୁସରଣ କରିବାକୁ ଯାଉଛୁ । ଆମେ ନିଜେ ଆମର ସଂବିଧାନ ପ୍ରସ୍ତୁତ କରିବୁ ଏବଂ ଦାବି କରିବୁ ଯେ ସେହି ସଂବିଧାନ ଅନୁସାରେ ହିଁ ଭାରତବର୍ଷର ଶାସନ ପରିଚାଳିତ ହେବ । ଏବଂ ଯଦି ଆମର ଦାବିକୁ ସ୍ୱୀକାର କରା ନ ଯାଏ ଏବଂ ଆୟର୍ଲାଣ୍ଡ ବେଳକୁ ଯାହା ଆଶଙ୍କା କରାଯାଉଥିଲା, ଯଦି ଏଠାରେ ତାହା ପ୍ରକୃତରେ ଘଟେ, ତେବେ ଆମ୍ଭେମାନେ ସେଥିଲାଗି କଦାପି ଦାୟୀ ହେବୁ ନାହିଁ । ଏହି ସାଇମନ୍ କମିଶନ୍ ଭାରତବର୍ଷକୁ ଆସିଲା, ଦେଶଯାକ ଗସ୍ତ କଲା ଏବଂ କେବଳ ବରାଦ ଦିଆ ଯାଇ ପ୍ରସ୍ତୁତ କରାଯାଇଥିବା ଅଭ୍ୟର୍ଥନା ଏବଂ ଭୋଜନ ଆୟୋଜନ ଦ୍ୱାରା ସନ୍ତୁଷ୍ଟ ହୋଇ ତାହା ପୁଣି ଆପଣା ଦେଶକୁ ଫେରିଗଲା ।''

ଶ୍ରୀଯୁକ୍ତ ସେନଗୁପ୍ତ ପ୍ରଥମେ କହିଥିଲେ:

''ରାଜନୀତି ଦୃଷ୍ଟିରୁ ମୁଁ ଏହି ସମସ୍ୟାଟି (ହିନ୍ଦୁ-ମୁସଲମାନ ଦଙ୍ଗା) ଉପରେ ଆଦୌ କୌଣସି ଅଯଥା ଗୁରୁତ୍ୱ ଆରୋପ କରୁ ନ ଥିଲେ ହେଁ, ଏବଂ ଏହି ଜାତୀୟ ସଙ୍କଟ ସମୟରେ ଏହା ଏକ ଅତୀତ ଘଟଣାରେ ପରିଣତ ହୋଇ ସାରିଲାଣି ବୋଲି ପ୍ରକୃତରେ ବିଶ୍ୱାସ କରୁଥିଲେ ମଧ ମୁଁ ତଥାପି ଅବଶ୍ୟ କହିବି ଯେ, ତାହା ସରକାରଙ୍କ ପାଇଁ ଏକ ଚମତ୍କାର ଆଳ ଏବଂ ସୁଯୋଗର ଜାଲ ସୃଷ୍ଟି କରିପାରିଛି । ଆମେ ଏହି କଥାଟିକୁ କଦାପି ଭୁଲି ଯିବା ନାହିଁ ଯେ, ଏହି ହିନ୍ଦୁ ମୁସଲମାନ ମତଭେଦ ହେତୁ ହିଁ ବ୍ରିଟିଶ୍ ଲୋକେ ଭାରତରେ ପ୍ରବେଶ କରିଥିଲେ ଏବଂ ଏଠାରେ ଆପଣାର ନିୟନ୍ତ୍ରଣ ସମ୍ଭବ କରିପାରିଥିଲେ । ଏବଂ ପୁନଶ୍ଚ, ସେହି ମତଭେଦଟି ସକାଶେ ହିଁ ସେମାନେ ବର୍ତ୍ତମାନ ଏଠାରେ ସେମାନଙ୍କର ଅଧିକାରକୁ ଦୃଢ଼ କରିବାରେ ଲାଗିଛନ୍ତି । ସେହି ମତଲବକୁ ଚକ୍ଷୁ ସମକ୍ଷରେ ରଖି ସେମାନେ ଉପଯୁକ୍ତ ସମୟ ଆସିବା ପୂର୍ବରୁ ଏଠାକୁ ସାଇମନ କମିଶନକୁ ପ୍ରେରଣ କରିଛନ୍ତି ।''

**କଲିକତା କଂଗ୍ରେସ (1928)**

1928 ମସିହାରେ ମେୟର୍ ହୋଇ ରହି ନଥିଲେ ମଧ୍ୟ ଶ୍ରୀଯୁକ୍ତ ସେନଗୁପ୍ତ ଏକ ବୃହତ୍ ବ୍ୟକ୍ତିତ୍ୱ ହିସାବରେ ସ୍ୱୀକୃତି ଲାଭ କରିଥିଲେ ଏବଂ ସମସ୍ତଙ୍କ ଠାରୁ ଅଶେଷ ଶ୍ରଦ୍ଧା ତଥା ସମ୍ମାନ ମଧ୍ୟ

ପାଇଥିଲେ । ସାଇମନ୍ କମିଶନର ବୟକଟ୍ ଦ୍ୱାରା କୌଣସି ଏକ ସାଧାରଣ ବୃହତ୍ କାର୍ଯ୍ୟ କରିବା ଲାଗି ଅନୁକୂଳ ପରିସ୍ଥିତିର ସୃଷ୍ଟି ହୋଇଥିଲା ଏବଂ ଏହିପରି ଭାବରେ ବଙ୍ଗ କଂଗ୍ରେସର ବିବଦମାନ ରାଜନୀତିକ ଗୋଷ୍ଠୀଗୁଡ଼ିକ ମଧ୍ୟରେ ଏକତାର ପୁନଃପ୍ରତିଷ୍ଠା କରିବା ସକାଶେ ଏକ ବୃହତ୍ ସୁଯୋଗ ଆସି ମଧ୍ୟ ପହଞ୍ଚିଥିଲା । ପୁନଶ୍ଚ କଂଗ୍ରେସ, ମୁସ୍‌ଲିମ୍ ଲିଗ୍ ଏବଂ ଲିବରାଲ୍ ଫେଡ଼ରେସନ୍ ପ୍ରଭୃତି ବିଭିନ୍ନ ରାଜନୀତିକ ସଂଗଠନ ମଧ୍ୟ ଏକ ସର୍ବ-ଦଳୀୟ ସମ୍ମିଳନୀ ମାଧ୍ୟମରେ ଭାରତର ରାଜନୀତିକ ଭବିଷ୍ୟତ ଲାଗି ଏକ ସଂବିଧାନ ପ୍ରସ୍ତୁତ କରିବା ନିମନ୍ତେ ପରସ୍ପର ସହିତ ଏକତ୍ର ହୋଇଥିଲେ ।

1928 ମସିହାର କଲିକତା କଂଗ୍ରେସକୁ ଐତିହାସିକ ଦୃଷ୍ଟିରୁ ଏକ ମହତ୍ତ୍ୱପୂର୍ଣ୍ଣ ଅଧିବେଶନ ବୋଲି କୁହାଯିବ, କାରଣ ଭାରତୀୟ ରାଜନୀତିକ ଉଦ୍ଦେଶ୍ୟର ପ୍ରାପ୍ତି-ପଥରେ ତାହା ଏକ ଦୃଢ଼ ଏବଂ ସୁଦକ୍ଷ ପଦକ୍ଷେପ ରୂପେ କାର୍ଯ୍ୟ କରିଥିଲା । କଂଗ୍ରେସର ମାଡ୍ରାଜ (1927) ଏବଂ ଲାହୋର (1929) ଅଧିବେଶନଗୁଡ଼ିକ ମଧ୍ୟରେ ଏହା ଏକ ସତର୍କତାପୂର୍ଣ୍ଣ ପ୍ରସ୍ତୁତିମୂଳକ ପର୍ଯ୍ୟାୟ ହୋଇ ରହିଥିଲା । କଲିକତା ଅଧିବେଶନରେ ପଣ୍ଡିତ ମୋତିଲାଲ୍ ସର୍ବୋଚ୍ଚ ପରାମର୍ଶଦାତା ଥିଲେ, ମହାତ୍ମା ଗାନ୍ଧି ମାର୍ଗଦର୍ଶକ ପ୍ରେରଣାରୂପେ କାର୍ଯ୍ୟ କରୁଥିଲେ ଏବଂ ଯତୀନ୍ଦ୍ରମୋହନ ସେନଗୁପ୍ତ ଅଭ୍ୟର୍ଥନା ସମିତିର ସଭାପତି ଥିଲେ । ଅଭ୍ୟର୍ଥନା ସମିତି ଯେପରି ଗୋଟିଏ ଏକତାବଦ୍ଧ ଦଳରୂପେ କାର୍ଯ୍ୟ କରିପାରିବ, ସେଥିଲାଗି ସେ ପ୍ରମୁଖ କଲିକତାବାସୀଙ୍କୁ ତାଙ୍କ ନିକଟକୁ ଟାଣି ଆଣିପାରିଥିଲେ । ଡାକ୍ତର ବିଧାନଚନ୍ଦ୍ର ରାୟ ସାଧାରଣ ସମ୍ପାଦକ ରୂପେ ନିର୍ବାଚିତ ହୋଇଥିଲେ । ପ୍ରେରଣାର ଆକର ତରୁଣନେତା ସୁଭାଷଚନ୍ଦ୍ର ବୋଷ ବିରାଟ ସ୍ୱେଚ୍ଛାସେବକ ସଂଗଠନର ମୁଖ୍ୟ ରୂପେ ଅବସ୍ଥାପିତ ରହିଥିଲେ ଓ ତାହାର ଜେନେରାଲ୍ ଅଫିସର୍ କମାଣ୍ଡିଙ୍ଗ୍ (ଜି.ଓ.ସି.) ନିଯୁକ୍ତ ହୋଇଥିଲେ । ଏବଂ, ଆପଣାର ସଂଗଠନ-ସାମର୍ଥ୍ୟ ନିମନ୍ତେ ସୁବିଦିତ ନଳିନୀ ରଞ୍ଜନ ସରକାର କଂଗ୍ରେସ ପ୍ରଦର୍ଶନୀର ଦାୟିତ୍ୱରେ ଥିଲେ । କଂଗ୍ରେସ୍ ଅଧିବେଶନ ଭଳି ଏକ ଅବସରରେ ବର୍ଣ୍ଣାଢ୍ୟ ସ୍ୱେଚ୍ଛାସେବକ ସଂଗଠନ ଏବଂ ସ୍ୱଦେଶୀ ପ୍ରଦର୍ଶନୀ ଏହି କ୍ଷେତ୍ରରେ ସର୍ବପ୍ରଥମ ଥର ପାଇଁ ଆୟୋଜିତ ହୋଇଥିଲା । ସମବେତ ଅଖିଳ-ଭାରତୀୟ ନେତୃବୃନ୍ଦ ବଙ୍ଗଳାର କଂଗ୍ରେସଲୋକଙ୍କର ଏକତା ଦେଖି ପୁଲକିତ ହୋଇ ଯାଇଥିଲେ ।

' ଆଦର୍ଶ ଏବଂ ନୀତିର କ୍ଷେତ୍ରରେ ମତଗତ ପାର୍ଥକ୍ୟମାନ ଅବଶ୍ୟ ଥିଲା ଏବଂ ବିଷୟ-ନିର୍ବାଚନ କମିଟିରେ "ପୁରାତନ ପ୍ରହରୀ" ଏବଂ ତରୁଣ ଶାଖା ଭିତରେ ତଥା ମୁକ୍ତ ଅଧିବେଶନରେ ମଧ୍ୟ ତାହା ପରିଦୃଷ୍ଟ ହୋଇ ପାରିଥିଲା । ଗାନ୍ଧିଜୀ, ମୋତିଲାଲ୍ ନେହେରୁ ଏବଂ ଯତୀନ୍ଦ୍ରମୋହନ ସେନଗୁପ୍ତ ପ୍ରଥମଟିର ପ୍ରତିନିଧିତ୍ୱ କରୁଥିଲେ । ସ୍ପଷ୍ଟ ଭାବରେ ବୁଝି ହେଉଥିଲା ଯେ, ସେମାନେ ଉମେଶଚନ୍ଦ୍ର ବାନର୍ଜୀ, ଦାଦାଭାଇ ନାରୋଜୀ, ଲୋକମାନ୍ୟ ତିଳକ, ଆନନ୍ଦ ମୋହନ ବୋଷ, ଚିତ୍ତରଞ୍ଜନ ଦାଶ ଓ ଅନ୍ୟମାନଙ୍କ ଭଳି କଂଗ୍ରେସ-ଅନୁଷ୍ଠାନର ନିର୍ମାତାମାନଙ୍କର ସ୍ୱାଭାବିକ ଉତ୍ତରାଧିକାରୀ ହୋଇ ରହିଥିଲେ । ତରୁଣ ଶାଖାଟି ଅଥବା 'ନୂତନ ରକ୍ତ' ମାନଙ୍କର ପୁରୋଭାଗରେ ଜବାହରଲାଲ୍ ନେହରୁ ଏବଂ ସୁଭାଷଚନ୍ଦ୍ର ବୋଷ ରହିଥିଲେ । ସେମାନେ ଅତ୍ୟନ୍ତ ମୁଖର ଥିଲେ, ଗାନ୍ଧିଜୀ ଏବଂ ତାଙ୍କର ନିକଟତମ ଅନୁଗାମୀମାନେ ଦାବି କରୁଥିବା ଔପନିବେଶିକ ପାହିଆ ବଦଳରେ ସେମାନେ ପୂର୍ଣ୍ଣ ସ୍ୱାଧୀନତା ଦାବି କରୁଥିଲେ । ଜବାହରଲାଲ୍ ଏକ ସଂଶୋଧନ ପ୍ରସ୍ତାବ ରଖିଥିଲେ ଯେ, "ବ୍ରିଟିଶ୍ ସମ୍ରାଜ୍ୟ ଶାସନ ସହିତ ସମସ୍ତ ସୂତ୍ର ଛିନ୍ନ ହୋଇ ନପାରିବା ପର୍ଯ୍ୟନ୍ତ ଯଥାର୍ଥ ସ୍ୱାଧୀନତା ଆଦୌ ସମ୍ଭବ ହେବ ନାହିଁ ।" ଦୀର୍ଘକାଳ ମତଭେଦ ପ୍ରକାଶ ପାଇବା ପରେ ଯେଉଁ ବୃତ୍ତାନ୍ତ ପ୍ରସ୍ତାବଟି

ଗୃହୀତ ହେଲା ତାହା କଂଗ୍ରେସର ଦାବି ଔପନିବେଶିକ ପାହିଆକୁ ଗ୍ରହଣ କରିବା ଲାଗି ବ୍ରିଟିଶ୍ ସରକାରଙ୍କୁ ଗୋଟିଏ ବର୍ଷର ଚରମସମୟ (1929 ମସିହା ଡ଼ିସେମ୍ବର 31 ତାରିଖ ପୂର୍ବରୁ ବା ପର୍ଯ୍ୟନ୍ତ) ଦେଇଥିଲା । ''ଯଦି ସେହି ସ୍ୱୀକୃତି ନ ମିଳିବ, ତେବେ କଂଗ୍ରେସ ପୂର୍ଣ୍ଣ ସ୍ୱାଧୀନତା-ପ୍ରାପ୍ତିର ଲକ୍ଷ୍ୟଟିକୁ ହାସଲ କରିବାର କାର୍ଯ୍ୟକୁ ହାତକୁ ନେବ ଏବଂ ଖଜଣା ବନ୍ଦ ସମେତ ଅହିଂସ ଅସହଯୋଗ ଆରମ୍ଭ କରିବ ବୋଲି ସଂକଳ୍ପ କରିଥିଲା ।''

## କେତେକ ବିଶେଷ ଘଟଣା

ସେକଥା ଯାହା ହେଉ ପଛକେ, ସଭାପତିର ଆସନରେ ବସିଥିବା ସେହି ଯୁଗର ରାଜନୀତିକ କୁଳବୃଦ୍ଧ ହିସାବରେ ପଣ୍ଡିତ ମୋତିଲାଲ୍‌ଙ୍କର ଅପ୍ରତିରୋଧ୍ୟ ବାକ୍‌ଶକ୍ତି, ସକଳ ପ୍ରେରଣା ତଥା ସଂଯମର ଉତ୍ସ ସ୍ୱରୂପ ଗାନ୍ଧିଜୀଙ୍କର ବ୍ୟକ୍ତିଗତ ଉପସ୍ଥିତି ଏବଂ ଅଭ୍ୟର୍ଥନା ସମିତିର ସ୍ଥିରମତି ଚେୟାରମ୍ୟାନ୍ ଯତୀନ୍ଦ୍ରମୋହନ ସେନଗୁପ୍ତଙ୍କର ପ୍ରଭୂତ ଭାବରେ ସାହାଯ୍ୟ କରିଥିବା ରାଜନୀତିକ ବିଚକ୍ଷଣତା ଦ୍ୱାରା ପୂର୍ଣ୍ଣ ଭାଷଣ,- ସବୁକିଛି ମିଶି କଲିକତା ଅଧିବେଶନକୁ ଏକ ବୃହତ୍ ସଫଳତାରେ ପରିଣତ କରିଥିଲା । ଜଣେ ପ୍ରମୁଖ ପ୍ରତିନିଧି ଅତୁଲ୍ୟ ଘୋଷଙ୍କର ଆଖି-ଦେଖା କହିବା ଅନୁସାରେ ଯତୀନ୍ଦ୍ରମୋହନଙ୍କର ଅସାଧାରଣ ବ୍ୟକ୍ତିତ୍ୱ ''ଅନୁକୂଳ ଅଥବା ଅନନୁକୂଳ ଯାବତୀୟ ଶିବିର ଉପରେ ଏକ ସନ୍ତୁଳନକାରୀ ପ୍ରଭାବ ପକାଇବାରେ'' ସମର୍ଥ ହୋଇଥିଲା । ★ ସ୍ୱାଧୀନତା-ପର ଯୁଗରେ ଅତୁଲ୍ୟ ଘୋଷ କଂଗ୍ରେସ ନେତୃମହଲରେ ଜଣେ ଶକ୍ତିଶାଳୀ ବ୍ୟକ୍ତି ହିସାବରେ ଆବିର୍ଭୂତ ହୋଇଥିଲେ ।

ଉତ୍ସାହମୟ ଶବ୍ଦରେ ବଙ୍ଗଳା ଏବଂ ତନ୍ମଧ୍ୟରେ କଲିକତାକୁ ଭାରତୀୟ ନବ-ଆବିଷ୍କାର ଏବଂ ଜାତୀୟତାର ଐତିହାସିକ ଜନ୍ମଭୂମି ବୋଲି ଉଲ୍ଲେଖ କରି ଯତୀନ୍ଦ୍ରମୋହନ ଅଭ୍ୟର୍ଥନା ସମିତିର ଚେୟାର୍‌ବ୍ୟାନ୍ ହିସାବରେ ଆପଣାର ଭାଷଣ ଆରମ୍ଭ କରିଥିଲେ ।

ତା'ପରେ ସେ ଜାତୀୟ ଏକତା ଏବଂ ସ୍ୱାଧୀନତାର ପ୍ରାପ୍ତିପଥରେ ଏକତାବଦ୍ଧ କ୍ରିୟାଶୀଳତାର ଆବଶ୍ୟକତା ସମ୍ବନ୍ଧରେ ଆଲୋଚନା କରିଥିଲେ । ଜାତିର ସମକ୍ଷରେ ଉପସ୍ଥାପିତ ହୋଇଥିବା ନେହେରୁ ରିପୋର୍ଟକୁ ସେହି ଏକତାବଦ୍ଧ ଉଦ୍ୟମର ହିଁ ଏକ ପ୍ରମାଣ ବୋଲି କୁହାଯାଇ ପାରିବ ।

> ''ଏହି ଦସ୍ତାବିଜକୁ ମୁଁ ଔପନିବେଶିକ ପାହିଆ ମାଗୁଥିବା ଏକ ଭିକ୍ଷାପାତ୍ର ରୂପେ ଆଦୌ ଦେଖୁନାହିଁ, ମୁଁ ଏହାକୁ ପୂର୍ଣ୍ଣ ସ୍ୱାଧୀନତାର ପ୍ରାପ୍ତି ଲାଗି ଆମର ସଂଗ୍ରାମର ଏକ ଅସ୍ତ୍ରରୂପେ ହିଁ ଦେଖୁଛି ।
>
> .......ମୁଁ ଭାବୁଛି, କୌଣସି ଚିଠା ସଂବିଧାନ ତା' ପଛରେ ଯେତିକି ପରିମାଣର ସମର୍ଥନ ପାଇ ପାରୁଥିବ, ମୂଳତଃ ତାହାରି ଭିତ୍ତି ଉପରେ ହିଁ ତା'ର ଶକ୍ତିର କଳନା କରାଯିବା ଉଚିତ । ଏହି ଦୃଷ୍ଟିରୁ ବିଚାର କରି ଦେଖିଲେ, ନେହେରୁ ରିପୋର୍ଟ୍ ସହିତ ତୁଲ୍ୟ ଭାବରେ ମୁକାବିଲା କରିପାରିବା ପାଇଁ ବର୍ତ୍ତମାନ ଦେଶ ସମ୍ମୁଖରେ ଆଦୌ କୌଣସି ଅନ୍ୟ ପ୍ରସ୍ତାବ ନାହିଁ ।''

ଦସ୍ତାବିଜ୍‌ଟିକୁ ଗ୍ରହଣ କରି ନେବାଲାଗି ସେ ସଭାକୁ ନିବେଦନ କରିଥିଲେ ।

ଶ୍ରୀ ସେନଗୁପ୍ତ ଅତ୍ୟନ୍ତ ଜୋର ଦେଇ କହିଥିଲେ ଯେ,

★ 'କଷ୍ଟ-କଳ୍ପିତ' (ବଙ୍ଗଳା ଭାଷାରେ ଲିଖିତ ସ୍ମୃତିକଥା, ଲେଖକ-ଅତୁଲ୍ୟ ଘୋଷ, ସାପ୍ତାହିକ 'ଦେଶ', କଲିକତାରେ (ଅଗଷ୍ଟ, 1977) ପ୍ରକାଶିତ ।

''ଏକ ଅସ୍ତ୍ର ହିସାବରେ ହିଁ ଔପନିବେଶିକ ସ୍ୱାଧୀନତା ଆମର ଠିକ୍ ପରବର୍ତ୍ତୀ ଲକ୍ଷ୍ୟ ହୋଇ ରହିବା ଉଚିତ; ସେହି ଅସ୍ତ୍ର ବଳରେ ଆମେ ଆମର ଚୂଡ଼ାନ୍ତ ଲକ୍ଷ୍ୟ ଅର୍ଥାତ୍ ସ୍ୱାଧୀନତାକୁ ହାସଲ କରିବାକୁ ଯିବା । ଭାରତକୁ ଏବି ଔପନିବେଶିକ ସ୍ୱାଧୀନତା ପ୍ରଦାନ କରିବା ବ୍ୟତୀତ ଯେ ଆଉ ଅନ୍ୟ କୌଣସି ପନ୍ଥା ନାହିଁ, ଏହି ବିଷୟରେ ବ୍ରିଟେନ୍‌ର ହୃଦ୍‌ବୋଧ ନହେବା ପର୍ଯ୍ୟନ୍ତ ଏକ ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ଆମକୁ ସେତିକି ମଧ୍ୟ କେବେହେଲେ ମିଳିବ ନାହିଁ । ଏବଂ, ଆମ ତରଫରୁ ସହଯୋଗ ଦେଖାଇ ଆମେ କଦାପି ଆମ ଦାବିର ନ୍ୟାୟୋଚିତତା ବିଷୟରେ ବ୍ରିଟେନ୍‌ର ହୃଦ୍‌ବୋଧ କରାଇପାରିବା ନାହିଁ; ମାତ୍ର ବ୍ରିଟେନ୍ ଯେଉଁ ରୀତିରେ ନୀତି ନିର୍ଦ୍ଧାରଣ କରୁଛି, ସେହି ରୀତିରେ ଆଉ ଅଧିକ ଆଗକୁ ଯିବାଲାଗି ତା'ଲାଗି ଅସମ୍ଭବ କରିଦେଇପାରିଲେ ଯାଇ ଆମେ ତାହା କରିପାରିବା । ଭାରତୀୟମାନେ ନୀରବରେ ବ୍ରିଟେନ୍ ଦ୍ୱାରା ପରିଚାଳିତ ହେବାକୁ ମାନି ନେଇଛନ୍ତି ବୋଲି ବ୍ରିଟେନ୍ ସେମାନଙ୍କୁ ପରିଚାଳିତ କରିପାରିଛି; ସେମାନଙ୍କର ଲକ୍ଷ୍ୟ ଆଡ଼କୁ ନୁହେଁ, ମାତ୍ର ସେମାନଙ୍କୁ ସେମାନଙ୍କର ଲକ୍ଷ୍ୟ ଠାରୁ ଅଧିକରୁ ଅଧିକ ଦୂରବର୍ତ୍ତୀ କରି ନେଇଛି । ତେଣୁ, ସହଯୋଗ ଦ୍ୱାରା - ଏହି ସହଯୋଗ ହେଉଛି ବଶ୍ୟତା ସ୍ୱୀକାରର ଏକ ଅନ୍ୟ ନାମ- ଆମକୁ ଯେ କି ପରିଣାମ ପ୍ରାପ୍ତ ହୋଇଛି, ତାହାକୁ ପୂର୍ଣ୍ଣଭାବରେ ଉପଲବ୍ଧି କରି ହିଁ ଆମକୁ ଔପନିବେଶିକ ସ୍ୱାଧୀନତା ଲାଭ କରିବା ନିମନ୍ତେ କାର୍ଯ୍ୟ କରିବାକୁ ହେବ, ଯେପରିକି ଆମେ ତାହାକୁ ପରେ ପୂର୍ଣ୍ଣ ସ୍ୱାଧୀନତାର ପ୍ରାପ୍ତି ଲାଗି ଏକ ମଧ୍ୟବର୍ତ୍ତୀ ସୋପାନ ରୂପେ ବ୍ୟବହାର କରିପାରିବା ।''

ସେନଗୁପ୍ତ ପୁନର୍ବାର କହିଲେ,

'' ଭାରତବର୍ଷର ସନ୍ତାନମାନେ ହିଁ ଭାରତର ସୀମା ଭିତରେ ସ୍ୱାଧୀନତା ହାସଲ କରିବା ଲାଗି କାର୍ଯ୍ୟ କରିବେ । ଆମକୁ ଆମର ନିଜ ବଳକୁ ଠୁଳ କରି ଆଣିବାକୁ ହେବ, ପରସ୍ପରର ନିକଟବର୍ତ୍ତୀ ହୋଇ ଆସିବାକୁ ହେବ, ଆମ ନିଜ ଗୋଡ଼ରେ ଛିଡ଼ା ହେବାକୁ ପଡ଼ିବ । ଏଥିଲାଗି ଆମ ଜାତୀୟ ଜୀବନରେ ଏକ ମୌଳିକ ରୂପାନ୍ତର ଘଟାଇବା ଏକାନ୍ତ ଅପରିହାର୍ଯ୍ୟ । ଆମେ ସର୍ବପ୍ରଥମେ ଆପଣାକୁ ଏହି କଥା ପଚାରିବା, ଭାରତବର୍ଷରେ ଏଡ଼େ ଏଡ଼େ ମହାନ୍ ବ୍ୟକ୍ତିମାନଙ୍କ ଦ୍ୱାରା ଆରମ୍ଭ କରାଯାଇଥିବା ବୃହତ୍ ଜାତୀୟ ଆନ୍ଦୋଳନମାନ କାହିଁକି ବିଫଳ ହୋଇଯାଇଛି, ମାତ୍ର ତୁରସ୍କ, ପାରସ୍ୟ ଓ ଚୀନ୍ ଦେଶମାନଙ୍କରେ ତତୁଲ୍ୟ ଆନ୍ଦୋଳନମାନ କାହିଁକି ସଫଳତା ଲାଭ କରିଛି । ଏହି ପୁରୁଷର ପୃଥିବୀର ଶ୍ରେଷ୍ଠତମ ମାନବ ବର୍ତ୍ତମାନ ଭାରତବର୍ଷର ନେତୃତ୍ୱ ଦେଉଛନ୍ତି । ମାତ୍ର, ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ ପରିଚାଳିତ ହେଉଥିବା ଅସହଯୋଗ ଆନ୍ଦୋଳନ କାହିଁକି ବିଫଳ ହୋଇଛି ? ଅରବିନ୍ଦ କାହିଁକି ଏକାନ୍ତବାସ ଗ୍ରହଣ କରିଛନ୍ତି ଏବଂ, ଚିତ୍ତରଞ୍ଜନଙ୍କୁ ଏକ ଭଗ୍ନ ହୃଦୟ ନେଇ କାହିଁକି ଦେହତ୍ୟାଗ କରିବାକୁ ହୋଇଛି ? ଗାନ୍ଧିଜୀ ଆପଣାକୁ ସାବରମତୀରେ ଥିବା ତାଙ୍କର ଆଶ୍ରମକୁ ପ୍ରତ୍ୟାହାର କରି ନେଇଛନ୍ତି, ମାତ୍ର ଅପର ପକ୍ଷରେ କେମାଲ୍ ପାଶା, ରେଜା ଖାଁ ଏବଂ ଚିଆଙ୍ଗ୍ କାଇଶେକ୍ କାହିଁକି ସ୍ୱାଧୀନ ଜାତିମାନଙ୍କର ପରିଷଦ ଗୃହରେ ସସମ୍ମାନ ଆସୀନ ହୋଇପାରିଛନ୍ତି; ଆମ ଜାତୀୟ ଜୀବନରେ ଯେଉଁ ସବୁ ଦୋଷ ରହିଛି, ସେହିଗୁଡ଼ିକ ମଧ୍ୟରେ ହିଁ ଆମେ ତାହାର ଉତ୍ତର ଖୋଜିବାକୁ ଚେଷ୍ଟା କରିବା । ଆମେ ଅତୀତରେ ଦାସ ହୋଇ ରହିଥିଲା ପରି ଅତୀତର ପୂଜା କରୁଛୁ, ଏଠି ସମ୍ପ୍ରଦାୟ ସମ୍ପ୍ରଦାୟ ମଧ୍ୟରେ ବିବାଦ ଲାଗି ରହିଛି, ଜାତିପ୍ରଥା, ପରଦା, ବହୁପତ୍ନୀ ଗ୍ରହଣ, ବାଲ୍ୟବିବାହ ଏବଂ ଆମ ରାଜନୀତିକ ଜୀବନକୁ କାମୁଡ଼ି ଧରିଥିବା ଏହିପରି ନାନାବିଧ ଅନ୍ୟାନ୍ୟ ମାରାତ୍ମକ

ରୋଗ, ଏହିଗୁଡ଼ିକ ହିଁ ଆମର ବିଫଳତା ସକାଶେ ଦାୟୀ ହେବେ । ଆମେ ଯେଉଁ ଜୀବନକୁ ନେଇ ବଞ୍ଚୁଛୁ; ତାହା ନାନା ଭାଗରେ ବିଭକ୍ତ ହୋଇ ରହିଛି । ଆମର ଦେଶପ୍ରେମ ସାମ୍ପ୍ରଦାୟିକ ହୋଇ ରହିଛି; ଆମର ଏକତା କହିଲେ କେବଳ ଏକ ଏକତ୍ର ପାଖ ପାଖ ହୋଇ ରହିଥିବାକୁ ବୁଝାଉଛି । ଆମେ ସେହି ମଧ୍ୟଯୁଗର ନାନା ପୁରାତନ ବଦ୍ଧ-ଧାରଣା ମଧ୍ୟରେ ବୁଡ଼ିକରି ରହିଛୁ, ଆମ ଜାତିର ଅଧେ ମନୁଷ୍ୟ ପର୍ଦ୍ଦାର ଅନ୍ତରାଳରେ ଜୀବନଶକ୍ତିହୀନ ହୋଇ ରହିଛନ୍ତି ଏବଂ ଅନ୍ୟ ଅଧଟିକୁ ମଧ୍ୟ ଜୀବନଶକ୍ତିହୀନ କରିବାରେ ଲାଗିଛନ୍ତି, ପରସ୍ପର ସହିତ ନାନା ଯୁଦ୍ଧରେ ରତ ଥିବା ଜାତିଗୁଡ଼ିକରେ ବିଭକ୍ତ ହୋଇ ଆମେ ବିଘଟିତ ହୋଇ ରହିଛୁ । ଗ୍ରେଟ୍ ବ୍ରିଟେନ୍ ଅଥବା ଜାପାନରେ ଯେତିକି ଲୋକ ବାସ କରନ୍ତି, ତାହାର ଅର୍ଦ୍ଧସଂଖ୍ୟକ ମଣିଷଙ୍କୁ ଆମେ ଅସ୍ପୃଶ୍ୟ କରି ରଖିଛୁ, ଯେଉଁମାନଙ୍କର ଛାଇ ମାଡ଼ିଲେ ମଧ୍ୟ ଆମେ ଦୂଷିତ ହୋଇଯାଉଛୁ । ଆମେ କେବେ ଆଶା କରିପାରିବା ଯେ ଆମେ ପ୍ରକୃତରେ ବ୍ରିଟେନ୍ ଉପରେ ଆବଶ୍ୟକ ଚାପଟିକୁ ପକାଇପାରିବା ? ଆଧୁନିକ ପୃଥିବୀରେ ଅପଣାକୁ ପ୍ରତିଷ୍ଠିତ କରିପାରିବାକୁ ହେଲେ ଆମକୁ ମଧ୍ୟ ଆଧୁନିକ ହେବାକୁ ପଡ଼ିବ । ପୁରୁଣା କାଳର ଧନୁ ଓ ଶର ଦ୍ୱାରା ତୋପ, ଯୁଦ୍ଧଜାହାଜ ଏବଂ ବ୍ୟୋମଜାନ ସହିତ ଲଢ଼ାଇ କରିବା କଦାପି ସମ୍ଭବ ହେବ ନାହିଁ । ହତିଆରଗୁଡ଼ିକର କ୍ଷେତ୍ରରେ ଯାହା, ସେହି ହତିଆରଗୁଡ଼ିକୁ ବ୍ୟବହାର କରୁଥିବା ମନୁଷ୍ୟ କ୍ଷେତ୍ରରେ ମଧ୍ୟ ଠିକ୍ ସେଇଆ । ଭାରତବର୍ଷର ମନୁଷ୍ୟ ଶକ୍ତିକୁ ପୂର୍ଣ୍ଣ ବିକଶିତ କରିବାକୁ ପଡ଼ିବ, ତାହାକୁ ଆଧୁନିକ ନାନା ଆଦର୍ଶରେ ଅନୁପ୍ରାଣିତ କରିବାକୁ ମଧ୍ୟ ପଡ଼ିବ ।''

ସେ ଉପସଂହାର କରି କହିଲେ,

''ଆପଣମାନେ ଉତ୍ସାହଯୁକ୍ତ ହୁଅନ୍ତୁ । ଏହି ସ୍ୱାଧୀନତା-ଲାଭ ହିଁ ଆପଣମାନଙ୍କର ଦିବସର ଭାବନା ଏବଂ ରାତ୍ରିର ସ୍ୱପ୍ନରେ ପରିଣତ ହେଉ । ଭାରତବର୍ଷର ପୁତ୍ର ଓ କନ୍ୟାମାନେ ଜାତୀୟ ପତାକା ତଳେ ସମ୍ମିଳିତ ହୁଅନ୍ତୁ ଏବଂ ସମତା ତଥା ଭ୍ରାତୃତ୍ୱକୁ ସଂଗ୍ରାମଧ୍ୱନି ରୂପେ ଗ୍ରହଣ କରି ସେମାନେ ଏକ ମୁକ୍ତ ଜାତିର ପରିମୁକ୍ତ ଜୀବନ ଅଭିମୁଖରେ ଅବିରାମ ଏବଂ ଅବିଶ୍ରାନ୍ତ ଭାବରେ ଯାତ୍ରା କରି ଚାଲନ୍ତୁ । କୌଣସି ବିପର୍ଯ୍ୟୟରେ ଦବି ନ ଯାଆନ୍ତୁ, ସାମ୍ରାଜ୍ୟଶକ୍ତିର କ୍ରୋଧ ଏବଂ ଅତ୍ୟାଚାର ସେମାନଙ୍କୁ କଦାପି ବିଚଳିତ କରି ନ ଦେଉ । ଆପଣମାନେ ହତାଶ ହୋଇ ପଡ଼ନ୍ତୁ ନାହିଁ । ଆପଣମାନଙ୍କର ସକଳ ଶକ୍ତିକୁ ଠୁଳ କରିଆଣନ୍ତୁ ଏବଂ, ଭବିଷ୍ୟତର ସେହି ମହାନ୍ ଭାରତବର୍ଷ ରୂପୀ ପ୍ରତିଶ୍ରୁତ ରାଜ୍ୟ ତୁମର ବିଜୟଯୁକ୍ତ ଯାତ୍ରାରେ ପୃଥିବୀର କୌଣସି ଶକ୍ତି ତୁମର କଦାପି କୌଣସି ପ୍ରତିରୋଧ କରିପାରିବ ନାହିଁ । ସେହି କଳ୍ପିତ ଭାରତବର୍ଷ ଏକ ଶକ୍ତିଶାଳୀ ଜାତିରୂପେ ଗଢ଼ା ହୋଇଥିବ, ସଂଗ୍ରଥିତ ହୋଇ ରହିଥିବ, କଳା ଓ ବିଜ୍ଞାନରେ ବଡ଼ ହୋଇପାରିଥିବ, ଜ୍ଞାନର ସୀମାଗୁଡ଼ିକୁ ସଂପ୍ରସାରିତ କରି ଦେଉଥିବ ଏବଂ ପୃଥିବୀର ପ୍ରଗତି ତଥା ସଭ୍ୟତାରେ ଆପଣାର ଯୋଗ୍ୟ ଅବଦାନଟିକୁ ସମ୍ଭବ କରିପାରୁଥିବ । ସେହି ଭାରତବର୍ଷ ଭାରତୀୟ ସମୁଦ୍ର ଗୁଡ଼ିକରେ ଅଧିଶ୍ୱରୀ ହୋଇ ରହିଥିବ, ଏସୀୟ ବାଣିଜ୍ୟ-ସଂଗଠନରେ ନେତୃତ୍ୱ ନେଉଥିବ, ସମଗ୍ର ପୃଥିବୀରେ ଅଶ୍ୱେତ ଜାତିମାନଙ୍କର ଅଧିକାରକୁ କାୟମ କରି ରଖିପାରିଥିବ ।''

## କାନପୁର କଂଗ୍ରେସ

ଏହା ପୂର୍ବରୁ ଯତୀନ୍ଦ୍ରମୋହନ ସେନ୍‌ଗୁପ୍ତ 1925 ଡ଼ିସେମ୍ବର ମାସରେ ଶ୍ରୀମତୀ ସରୋଜିନୀ ନାଇଡୁଙ୍କର ଅଧ୍ୟକ୍ଷତାରେ କାନପୁର ଠାରେ ବସିଥିବା ଭାରତୀୟ ଜାତୀୟ କଂଗ୍ରେସର ଖୋଲା ଅଧିବେଶନରେ

ମଧ୍ୟ ଗୋଟିଏ ଭାଷଣ ଦେଇଥିଲେ । ଦୀର୍ଘକାଳ ଧରି ଅବର୍ଣ୍ଣନୀୟ ଉତ୍ପୀଡ଼ନ ସହ୍ୟ କରି ଆସୁଥିବା ରାଜନୀତିକ ବନ୍ଦୀମାନଙ୍କର ଦୁଃଖଦାୟକ ଅବସ୍ଥାକୁ ବର୍ଣ୍ଣନା କରି ଶ୍ରୀ ସେନଗୁପ୍ତ ବେଙ୍ଗଲ୍ ଅର୍ଡ଼ିନାନ୍‌ସର ଘୋର ନିନ୍ଦା କରିଥିଲେ । କଂଗ୍ରେସ ତଥା ସ୍ୱରାଜ୍ୟ ପାର୍ଟିର କାର୍ଯ୍ୟକଳାପରେ ବାଧା ସୃଷ୍ଟି କରିବାଲାଗି ବ୍ରିଟିଶ୍ ସରକାର ଏକ ଗୁପ୍ତ ପ୍ରତିବିଧାନ ରୂପେ ଏହି ଅର୍ଡ଼ିନାନ୍‌ସର ପ୍ରଚଳନ କରାଇଥିଲେ ।

## ସୁରମା ଉପତ୍ୟକା ସମ୍ମିଳନୀ

ସାଧାରଣ ଜୀବନର ଯାବତୀୟ ମୁଖ୍ୟ କ୍ଷେତ୍ରରେ ବଙ୍ଗଳାର ଜନସାଧାରଣଙ୍କ ଆଖିରେ ଯତୀନ୍ଦ୍ର ମୋହନ ତାହାର ଜଣେ ସର୍ବମାନ୍ୟ ନେତାରୂପେ ଦୃଢ଼ତାର ସହିତ ପ୍ରତିଷ୍ଠିତ ହେବାରେ ଲାଗିଥିଲେ । ତେଣୁ 1926 ମସିହା ଫେବୃଆରୀ 13 ତାରିଖରେ ଅନୁଷ୍ଠିତ ସୁରମା ଉପତ୍ୟକା ସମ୍ମିଳନୀ ପାଇଁ ମଧ୍ୟ ସେ ସଭାପତିତ୍ୱ କରିବାଲାଗି ନିର୍ବାଚିତ ହୋଇଥିଲେ । ସେ ସେଠାରେ ଗୋଟିଏ ସଂକ୍ଷିପ୍ତ ଅଥଚ ବଳିଷ୍ଠ ଭାଷଣ ଦେଇଥିଲେ । ଆପଣା ଭାଷଣର ଉପସଂହାର କରି ସେ କହିଥିଲେ, "ମୋତେ ମୁକ୍ତି ଦିଅ ନଚେତ୍ ମୋତେ ହତ୍ୟା କର କେବଳ ଏହିପରି ଏକ ଭାବନା ଓ ପ୍ରେରଣା ବଳରେ ହିଁ ସ୍ୱାଧୀନ ଭାରତବର୍ଷ ଜନ୍ମଗ୍ରହଣ କରିପାରିବ ।"

## କଂଗ୍ରେସର କାର୍ଯ୍ୟକାରୀ ସଭାପତି

ଯତୀନ୍ଦ୍ରମୋହନ ସେନଗୁପ୍ତ ଜେଲ୍‌ରୁ ଖଲାସ ହୋଇ ଆସିବା ବେଳକୁ (ଆଗରୁ ଯେପରି କୁହାଯାଇଛି, ଏକ ନିଷିଦ୍ଧ ପୁସ୍ତକ ପାଠ କରିଥିବା ହେତୁ ରାଜଦ୍ରୋହର ଅପରାଧରେ ଅଭିଯୁକ୍ତ ହୋଇ ସେ ଛଅମାସ ପାଇଁ କାରାବରଣ କରିଥିଲେ ।) ଆଇନ ଅମାନ୍ୟ ଆନ୍ଦୋଳନ ତାହାର ଶିଖରଦେଶରେ ଆସି ପହଞ୍ଚିଥିଲା । ସମଗ୍ର ଦେଶରେ ଥିବା ବହୁସଂଖ୍ୟକ କଂଗ୍ରେସ ଅନୁଷ୍ଠାନ ତଥା କଂଗ୍ରେସ କାର୍ଯ୍ୟକାରୀ କମିଟିକୁ ବେଆଇନ୍ ବୋଲି ଘୋଷଣା କରାଯାଇଥିଲା । କଂଗ୍ରେସର ପ୍ରାୟ ସବୁ ତୁଙ୍ଗ ନେତା ଜେଲ୍ ଭିତରେ ଥିଲେ । କଂଗ୍ରେସର ସଭାପତି ଜବାହରଲାଲ୍ ନେହେରୁଙ୍କୁ ମଧ୍ୟ ଜେଲ୍ ଭିତରକୁ ଧରି ନିଆଯାଇଥିଲା ।

ତେବେ ବର୍ତ୍ତମାନ କଂଗ୍ରେସ ସଭାପତି କିଏ ହେବ ? ଗାନ୍ଧିଜୀ ତ ଆଗରୁ ଗିରଫ ହୋଇ ଯାଇଥିଲେ, ସର୍ଦ୍ଦାର ପଟେଲ ମଧ୍ୟ ଜେଲ୍‌ରେ ଥିଲେ । ସ୍ୱାସ୍ଥ୍ୟ ଦୃଷ୍ଟିରୁ ପଣ୍ଡିତ ମୋତିଲାଲ୍ ନେହେରୁ କଂଗ୍ରେସର ସଭାପତିତ୍ୱ ଗ୍ରହଣ କରିବାକୁ ଇଚ୍ଛା ପ୍ରକାଶ କରି ନ ଥିଲେ । ତେଣୁ, ଜବାହରଲାଲଙ୍କ ପରାମର୍ଶକ୍ରମେ ପଣ୍ଡିତଜୀ ଯତୀନ୍ଦ୍ରମୋହନ ସେନଗୁପ୍ତଙ୍କୁ କଂଗ୍ରେସର କାର୍ଯ୍ୟକାରୀ ସଭାପତି ହେବାଲାଗି ମନୋନୀତ କଲେ ।

ବସ୍ତୁତଃ, ଏକ ଭଗ୍ନସ୍ୱାସ୍ଥ୍ୟ ଅବସ୍ଥାରେ ହିଁ ତାଙ୍କୁ ଏହି ଦାୟିତ୍ୱଟିକୁ ଗ୍ରହଣ କରିବାକୁ ହୋଇଥିଲା । ସେ ସଙ୍ଗେ ସଙ୍ଗେ ଉତ୍ତର ଭାରତର ଏକ ତୋଫାନୀ ଗସ୍ତକ୍ରମରେ ବାହାରି ଗଲେ । ସାଙ୍ଗରେ ଶ୍ରୀମତୀ ସେନଗୁପ୍ତ ରହିଥିଲେ । ଏହି କ୍ରମରେ ସେ ପାଟନା, ଆଲାହାବାଦ, କାନପୁର ଓ ଲକ୍ଷ୍ନୌ ଗଲେ ଏବଂ ଶେଷରେ ଅମୃତସର ମଧ୍ୟ ଯାଇଥିଲେ (ଅକ୍ଟୋବର 21-25) । କଂଗ୍ରେସ ସଭାପତିତ୍ୱ ଗ୍ରହଣ କରିବାର ପ୍ରାୟ ଚଉଦିନ ଆରଦିନ ଠାରୁ ହିଁ ସେନଗୁପ୍ତଙ୍କର ଯାତାୟାତ ଉପରେ ଭାରତୀୟ ଫୌଜଦାରୀ ଆଇନ୍‌ର 144 ଧାରା ଅନୁସାରେ କଟକଣା ଲଗାଇ ରଖାଗଲା । ଏହି ପ୍ରତିବନ୍ଧକ ସତ୍ତ୍ୱେ ସେ କାନପୁର ଯାଇଥିଲେ (ଅକ୍ଟୋବର 24) ଏବଂ ନିଷିଦ୍ଧାଦେଶ ପ୍ରତି କୌଣସି ଭ୍ରୂକ୍ଷେପ

ନକରି ସେ ଗୋଟିଏ ସାଧାରଣ ସଭାରେ ଆପଣାର ଭାଷଣ ଦେବାକୁ ଠିକ୍ କଲେ, ମାତ୍ର ପ୍ରବଳ ବର୍ଷା ହେତୁ ସେଦିନ କୌଣସି ସଭା ହୋଇପାରିଲା ନାହିଁ । ଅବଶ୍ୟ ଯତୀନ୍ଦ୍ରମୋହନ ଏକ ବିବୃତି ଦେଇ ଗାନ୍ଧିଜୀ ଏବଂ ଜବାହରଲାଲଙ୍କ ଦ୍ୱାରା ପ୍ରଦତ୍ତ କାର୍ଯ୍ୟକ୍ରମ ପ୍ରତି ଆପଣାର ସମର୍ଥନ ଘୋଷଣା କରିଥିଲେ । ସେହିଦିନ ସେ ଲକ୍ଷ୍ନୌ ଆସିଲେ ଏବଂ ଠିକ୍ ସେହିଦିନ ହିଁ ତାଙ୍କ ଉପରେ ସେହି 144 ଧାରା ଜାରି କରା ଯାଇଥାନ୍ତା । ମାତ୍ର ଘଟଣା ଏପରି ଘଟିଲା ଯେ, ଯେଉଁ ପୋଲିସ୍ ଅଫିସର୍ ସେହି ଆଦେଶଟିକୁ ସାଙ୍ଗରେ ନେଇ ଯାଇଥିଲେ, ସିଏ ତାଙ୍କୁ ରେଳଷ୍ଟେସନ ଠାରେ ଧରିପାରିଲେ ନାହିଁ ।

## ଜାଲିଆନ୍‌ୱାଲାଠାରେ ଗିରଫ ହେଲେ

ଅକ୍ଟୋବର 25 ତାରିଖରେ ତାଙ୍କର ଅମୃତସର-ଯାତ୍ରା ଅବଶ୍ୟ ଅଧିକ ଘଟଣାଯୁକ୍ତ ହୋଇଥିଲା । ସେ ସେଠାରେ ଅପ୍ରତ୍ୟାଶିତ ଭାବରେ ଯାଇ ପହଞ୍ଚିଥିଲେ ହେଁ, ଷ୍ଟେସନ୍ ଠାରେ ସେନଗୁପ୍ତ ଏକ ବିରାଟ ଜନତାର ସମ୍ମୁଖୀନ ହୋଇଥିଲେ । ଏଠାରେ 144 ଧାରା ମଧ୍ୟ ତାଙ୍କୁ ଅଭିନନ୍ଦନ ଜଣାଇଲା । ସେ ଏବଂ ଶ୍ରୀମତୀ ସେନଗୁପ୍ତ ଡାକ୍ତର କିଚଲୁଙ୍କ ଘରେ ରହୁଥିଲେ । ସ୍ଥାନୀୟ କଂଗ୍ରେସଲୋକ ଏବଂ ଲୁଗାଦୋକାନୀମାନଙ୍କ ମଧ୍ୟରେ ହୋଇଥିବା ବିବାଦର ମୀମାଂସା କରିବାରେ ଦିନବେଳା ତାଙ୍କର ଦୀର୍ଘ ଅନେକ ଘଣ୍ଟା ଅତିବାହିତ ହୋଇଥିଲା । ତହିଁ ଆରଦିନ ସଂଧ୍ୟା ହୋଇଆସିଲା ବେଳକୁ ସୁପ୍ରସିଦ୍ଧ ଜାଲିଆନ୍‌ୱାଲାବାଗ୍ ଠାରେ ଆୟୋଜିତ ଗୋଟିଏ ସାଧାରଣ ସଭାରେ ଭାଷଣ ଦେବାକୁ ସେ ବାହାରକୁ ଆସିଲେ । ଏହାଦ୍ୱାରା ସେ ସରକାରୀ ନିଷେଧାଜ୍ଞାକୁ ଭଙ୍ଗ କରିଥିଲେ । ସଭାରେ ପ୍ରାୟ 30000 ଲୋକ ଉପସ୍ଥିତ ଥିଲେ । ବସ୍ତୁତଃ ଏକ ବୃହତ୍ ପୋଲିସ୍‌ବାହିନୀ ତାଙ୍କୁ ଅବରୁଦ୍ଧ କରି ନେଇଥିଲେ ଏବଂ ମାଜିଷ୍ଟ୍ରେଟ ତାଙ୍କୁ 144 ଧାରାରେ ଜାରି ହୋଇଥିବା ଆଦେଶଟିକୁ ଶୁଣାଇଦେଲେ । ସେଥିରେ ଆଦୌ ଦବି ନ ଯାଇ ସେନଗୁପ୍ତ ପୂର୍ଣ୍ଣ ଆବେଗରେ ନିଜର ଭାଷଣ ଦେବାରେ ଲାଗିଲେ । ଶେଷରେ ତାଙ୍କୁ ସେଥିରୁ ନିବୃତ୍ତ କରାଗଲା ଓ ପୋଲିସ୍ ଗାଡ଼ି ଭିତରକୁ ନେଇ ନିଆଗଲା । ଚାରିଆଡ଼େ ଅତ୍ୟନ୍ତ ଉତ୍ତେଜନା ଖେଳିଗଲା ।

ଅତ୍ୟନ୍ତ ସ୍ୱତଃସ୍ଫୂର୍ତ୍ତ ଭାବରେ ଲୋକମାନେ ହରତାଳ କରିଥିଲେ । ଚାରିଆଡ଼େ ବିଷାଦ ଖେଳି ଯାଇଥିଲା । କଲିକତା, ନାଗପୁର ଓ ଆହୁରି କେତେ ସହରରେ ମଧ୍ୟ ହରତାଳ ହୋଇଥିଲା । ସେନଗୁପ୍ତଙ୍କ ଗିରଫ ହେବାର ପ୍ରତିବାଦ କରି ଅମୃତସର ମ୍ୟୁନିସିପାଲ୍ କମିଟିର ବୈଠକ ମୁଲତବୀ ହୋଇଗଲା । ଦିଲ୍ଲୀରେ ଏକ ଶୋଭାଯାତ୍ରା ବାହାର କରାଯାଇଥିଲା ।

ଗିରଫ ହେବାର ଅବ୍ୟବହିତ ପରେ କାର୍ଯ୍ୟକାରୀ କଂଗ୍ରେସ ସଭାପତି ଶ୍ରୀ ସେନଗୁପ୍ତ ସଂବାଦପତ୍ରକୁ ନିମ୍ନ ବିବୃତିଟି ଦେଇଥିଲେ:

"ଅମୃତସରର ଏହି ଐତିହାସିକ ସହରରେ ଗିରଫ ହୋଇ ମୁଁ ଅତ୍ୟନ୍ତ ଆନନ୍ଦିତ ହୋଇଛି । ଭାରତୀୟ ମହାଜାତିର ସର୍ବୋଚ୍ଚ ପରିଷଦର ମୁଖ୍ୟରୂପେ ଏଠାରେ ଗିରଫ ହୋଇ ମୁଁ ପ୍ରକୃତରେ ସମ୍ମାନିତ ଅନୁଭବ କରୁଛି । ଏଠାରେ ଜାଲିଆନ୍‌ୱାଲାବାଗ୍ ଠାରେ ଅନୁଷ୍ଠିତ ଏକ ସଭାରେ ମୁଁ ଗିରଫ ହେଲି । ଏହି ସ୍ଥାନରେ ହିଁ ଏକଦା ହିନ୍ଦୁ, ମୁସଲମାନ୍ ଏବଂ ଶିଖମାନଙ୍କର ରକ୍ତ ଏକତ୍ର ମିଳିତ ହୋଇ ଜାତୀୟତାର ଯେଉଁ ଶକ୍ତିମନ୍ତ ସ୍ରୋତଧାରାକୁ ସୃଷ୍ଟି କରିଥିଲା, ତାହା ସମଗ୍ର ଦେଶକୁ ପ୍ଲାବିତ କରି ଦେଇଥିଲା ଏବଂ ତଦ୍ୱାରା ଆମ ଦେଶବାସୀମାନଙ୍କର ମନୋରାଜ୍ୟରେ ଏକ ଆଶ୍ଚର୍ଯ୍ୟଜନକ ରୂପାନ୍ତର ମଧ୍ୟ ଘଟାଇଥିଲା ।"

ସେନଗୁପ୍ତଙ୍କୁ ସ୍ଥାନୀୟ ଜେଲ୍‌କୁ ନିଆଗଲା । ଶ୍ରୀମତୀ ସେନଗୁପ୍ତ ପରେ ସ୍ୱାମୀଙ୍କ ସହିତ ଯାଇ ସାକ୍ଷାତ କରିଥିଲେ । ଜେଲ୍ ଭିତରେ ସିଏ ତାଙ୍କୁ ଖୁବ୍ 'ପ୍ରସନ୍ନ' ଥିବାର ଦେଖିଥିଲେ । ସେହି ଜାଲିଆନ୍‌ୱାଲାବାଗ୍ ଠାରେ ହିଁ ଶ୍ରୀମତୀ ସେନଗୁପ୍ତ ଏକ ବିରାଟ ସଭାରେ ଭାଷଣ ଦେଇଥିଲେ । ତାଙ୍କର ସ୍ୱାମୀଙ୍କୁ ପଞ୍ଜାବର ଲୋକମାନେ ଯେଉଁ ଅତୁଳ ସମ୍ମାନ ଦେଖାଇଛନ୍ତି, ସେଥିଲାଗି ସେମାନଙ୍କୁ ସେ ଧନ୍ୟବାଦ ଜଣାଇଥିଲେ ।

ତା'ପରେ ଶ୍ରୀମତୀ ସେନଗୁପ୍ତ ଦିଲ୍ଲୀ ଗଲେ । ବିଚାର ପାଇଁ ଶ୍ରୀଯୁକ୍ତ ସେନଗୁପ୍ତଙ୍କୁ ମଧ ଦିଲ୍ଲୀ ଜିଲ୍ଲା ଜେଲ୍‌କୁ ନିଆଯାଇଥିଲା । ଦିଲ୍ଲୀ ମାଜିଷ୍ଟ୍ରେଟ୍ ଶ୍ରୀ ପୁଲ୍‌ଙ୍କର ଇଜଲାସରେ ତାଙ୍କୁ ଭାରତୀୟ ପିଙ୍ଗଳ କୋଡ୍‌ର 124 (କ) ଧାରା (ରାଜଦ୍ରୋହ) ଏବଂ ସଂଶୋଧିତ ଫୌଜଦାରୀ ଆଇନ୍‌ର 17 ଧାରା ଓ ଉତ୍ତେଜିତ କରାଇବା ବିରୋଧରେ ଜାରି ହୋଇଥିବା ଅଧ୍ୟାଦେଶର ୩ୟ ଧାରା, - ଏହିପରି ଦୁଇଟି ମୋକଦ୍ଦମାରେ ତାଙ୍କୁ ଅଭିଯୁକ୍ତ କରାଯାଇଥିଲା ।

ସବୁଥର ପରି ଏଠାରେ ମଧ ସେନଗୁପ୍ତ ପ୍ରଥମେ ମୋକଦ୍ଦମାର ଶୁଣାଣିରେ ଆଦୌ କୌଣସି ଭାଗ ନେବାକୁ ନାହିଁ କରି ଦେଇଥିଲେ । ମାତ୍ର ସରକାରୀ ପୋଲିସ୍ ଇନ୍ସପେକ୍ଟର ତାଙ୍କ ଭାଷଣର ବିବରଣୀକୁ ଦାଖଲ କରିବା ସମୟରେ ସେନଗୁପ୍ତ ଠିଆ ହୋଇ ସେଥିରେ ହସ୍ତକ୍ଷେପ କରିଥିଲେ ଏବଂ କହିଥିଲେ: ''ଏହି ଅଫିସର୍ ମୋର ଭାଷଣକୁ ସଂପୂର୍ଣ୍ଣ ଭାବରେ ହତ୍ୟା କରିଛନ୍ତି । ଅବଶ୍ୟ ଅସଲ ଭାବଗୁଡ଼ିକ ସେଥିରେ ରହିଛି ।''

ବିଚାର ଚାଲିଲା । ଅଭିଯୋଗଗୁଡ଼ିକ ସମ୍ବନ୍ଧରେ ତାଙ୍କର କିଛି କହିବାକୁ ଅଛି କି ବୋଲି ମାଜିଷ୍ଟ୍ରେଟ୍ ପୁଲ୍ ବାରବାର ପ୍ରଶ୍ନ କରିବାରୁ ଯତୀନ୍ଦ୍ରମୋହନ ଉତ୍ତରରେ କହିଥିଲେ:

''ଇଂଲଣ୍ଡ ତା' ନିଜର ସ୍ୱାର୍ଥ ଲାଗି ହିଁ ଭାରତରେ ଶାସନ କରୁଛି ବୋଲି କହିବାକୁ ରାଜଦ୍ରୋହ ବୋଲି ଧରାଯାଉଛି; ମାତ୍ର, ନିର୍ମଳ ବିବେକ ରହିଥିବା କୌଣସି ବ୍ୟକ୍ତି ଏହି କଥାଟିକୁ ଅସ୍ୱୀକାର କରିପାରିବ କି ? ଭାରତବର୍ଷରେ ଇଂଲଣ୍ଡର ଏହି ଶାସନର ପରିସମାପ୍ତି ଘଟୁ ବୋଲି ଯଦି କେହି କହୁଛି, ତେବେ ତାହାକୁ ରାଜଦ୍ରୋହ ବୋଲି ବିଚାର କରାଯାଉଛି । ଏହି କଥା କହିବାର ଅପରାଧରେ ଆଜି ହଜାର ହଜାର ଭାରତୀୟ କାରାରୁଦ୍ଧ ହୋଇ ରହିଛନ୍ତି । ସରକାରୀ କର୍ମଚାରୀମାନଙ୍କ ସମେତ ଏପରି ଲକ୍ଷ ଲକ୍ଷ ଭାରତୀୟ ଅଛନ୍ତି, ଯେଉଁମାନେ କି ଭାରତରୁ ବ୍ରିଟିଶ୍ ଶାସନର ଅବସାନ ହେଉ ବୋଲି ଗୋପନରେ ପ୍ରାର୍ଥନା କରୁଛନ୍ତି ଓ ବେଳେବେଳେ ପ୍ରକାଶ୍ୟ ଭାବରେ କହି ବି ଦେଉଛନ୍ତି । ବର୍ଷକ ଭିତରେ ସେ ସ୍ୱାଧୀନତା ହାସଲ କରିବ ଏବଂ ସଂପୂର୍ଣ୍ଣ ଭାବରେ ବ୍ରିଟିଶ୍ ନିୟନ୍ତ୍ରଣରୁ ମୁକ୍ତ ହୋଇପାରିବ, ଜଣେ ଭାରତୀୟ ପକ୍ଷରେ ଏହାଠାରୁ ବଳି କୌଣସି ଉଚ୍ଚତର ଭାବନା ଆଉ ଥାଇପାରେ କି ? ତଥାପି ମୁଁ ଜାଣିଛି ଯେ, ଆପଣ ମୋତେ ଜେଲ୍‌ଖାନାକୁ ପଠାଇବେ; ଆପଣଙ୍କ ପରି ଅନେକ ମାଜିଷ୍ଟ୍ରେଟ୍ ମୋ' ପୂର୍ବରୁ ଯେପରି ହଜାର ହଜାର ଭାରତୀୟଙ୍କୁ କାରାଦଣ୍ଡରେ ଦଣ୍ଡିତ କରିଛନ୍ତି, ଠିକ୍ ସେହିପରି ଆପଣ ମଧ ଭାରତବର୍ଷରେ ବ୍ରିଟିଶ୍ ଲୋକଙ୍କର ରହିଥିବା ଶକ୍ତି ଉପରେ ବିଶ୍ୱାସ କରି ସେହିକଥା କରିବେ । ମୁଁ ମଧ ଏହି ବିଶ୍ୱାସରେ ହସି ହସି ଜେଲ୍ ଭିତରକୁ ଯିବି ଯେ, ଅଚିରେ ଏପରି ଦିନ ଆସୁଛି, ଯେତେବେଳେ କି ଭାରତବର୍ଷର ସର୍ବୋଚ୍ଚ ଗୁଣସମ୍ପନ୍ନ ପୁତ୍ର ଓ କନ୍ୟାମାନେ ଆଉ ଗୋଟେ ବ୍ରିଟିଶ୍ ବନ୍ଦୀଶାଳା ଭିତରେ ବନ୍ଦୀ ହୋଇ ରହି ନ ଥିବେ ଏବଂ ସ୍ୱାଧୀନ ଭାରତ ତରଫରୁ ଆପଣଙ୍କର ପ୍ରଭୁ, ବ୍ରିଟିଶ୍ ଲୋକେ, ପ୍ରାୟ ଦେଢ଼ଶହ ବର୍ଷ କାଳ ଏହି ଦେଶରେ ଯେପରି ଭାବରେ ଶାସନ କରି ଆସିଛନ୍ତି, ସେମାନଙ୍କ ଠାରୁ ସେଥିଲାଗି କୈଫିୟତ୍ ଦାବି କରିବେ । ମୋର ଆଉ ଅଧିକ କିଛି କହିବାର ନାହିଁ ।''

ଅଧ୍ୟାଦେଶର ଗୋଟିଏ ଧାରା ଅନୁସାରେ ଯେତେବେଳେ ଦ୍ୱିତୀୟ ମୋକଦ୍ଦମାଟିର ବିଚାର ହୋଇଥିଲା, ସେତେବେଳେ ପ୍ରାଚିଆ ପାର୍କରେ ସେ ଦେଇଥିବା ଭାଷଣଟି ସମ୍ବନ୍ଧରେ ପୋଲିସ୍ ପକ୍ଷରୁ ଅଭିଯୋଗ କରାଯାଇଥିଲା ଯେ, ସେଥିରେ ଶ୍ରୀ ସେନଗୁପ୍ତ ଦିଲ୍ଲୀ ଓ ପଞ୍ଜାବର ଛାତ୍ରମାନଙ୍କୁ ବଙ୍ଗଳାର ଛାତ୍ରମାନଙ୍କର ଉଦାହରଣକୁ ଅନୁସରଣ କରି ଟିକସ୍ ଦେବା ବନ୍ଦ କରିବାକୁ ହେଉଥିବା ଆନ୍ଦୋଳନରେ ସାହାଯ୍ୟ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ଏହି ଅଭିଯୋଗଟିକୁ ଶୁଣି ସାରିବା ପରେ ସେନଗୁପ୍ତ ମାଜିଷ୍ଟ୍ରେଟଙ୍କୁ କହିଥିଲେ ଯେ, ସରକାରଙ୍କ ଦ୍ୱାରା ପ୍ରଦତ୍ତ ବିବରଣୀର ସତ୍ୟତା ବିଷୟରେ ତାଙ୍କର ଘୋର ସନ୍ଦେହ ରହିଛି । ସେ କହିଥିଲେ: "ଛାତ୍ରମାନେ ଯେ କୌଣସି ଟିକସ କେବେ ଦିଅନ୍ତି ନାହିଁ, ଅନ୍ତତଃ ଏତିକି ହୃଦୟଙ୍ଗମ କରିପାରିବା ଲାଗି ମୋର ଯଥେଷ୍ଟ ବୁଝିବାଶକ୍ତି ରହିଥିବା ଉଚିତ ଥିଲା ।" ସେନଗୁପ୍ତଙ୍କର ଭାଷଣକୁ ଲେଖି ରଖିଥିବା ଉକ୍ତ ଗୋଇନ୍ଦା ବିଭାଗ ଅଫିସର୍ ଟିପା ଭାଷଣଟିରୁ ଏପରି ଏକ ବିଶେଷ ଅଂଶକୁ ପାଠ କରି ଶୁଣାଇଲେ, ଯାହାକି ବିଚାରାଳୟରେ ହାସ୍ୟ ସୃଷ୍ଟି କରିଥିଲା । ସେହି ଅଂଶଟି ହେଉଛି: "ମୁଁ ଆପଣମାନଙ୍କୁ କହିଦେବାକୁ ଚାହୁଁଛି ଯେ, କଲିକତା ଓ ବମ୍ବେର ଯେଉଁ ନିରୀହ ଗ୍ରାମବାସୀମାନେ ଆଦୌ କୌଣସି ରାଜନୀତି ବୁଝନ୍ତି ନାହିଁ, ସେମାନେ ଆପଣାର ମନ ଭିତରେ ଯାବତୀୟ ଉତ୍ପୀଡ଼ନ, ଯାବତୀୟ ଗୁଳିମାଡ଼ ଏବଂ ଯାବତୀୟ ଲାଠିପ୍ରହାରକୁ ସହ୍ୟ କରିବାରେ ଲାଗିଛନ୍ତି ।"

ବିଚାରପତି ସାକ୍ଷୀକୁ ପଚାରିଲେ, "ଏହି କଥାଟିର ଅର୍ଥ ?" ସାକ୍ଷୀ ଆଦୌ କୌଣସି ହୃଦ୍‌ବୋଧକାରୀ ଉତ୍ତର ଦେଇ ନ ପାରି ସତେ ଅବା ଦାରୁଭୂତଙ୍କ ପରି ଠିଆହୋଇ ରହିଲା । ସେନଗୁପ୍ତ କହିଲେ, "ମୁଁ ଆଦୌ କୌଣସି କଥା କହିବାକୁ ମନସ୍ଥ କରି ନ ଥିଲି, ମାତ୍ର ନିଜ ପ୍ରତି ନ୍ୟାୟବିଚାର କରି ଏଠାରେ କେବଳ ଏତିକି କହିବି ଯେ, ଏଠାରେ ପଠିତ ହୋଇଥିବା ଭାଷଣଟିର ବିବରଣୀର ଆଦୌ କୌଣସି ଅର୍ଥ ନାହିଁ । ମୁଁ କ'ଣ କହିଥିଲି ବା ନ କହିଥିଲି, ଏଠାରେ ତାହା କହିବାକୁ ମୁଁ ଆଦୌ ପ୍ରସ୍ତୁତ ନୁହେଁ । ବିଚାରପତି ଆପଣାର ରାୟକୁ ସ୍ଥଗିତ ରଖିଥିଲେ । ତହିଁ ଆରଦିନ ସେନଗୁପ୍ତଙ୍କୁ ଗୋଟିଏ ବର୍ଷ କରାଗାରରେ ରହିବାର ଦଣ୍ଡାଦେଶ ହୋଇଥିଲା ।

## କରାଚୀରେ ଚିତ୍ତରଂଜନଙ୍କର ଆବକ୍ଷ ମୂର୍ତ୍ତିର ଉନ୍ମୋଚନ

ଏକ ନିମନ୍ତ୍ରଣ ପାଇ ଯତୀନ୍ଦ୍ରମୋହନ ସେନଗୁପ୍ତ 1930 ଅକ୍ଟୋବର 14 ତାରିଖରେ ଚିତ୍ତରଂଜନ ଦାଶଙ୍କର ଏକ ଆବକ୍ଷ ମୂର୍ତ୍ତିର ଅନାବରଣ ନିମନ୍ତେ କରାଚୀରେ ଯାଇ ପହଞ୍ଚିଲେ । ସେହି ମୂର୍ତ୍ତିଟିକୁ କରାଚୀ ମ୍ୟୁନିସିପାଲିଟିର ଅଧକ୍ଷ ଜାମ୍‌ଶେଦ୍ ଏମ୍. ଆର୍. ମେହଟା ଦାନ କରିଥିଲେ । ସେହି ସମୟରେ ସେନଗୁପ୍ତ ମଧ୍ୟ କଲିକତାର ମେୟର୍ ଥିବାରୁ ବହୁସଂଖ୍ୟକ ସାଧାରଣ ଅନୁଷ୍ଠାନ ସେଠାରେ ତାଙ୍କୁ ହାର୍ଦ୍ଦିକ ସମ୍ମାନମାନ ପ୍ରଦର୍ଶନ କରିଥିଲେ । ସେନଗୁପ୍ତଙ୍କର ଭାଷଣ ପରେ ସଭାର ସଭାପତି ତାରାଚାନ୍ଦ ସେନଗୁପ୍ତଙ୍କର ମେଧା ଓ ହୃଦୟର ବହୁବିଧ ଗୁଣ ତଥା ତାଙ୍କର ଏକାଧିକ ତ୍ୟାଗର ଭୂୟସୀ ପ୍ରଶଂସା କରିଥିଲେ । ସେ ଆଶା ପ୍ରକାଶ କରିଥିଲେ ଯେ, ସେନଗୁପ୍ତ କେବଳ ଜଣେ ବ୍ୟକ୍ତି ହିସାବରେ ନୁହେଁ, ମାତ୍ର 1931ରେ ହେବାକୁ ଯାଉଥିବା ଭାରତୀୟ ଜାତୀୟ କଂଗ୍ରେସର କରାଚୀ ଅଧିବେଶନର ସଭାପତି ହିସାବରେ ହିଁ ସେଠାକୁ ପୁନର୍ବାର ଆସିବେ ।

ଏହି ପ୍ରସଙ୍ଗରେ ଆଉ ଗୋଟିଏ କଥା ହୁଏତ କହିରଖିବା ଉଚିତ ହେବ ଯେ, ଅଧିକାଂଶ ପ୍ରଦେଶ ସେତେବେଳକୁ ଭାବୀ କରାଚୀ କଂଗ୍ରେସ ଅଧିବେଶନର ସଭାପତି ରୂପେ ମନୋନୀତ କରି ସାରିଥିଲେ, ମାତ୍ର ସେନଗୁପ୍ତ ଘୋଷଣା କରିଥିଲେ ଯେ, ଉକ୍ତ ଅବସରରେ ସେହି ସମ୍ମାନଟି ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କୁ ପ୍ରାପ୍ତ ହେବା ଉଚିତ, କାରଣ ସିଏ ହେଉଛନ୍ତି ତାଙ୍କଠାରୁ ବୟସରେ ଛଅବର୍ଷ ବଡ଼ । ତାଙ୍କୁ ସେହି ସୁଯୋଗଟି କେବେ ପରେ ମଧ୍ୟ ମିଳିପାରିବ ।

ମାତ୍ର ଭାଗ୍ୟର ନିର୍ଦ୍ଦେଶ ଅନ୍ୟ ପ୍ରକାର ଥିଲା ! 1933 ମସିହାରେ ସେନଗୁପ୍ତ ଇହଧାମ ତ୍ୟାଗ କରିଥିଲେ ।

**କରାଚୀ କଂଗ୍ରେସ**

କରାଚୀ କଂଗ୍ରେସ ସମୟରେ ଯତୀନ୍ଦ୍ରମୋହନ ସେନଗୁପ୍ତଙ୍କର ସ୍ୱାସ୍ଥ୍ୟ ଆଦୌ ଭଲ ରହୁ ନ ଥିଲା । ସେ ଗୁରୁ ରକ୍ତଚାପ ରୋଗ ଭୋଗୁଥିଲେ ଏବଂ କଂଗ୍ରେସ କାର୍ଯ୍ୟକାରୀ କମିଟିରେ ଘଣ୍ଟା ଘଣ୍ଟା ଧରି ହେଉଥିବା କାର୍ଯ୍ୟମୁଖର ଆଲୋଚନାଗୁଡ଼ିକରେ ସକ୍ରିୟ ଅଂଶ ଗ୍ରହଣ କରି ସେ ଅତ୍ୟନ୍ତ କ୍ଳାନ୍ତ ହୋଇ ପଡୁଥିଲେ । ତହିଁ ଆରଦିନ ଗାନ୍ଧି-ଇରଉଇନ୍ ଚୁକ୍ତିର ବିବଦମାନ ବିଷୟଟି ପ୍ରସ୍ତାବାକାରରେ ଆଗତ ହେବାପାଇଁ ରହିଥିଲା । ତାହାକୁ ଜବାହରଲାଲ୍ ନେହରୁ ଆଗତ କରିବେ ଓ ସେନଗୁପ୍ତ ତାହାର ଅନୁମୋଦନ କରିବେ । ତିନି ଦିନ ପୂର୍ବେ ଭଗତ ସିଂହଙ୍କୁ ଫାଶି ଦିଆଯାଇଥିବା ଘଟଣା ପରିସ୍ଥିତିର ଗାମ୍ଭୀର୍ଯ୍ୟକୁ ଆହୁରି ବଢ଼ାଇ ଦେଇଥିଲା । ବାତାବରଣରେ କ୍ରୋଧ ଏବଂ ସଂଶୟ ପୂର୍ଣ୍ଣ ହୋଇ ରହିଥିଲା । ବରଦା ପ୍ରସାଦ ନନ୍ଦୀ (ସେନଗୁପ୍ତଙ୍କର କାର୍ଯ୍ୟକାରୀ ବ୍ୟକ୍ତିଗତ ସେକ୍ରେଟାରୀ) ଏହି ପ୍ରକୃତ ଚିତ୍ରଟିକୁ ଲେଖକ ଆଗରେ ବର୍ଣ୍ଣନା କରି କହିଥିଲେ । ନନ୍ଦୀ କହିଲେ, ପ୍ରାୟ ଅଧରାତି ବେଳକୁ କଂଗ୍ରେସ ସ୍ୱେଚ୍ଛାସେବକ ମାନଙ୍କର ଜି. ଓ. ସି. ୟୁସୁଫ୍ ମେହେର୍ ଅଲ୍ଲି ଓ ଅନ୍ୟ କଂଗ୍ରେସ ଲୋକେ ଧାଇଁ ଆସି ସେଠାରେ ପହଞ୍ଚିଲେ । ସେମାନେ ଘଟଣା ବିଷୟରେ ସେନଗୁପ୍ତଙ୍କୁ ଅବଗତ କରାଇବାକୁ ଆସିଥିଲେ ।

ଉପସ୍ଥିତ ଉତ୍ତେଜନାଟି ଦୃଷ୍ଟିରୁ ପ୍ରଭୂତ ଚାଞ୍ଚଲ୍ୟ ସୃଷ୍ଟି କରିଥିବା ଗାନ୍ଧୀ-ଇର୍ଉଇନ୍ ଚୁକ୍ତିକୁ ସମର୍ଥନ କରି ଜବାହରଲାଲ୍ ଆଗତ କରିଥିବା ମୁଖ୍ୟ ପ୍ରସ୍ତାବଟିକୁ ଅନୁମୋଦନ ଜଣାଇ କରାଚୀ କଂଗ୍ରେସରେ ସେନଗୁପ୍ତ ତାଙ୍କର ସେହି ମହତ୍ତ୍ୱପୂର୍ଣ୍ଣ ଭାଷଣଟିକୁ ଦେଇଥିଲେ । ସେହି ପ୍ରସ୍ତାବଟିର ନ୍ୟାୟ ଏବଂ ବାସ୍ତବିକତା ବିଷୟରେ ଶ୍ରୋତୃମଣ୍ଡଳୀର ହୃଦ୍‌ବୋଧ କରାଇବା ଲାଗି ସେନଗୁପ୍ତଙ୍କ ଭିତରେ ଯଥେଷ୍ଟ ବଳ ରହିଥିଲା ।

> "...ନ୍ୟାୟଶାସ୍ତ୍ର କିମ୍ବା ମଧୁର ଯୁକ୍ତିସଙ୍ଗତତା ଦ୍ୱାରା ଗାନ୍ଧିଜୀ କଦାପି ସ୍ୱାଧୀନତା ହାସଲ କରିବାକୁ ଅଭିପ୍ରାୟ କରି ନାହାନ୍ତି । ସିଏ ପ୍ରସ୍ତାବ କରିଛନ୍ତି ଯେ- ଏବଂ ସେ ଏହି କଥାଟିକୁ ସମଗ୍ର ଜଗତକୁ ଦେଖାଇ ମଧ ଦେଇଛନ୍ତି- ସଂଗ୍ରାମରତ ଜନଗଣଙ୍କର ଶକ୍ତି ଦ୍ୱାରା ହିଁ ସେ ଭାରତର ସ୍ୱାଧୀନତା ହାସଲ କରିବାକୁ ଇଚ୍ଛା କରନ୍ତି । କ୍ଷମତା ହସ୍ତାନ୍ତର କରିବାକୁ ବ୍ରିଟିଶ୍ ସରକାର ନାହିଁ କରିଦେବା ମାତ୍ରକେ ସେହି ସଂଗ୍ରାମ ନିଶ୍ଚୟ ଆରମ୍ଭ ହେବ । ଏହି ଅବସରର ଆମ ପାଖରେ ମଧୁର ଯୁକ୍ତି ଏବଂ ନ୍ୟାୟବୁଦ୍ଧିର ଆଦୌ କୌଣସି ମୂଲ୍ୟ ନାହିଁ । - ଭାରତୀୟ ଜାତୀୟ କଂଗ୍ରେସ ଏବଂ ଭାରତୀୟ ଜାତିର ଶକ୍ତି ଉପରେ ହିଁ ଆମେ ଯଥାର୍ଥ ଭରସାଟିକୁ ରଖିଛୁ । ମୋର ବନ୍ଧୁମାନେ ହୁଏତ ବ୍ରିଟିଶ୍‌ମାନଙ୍କ ସହିତ ରହିବାକୁ ଯାଉଥିବା ଆମର ସଂପର୍କ ବିଷୟରେ ଆଲୋଚନା କରିପାରନ୍ତି । ସ୍ୱାଧୀନତା-ପ୍ରାପ୍ତିର ଏହି ଯାବତୀୟ ଉଦ୍ୟମରେ ମାଲିକ ଏବଂ ଦାସର ବ୍ରିଟିଶ୍‌ମାନଙ୍କ ସହିତ ରହିଥିବା ସେହି ପୁରାତନ ସମ୍ପର୍କ, ସାମ୍ରାଜ୍ୟାଧିକାରୀ ଦମ୍ଭୀ ବ୍ରିଟେନ୍ ଏବଂ ଅଧୀନସ୍ଥ ଭାରତବର୍ଷର ସମ୍ପର୍କର ଅବଶ୍ୟ ଅନ୍ତ ହେବ...... ଆପଣମାନେ କଦାପି ଭାବନ୍ତୁ ନାହିଁ ଯେ, କଂଗ୍ରେସ ଗୋଲଟେବୁଲ୍ ବୈଠକକୁ ଯିବାପାଇଁ ବାଧ ହେବ ବୋଲି ମହାତ୍ମା ଗାନ୍ଧି ଏହି ପ୍ରସ୍ତାବଟି ଦ୍ୱାରା ପ୍ରକୃତରେ ଚିନ୍ତା କରୁଛନ୍ତି- ଏଭଳି କୌଣସି କଥା ଆଦୌ ନୁହେଁ....

ଆପଣମାନେ ଜାଣନ୍ତି ଯେ, ବର୍ତ୍ତମାନ ଏବଂ ସେହି ସମ୍ମିଳନୀରେ ଯୋଗ ଦେବାର ସମୟଟି ମଧ୍ୟରେ ଏପରି ଅନେକ କାରଣ ହୁଏତ ନିଷ୍ପନ୍ନ ହେବ, ଯାହା ଫଳରେ କି କଂଗ୍ରେସ ଆଦୌ ଗୋଲ୍‌ଟେବୁଲ ବୈଠକରେ ଯୋଗ ଦେଇପାରିବ ନାହିଁ । ଆମେ କଂଗ୍ରେସଲୋକେ ଏହି ସାମୟିକ ଶାନ୍ତିଚୁକ୍ତି ଦ୍ୱାରା ବାଧ୍ୟ ହୋଇ ରହିଛୁ ଏବଂ, ଏକ ଯୁକ୍ତିଯୁକ୍ତ ସମୟସୀମା ମଧ୍ୟରେ ଯଦି ଜଣେ ମାତ୍ର ବନ୍ଦୀ ଖଲାସ ନ ହୋଇଥିବାର ଦେଖାଯାଏ, ତେବେ ତାହା ଭାରତରେ ବ୍ରିଟିଶ୍ ସରକାର ଆପଣାର ଚୁକ୍ତିଭଙ୍ଗ କରିଛି ବୋଲି ପ୍ରମାଣ କରିଦେବ । ଯଦି ଏହି ଶାନ୍ତିଚୁକ୍ତିର ଅନ୍ୟ ଧାରାଗୁଡ଼ିକୁ ମଧ୍ୟ ଭଙ୍ଗ କରାଯାଏ, ଉଦାହରଣ ସ୍ୱରୂପ, ଯଦି ଲୁଣ ମାରିବା, ବିଦେଶୀ ବସ୍ତ୍ରର ବର୍ଜନ କରିବା ପ୍ରଭୃତି ବିଷୟରେ ହୋଇଥିବା ଧାରାଗୁଡ଼ିକୁ ଭଙ୍ଗ କରାଯାଏ, ତେବେ ଗୋଲ୍‌ଟେବୁଲ ବୈଠକରେ ଯୋଗଦେବାକୁ ନାହିଁ କରିଦେବା ପାଇଁ ଆମଲାଗି ପଥ ପରିଷ୍କାର ହୋଇଯିବ । ବ୍ରିଟିଶ ସରକାର ଏବଂ ସମଗ୍ର ପୃଥିବୀକୁ ଆମର ଏହି କଥାଟି କହିଦେବା ପ୍ରକୃତରେ ଏକ କର୍ତ୍ତବ୍ୟ ଯେ, ବ୍ରିଟିଶ୍ ସରକାର ଚୁକ୍ତିର ସର୍ତ୍ତକୁ ସ୍ୱୟଂ ଭଙ୍ଗ କରିଛନ୍ତି ଓ ତେଣୁ ଆମେ ଆଉ ବୈଠକରେ ଯୋଗ ଦେଇ ପାରିବୁ ନାହିଁ ।....

ସ୍ମରଣ ରହିବା ଉଚିତ ଯେ, ଆଧୁନିକ ଭାରତବର୍ଷର ଇତିହାସରେ ଆଉ କେବେହେଲେ ଭାରତବର୍ଷରେ ବ୍ରିଟିଶ୍ ସରକାର ସମକକ୍ଷ ସ୍ତରରେ ଭାରତର ଜାତୀୟ ପ୍ରତିନିଧି ମହାତ୍ମାଜୀଙ୍କ ସହିତ କଥାବାର୍ତ୍ତା କରି ନ ଥିଲେ, ସମାଧାନର ଉଦ୍ୟମ କରି ନଥିଲେ ଓ ଆପଣାର ପକ୍ଷକୁ ବୁଝାଇବାକୁ ଚେଷ୍ଟା କରି ନ ଥିଲେ । ଆଧୁନିକ ଭାରତର ଇତିହାସରେ ଏକଥା ବର୍ତ୍ତମାନ ପ୍ରଥମ ଥର ପାଇଁ ଘଟିଛି; ଏହି କ୍ଷୀଣବପୁ ବ୍ୟକ୍ତିଟି ପଛରେ ରହିଥିବା ଶକ୍ତିକୁ ସ୍ୱୀକାର କରାଯାଇଛି ଏବଂ ଏକ ଜାତି ହିସାବରେ ଆମର ଶକ୍ତିକୁ ସ୍ୱୀକୃତି ମିଳିଛି । ଗାନ୍ଧିଜୀ ସମାଧାନର କଥାବାର୍ତ୍ତା କରିବାକୁ ରାଜି ହେଲେ, କାରଣ ସେ ଜାଣିଥିଲେ ଯେ, ଭାରତୀୟ ଜାତୀୟ କଂଗ୍ରେସ ପଛରେ ସମଗ୍ର ଜାତିର ବଳ ଅବଶ୍ୟ ରହିଛି । ତେଣୁ ସେତେବେଳେ ଆପଣମାନେ ହିଁ କହିବେ, ଆମେ ଶାନ୍ତିଚୁକ୍ତିର ସର୍ତ୍ତଗୁଡ଼ିକୁ ଆଦୌ ଭଙ୍ଗ କରି ନାହୁଁ, ଏବଂ ସମ୍ମାନାସ୍ପଦ ସକଳ ମନୁଷ୍ୟଙ୍କ ମଧ୍ୟରେ ମଉଡ଼ମଣି ମହାତ୍ମାଜୀଙ୍କ ଦ୍ୱାରା ପରିଚାଳିତ ଆମେ କଂଗ୍ରେସଲୋକେ ସମ୍ମାନର ଭାରସାମ୍ୟ ଏବଂ ଭାରତଜାତିର ସାଧୁତା ରକ୍ଷା କରିବାରେ କଦାପି ବିଫଳ ହୋଇଯାଇ ନାହୁଁ ।''

**କେରଳ ସମ୍ମିଳନୀ**

ଯତୀନ୍ଦ୍ରମୋହନଙ୍କର କରାଚୀ କଂଗ୍ରେସ ଭାଷଣ ତାଙ୍କୁ ଜଣେ ମୁଖ୍ୟ ଏବଂ ପୁରୋଭାଗସ୍ଥ କଂଗ୍ରେସନେତା ହିସାବରେ ପ୍ରତିଷ୍ଠିତ କରାଇଥିଲା । ଏହାର ଅଳ୍ପଦିନ ପରେ, 1931 ମଇ 3 ତାରିଖରେ ବଡ଼ଗରା ଠାରେ ଅନୁଷ୍ଠିତ ହେବାକୁ ଥିବା ପ୍ରାନ୍ତୀୟ ସମ୍ମିଳନୀର ସଭାପତିତ୍ୱ କରିବାଲାଗି ତାଙ୍କୁ କେରଳରୁ ଡାକରା ଆସିଲା । ଏଠାରେ ମଧ୍ୟ ଗାନ୍ଧି-ଇର୍‌ଉଇନ୍ ଚୁକ୍ତିର ତାତ୍ପର୍ଯ୍ୟଗୁଡ଼ିକୁ ବୁଝାଇଦେଇ ସେ କହିଥିଲେ,

'' ଆମେ ସମସ୍ତେ ଜାଣିଛୁ ଯେ, ଏହି ଚୁକ୍ତିଦ୍ୱାରା ଉଭୟ ପକ୍ଷରୁ ଶତ୍ରୁତାଚରଣ ବନ୍ଦ କରିବା ସକାଶେ ଏକ ରାଜିନାମା ହୋଇଛି । ବର୍ତ୍ତମାନ ଆମେ ଯେଉଁ ପର୍ଯ୍ୟାୟଟି ମଧ୍ୟଦେଇ ଗତି କରୁଛୁ, ତାହା ଶାନ୍ତିର ପର୍ଯ୍ୟାୟ ନୁହେଁ, ତାହା ହେଉଛି ଏକ ସାମୟିକ ଶାନ୍ତିଚୁକ୍ତିର ପର୍ଯ୍ୟାୟ ।

ଉକ୍ତ ଚୁକ୍ତି ମଧ୍ୟରେ ଏହି କଥାଟି ପ୍ରଚ୍ଛନ୍ନ ହୋଇ ରହିଛି ଯେ, ଯଦି ସର୍ତ୍ତଗୁଡ଼ିକର ଯଥାର୍ଥ ପୂରଣ ନ ହୁଏ, ଅଥବା ଯଦି ତାହାର ଚୂଡ଼ାନ୍ତ ଉଦ୍ଦେଶ୍ୟଟି ଉପଲବ୍ଧ ନ ହୋଇପାରେ, ତେବେ କଂଗ୍ରେସ ତଥା ସରକାର ଉଭୟ ପକ୍ଷ ଲାଗି ହିଁ ପୁନର୍ବାର ସଂଗ୍ରାମ ଆରମ୍ଭ କରିବାର ପଥ ପରିଷ୍କାର ହୋଇଯିବ । ମହାତ୍ମା ଗାନ୍ଧି ଇତିମଧ୍ୟରେ କହି ସାରିଲେଣି ଯେ, 'ଆମେ ଆଗାମୀ କେତେମାସ ମଧ୍ୟରେ ପୂର୍ଣ୍ଣ ସ୍ୱରାଜ୍ୟ ହାସଲ କରିବା ନଚେତ୍ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଏବଂ ମୁଁ ପୁନର୍ବାର ଜେଲ୍ ଭିତରକୁ ଯିବୁ ।' ବିଜୟ ଏବେ ମଧ୍ୟ ହାସଲ ହୋଇ ନାହିଁ । ଆମେ ଏପର୍ଯ୍ୟନ୍ତ ବି ଆମଲାଗି ପ୍ରତିଶ୍ରୁତ ହୋଇ ରହିଥିବା ରାଜ୍ୟରେ ଯାଇ ପହଞ୍ଚ୍ ନାହୁଁ । ପୁନର୍ବାର ସଂଗ୍ରାମ କରିବାକୁ ହେବ କି ନାହିଁ, ତାହା ଆଗାମୀ ଗୋଲ୍‌ଟେବୁଲ ବୈଠକରେ ବ୍ରିଟିଶ୍ ଲୋକେ କିପରି ମନୋଭାବ ଗ୍ରହଣ କରିବେ, ସେହି କଥା ଉପରେ ନିର୍ଭର କରୁଛି ।

ବନ୍ଧୁଗଣ, ଆପଣମାନେ ଅବଶ୍ୟ ଲକ୍ଷ୍ୟ କରିଥିବେ ଯେ, ଏହି ଚୁକ୍ତି ଭିତରେ ଏପରି ଆଦୌ କିଛି ନାହିଁ, ଯାହାକି କଂଗ୍ରେସ ପ୍ରତିନିଧିମାନଙ୍କୁ ଭାରତବର୍ଷ ସକାଶେ ପୂର୍ଣ୍ଣ ଏବଂ ସଂପୂର୍ଣ୍ଣ ସ୍ୱାଧୀନତା ଦାବି କରିବାରୁ କ୍ଷାନ୍ତ କରି ରଖିପାରିବ । ରାଜନୀତିକ ସ୍ୱାଧୀନତା ପାଇବା ପରେ ଆମେ ବ୍ରିଟେନ୍‌ର ସହଯୋଗୀ ହୋଇ ରହିପାରୁ ଅଥବା ତାହା ସହିତ ସକଳ ସମ୍ପର୍କ ଛିନ୍ନ ବି କରିଦେଇପାରୁ । କେଉଁଟି କଲେ ଅଧିକ ଭଲ ହେବ, ତାହାର ନିଷ୍ପତ୍ତି କେବଳ ଭାରତର ଲୋକମାନେ ହିଁ କରିବେ । ମାତ୍ର ଅନେକ କିଛି ବ୍ରିଟିଶ୍ ଲୋକମାନଙ୍କର ମନୋଭାବ ଉପରେ ହିଁ ନିର୍ଭର କରିବ । ଆଉ ଅନ୍ୟ କୌଣସିଥିରେ ଦେଶ କିମ୍ବା କଂଗ୍ରେସ କଦାପି ସନ୍ତୁଷ୍ଟ ହେବ ନାହିଁ । ଅଥବା, ଯେଉଁଭଳି ଏକ ରାଜନୀତିକ ଅଧିକାର ପାଇଲେ ଭାରତବର୍ଷ ତାହାର ଆଭ୍ୟନ୍ତରୀଣ ଶାସନ ଏବଂ ବୈଦେଶିକ ନୀତି ନିର୍ଦ୍ଧାରଣ ଉପରେ ପୂର୍ଣ୍ଣ ନିୟନ୍ତ୍ରଣ ଅର୍ଜନ କରିପାରିବ, ତା'ଠାରୁ ଊଣା କୌଣସିଥିରେ ହିଁ ଭାରତ ବା କଂଗ୍ରେସ ମୋଟେ ସନ୍ତୁଷ୍ଟ ହେବ ନାହିଁ । ରାଜନୀତିକ ସାର୍ବଭୌମତ୍ୱର ପ୍ରଶ୍ନ ଉପରେ ଆଦୌ କୌଣସି ସାଲିଶ୍ ହେବ ନାହିଁ ।''

## ରେଙ୍ଗୁନ୍‌ର ଅସାଧାରଣ ମୋକଦ୍ଦମା

1930 ମସିହା ଫେବୃଆରୀ-ଏପ୍ରିଲରେ ଆପଣାର ଭଗ୍ନ ସ୍ୱାସ୍ଥ୍ୟରେ କିଞ୍ଚିତ୍ ଉନ୍ନତି କରିବା ଉଦ୍ଦେଶ୍ୟରେ ସେନଗୁପ୍ତ ସସ୍ତ୍ରୀକ ଜଳପଥରେ ସିଙ୍ଗାପୁର ଯାଇଥିଲେ । ବାଟରେ ଜାହାଜ ରେଙ୍ଗୁନ୍ ଠାରେ ଅଟକିଥିବା ସମୟରେ ବ୍ରହ୍ମଦେଶର ଜଣେ ବଣିକ ସମ୍ରାଟ ଅବଦୁଲ ବାରି ଚୌଧୁରୀ ଜାହାଜକୁ ଆସି ବ୍ରହ୍ମଦେଶରେ ସ୍ଥାୟୀ ଓ ଅସ୍ଥାୟୀ ଭାବରେ ବାସ କରୁଥିବା ଭାରତୀୟମାନଙ୍କ ତରଫରୁ ସେନଗୁପ୍ତଙ୍କ ସହିତ ସାକ୍ଷାତ କରିଥିଲେ ଏବଂ ଫେରିବା ବାଟରେ ରେଙ୍ଗୁନରେ କିଛି ସମୟ ଲାଗି ଅଟକିବା ପାଇଁ ତାଙ୍କୁ ଅନୁରୋଧ କରିଥିଲେ । ସେତେବେଳେ ଏକ ସାଧାରଣ ସଭାରେ ଭାଷଣ ଦେଇ ଭାରତ ଠାରୁ ବ୍ରହ୍ମଦେଶକୁ ଅଲଗା କରି ନେବାର ବ୍ରିଟେଶ୍ ନ୍ୟସ୍ତସ୍ୱାର୍ଥଜଡ଼ିତ ସାମ୍ରାଜ୍ୟବାଦୀ ଖେଳ ବିରୋଧରେ ଆପଣାର ବୁଦ୍ଧିମତ୍ତାପୂର୍ଣ୍ଣ ପରାମର୍ଶ ଦେବାଲାଗି ତାଙ୍କୁ ଅନୁରୋଧ କରା ଯାଇଥିଲା । ବ୍ରହ୍ମଦେଶ ଭାରତରୁ ଅଲଗା ହୋଇଗଲେ ଭାରତୀୟ ଜୀବନ ତଥା ବ୍ୟବସାୟବାଣିଜ୍ୟର ତଦ୍ଦ୍ୱାରା ପ୍ରଭୂତ କ୍ଷତି ହେବ; ବିଶେଷ କରି ଯେଉଁ ଭାରତୀୟମାନେ ସେଠାରେ ଏକାଧିକ ଦଶକ ହେଲା ବାସ କରି ଆସିଲେଣି, ସେମାନଙ୍କୁ ବହୁତ କ୍ଷତି ସହ୍ୟ କରିବାକୁ ପଡ଼ିବ । ଦୁଇ ପ୍ରତିବେଶୀ ଦେଶ ମଧ୍ୟରେ ରହି ଆସିଥିବା ରାଜନୀତିକ, ଆର୍ଥିକ ଏବଂ ସାମାଜିକ ସୂତ୍ରମାନ ଛିନ୍ନ ହୋଇଯିବ । ଭାରତୀୟ ସ୍ୱାଧୀନତା

ଆନ୍ଦୋଳନର ମଧ ବ୍ରହ୍ମଦେଶ ଉପରେ ଏକ ପରୋକ୍ଷ ପ୍ରଭାବ ପଡ଼ିଥିଲା । ସେନଗୁପ୍ତ ଏହି ପ୍ରସ୍ତାବିତ ଭାଷଣଟିକୁ ଦେଇଥିଲେ । ଏଥିରେ ଶାସକମାନେ ଆପତ୍ତି ଉତ୍ଥାପନ କଲେ ଏବଂ ତାଙ୍କ ବିରୋଧରେ ରାଜଦ୍ରୋହର ଅଭିଯୋଗ ଅଣାଗଲା ।

ତଥାକଥିତ ରାଜଦ୍ରୋହର ଅପରାଧରେ ଯତୀନ୍ଦ୍ରମୋହନଙ୍କର ରେଙ୍ଗୁନ ଠାରେ ଯେଉଁ ବିଚାର ହୋଇଥିଲା (1930) ତାହା କେବଳ ଭାରତବର୍ଷର ସ୍ୱାଧୀନତା ଆନ୍ଦୋଳନର ଇତିହାସରେ ନୁହେଁ, ଅନ୍ୟ ଯେକୌଣସି ଦେଶର ସ୍ୱାଧୀନତା ଆନ୍ଦୋଳନର ଇତିହାସରେ ମଧ ଏକ ଅସାଧାରଣ ଘଟଣା ଥିଲା । ଏହି ଅସାଧାରଣ ନାଟକଟିର ବ୍ରହ୍ମଦେଶର ତତ୍କାଳୀନ ବ୍ରିଟିଶ୍ ଶାସନକର୍ତ୍ତା ଆପଣାର ଆହତ ସାମ୍ରାଜ୍ୟାଧିକାରୀ ସୁଲଭ ସମ୍ମାନ ସଚେତନତାର ପ୍ରତିକ୍ରିୟା ଦେଖାଇ ପୃଷ୍ଠଭୂମିରେ ଥାଇ ମୁଖ୍ୟ ରଜ୍ଜୁଧାରୀ ବ୍ୟକ୍ତିରୂପେ କାର୍ଯ୍ୟ କରିଥିଲେ ଏବଂ ରେଙ୍ଗୁନ୍‌ର ପୋଲିସ୍ କମିଶନର ମେରିକିନ୍ ପୁରୋଭାଗସ୍ଥ ମୁଖ୍ୟ ଅଭିନେତାରୂପେ ଆବିର୍ଭୂତ ହୋଇଥିଲେ । ବିଚାରକାରୀ ମାଜିଷ୍ଟ୍ରେଟ୍ ମରିସ୍ କଲିସ୍ ଜଣେ ଆଇ. ସି. ଏସ୍. ଅଫିସର ଥିଲେ ଏବଂ ତାଙ୍କର ଦୃଷ୍ଟିଗୋଚର ହୋଇଥିଲା ଯେ, "ଶ୍ରୀଯୁକ୍ତ ସେନଗୁପ୍ତ ତାଙ୍କର ଭାଷଣରେ ସାର୍ ଚାର୍ଲସ୍ ଇନେସଙ୍କ ବିଷୟରେ କେତେକ କର୍କଶ ଶବ୍ଦ ପ୍ରୟୋଗ କରିଥିଲେ ।" ସେ ଅବଶ୍ୟ ଏକଥା କହିଥିଲେ ଯେ, ଏହା ପ୍ରକୃତରେ କେବଳ ଏକ ଅତ୍ୟଧିକ ମାତ୍ରାର ବିଷୟ ଥିଲା ଏବଂ ସେଇଥିଲାଗି ଏକ ପ୍ରାଦେଶିକ ଶାସନ କଲିକତାର ମେୟରଙ୍କୁ ଜଣେ ପ୍ରଖ୍ୟାତ ସାଧାରଣ ଉଚ୍ଚସ୍ତରୀୟ ବ୍ୟକ୍ତି ଯିଏକି ଆଉଏକ ପ୍ରାଦେଶିକ ଶାସନର କ୍ଷମତାସୀମା ମଧରେ ରହିଥିଲେ ରାଜଦ୍ରୋହରେ ଗିରଫ କରି ତାଙ୍କର ଦଣ୍ଡବିଧାନ କରିବା ଭଳି ଏହି ଅସାଧାରଣ କାର୍ଯ୍ୟଟିକୁ ଔଚିତ୍ୟ ପ୍ରଦାନ କରୁଥିଲା । ବସ୍ତୁତଃ, "ଭାଷଣଗୁଡ଼ିକ ଅତ୍ୟନ୍ତ ମନ୍ଦ ହୋଇ ନଥିଲେ" ସେପରି କରିବା କଦାପି ସମ୍ଭବ ହୋଇ ନଥାନ୍ତା । ମାର୍ଚ୍ଚ 16 ତାରିଖରେ ମେରିକିନ୍ ସେନଗୁପ୍ତଙ୍କୁ ଗିରଫ କରିବା ପାଇଁ ୱାରଣ୍ଟ ଜାରି କଲେ ଏବଂ, ଗଭର୍ଣ୍ଣର୍ ଇନ୍-କାଉନ୍ସିଲ୍‌ଙ୍କର ଇଚ୍ଛା ମୁତାବକ କଲିସ୍ ସେଥିରେ ଦସ୍ତଖତ କରିଥିଲେ ।

ଶ୍ରୀଯୁକ୍ତ ସେନଗୁପ୍ତଙ୍କ ପରି ଜଣେ ପ୍ରମୁଖ ସ୍ୱାଧୀନତା-ସଂଗ୍ରାମୀଙ୍କୁ ଗିରଫ କରି ତାଙ୍କର ଦଣ୍ଡବିଧାନ କରିବା ବସ୍ତୁତଃ ସେହି ଯୁଗରେ ଆଦୌ ଏକ ଅସ୍ୱାଭାବିକ ଘଟଣା ନଥିଲା, ମାତ୍ର ସେହି ଘଟଣାଭିନୟଟିର ଏକ ସବୁଠାରୁ ପ୍ରଧାନ ପ୍ରକରଣ ରୂପେ ଆମେ ଏହି କଥାଟି ଅବଶ୍ୟ ମନେରଖିବା ଯେ, ବ୍ରିଟିଶ୍ ମାଜିଷ୍ଟ୍ରେଟ୍‌ଙ୍କର ବିବେକପୂର୍ଣ୍ଣ ଆଚରଣ ବ୍ରିଟିଶ୍ ଶାସକଙ୍କୁ ବଡ଼ ଅପ୍ରସନ୍ନ କରି ପକାଇଥିଲା । ଆଉ କୌଣସି ଏକ ଦେଶରେ କୌଣସି ସ୍ୱାଧୀନ ଦେଶର ଜଣେ ନେତୃସ୍ଥାନୀୟ ବ୍ୟକ୍ତି ଯଦି ଏହିପରି ଗୋଟିଏ ଘଟଣାରେ ଲିପ୍ତ ହୋଇଥାନ୍ତେ, ତେବେ ଆନ୍ତର୍ଜାତିକ ସ୍ତରରେ ସେଥିଲାଗି କେତେ କୋଳାହଳ ସୃଷ୍ଟି ହୋଇଥାନ୍ତା ଓ ତାହା ସେହି ଦେଶର ଭୂମିକୁ କମ୍ପାଇ ଦେଇଥାନ୍ତା ।

କଲିସ୍ ବଡ଼ କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥାରେ ପଡ଼ିଲେ । ତାଙ୍କୁ ବେଶ୍ କିଛି ସମୟ ପାଇଁ ବିଚାର କରିବାକୁ ପଡ଼ିଲା । ଯେତେବେଳେ ସେନଗୁପ୍ତଙ୍କୁ ରେଙ୍ଗୁନ୍‌କୁ ଅଣାଯିବ, ସେତେବେଳେ ତାଙ୍କର ଅଧୀନରେ ହିଁ ତାଙ୍କର ବିଚାର ହେବ ଏବଂ ତାହା ଅତ୍ୟନ୍ତ ଉତ୍ତେଜନା ସୃଷ୍ଟି କରିବ । 'ଏହି ପ୍ରଖ୍ୟାତ ବ୍ୟକ୍ତିଙ୍କୁ ଗିରଫ କରିବାଲାଗି ସାର୍ ଚାର୍ଲସ୍ ନିଷ୍ପତ୍ତି ଗ୍ରହଣ କରିଥିଲେ ଏବଂ ମୋତେ ତାଙ୍କର ବିଚାର କରିବାକୁ ପଡ଼ିବ । .... ଅନ୍ୟ ସାଧାରଣ ମୋକଦ୍ଦମା ଠାରୁ ସେନଗୁପ୍ତଙ୍କ ନାମରେ କରା ଯାଇଥିବା ମୋକଦ୍ଦମା ଏକାନ୍ତ ଭାବରେ ଭିନ୍ନ ଧରଣର ଥିଲା ।' "ଏକ ଦଣ୍ଡାଦେଶ ଦ୍ୱାରା ଶ୍ରୀଯୁକ୍ତ ସେନଗୁପ୍ତଙ୍କର ଗିରଫ ହେବାକୁ ଯଥାଯଥ ବୋଲି ପ୍ରମାଣ କରାଯାଇ ପାରିବ", ସେ ଏହିକଥା

ଭାବିବାକୁ ଲାଗିଲେ । ''ଯଦି ମୋକଦ୍ଦମାଟି ବିଗିଡ଼ିଯାଏ ଏବଂ ମୁଁ ତାଙ୍କର ଦଣ୍ଡବିଧାନ କରି ନପାରେ, ତେବେ ମୁଁ ସରକାର ବ୍ୟାପକ ସମାଲୋଚନାର ଶରବ୍ୟ ହେବାରେ ହିଁ ସାହାଯ୍ୟ କରିବି । ନିଷ୍ପକ୍ଷ ବିଚାର କରି ମୁଁ ବେଶ୍ ସ୍ମରଣ କରିପାରିଲି ଯେ, ହଠାତ୍ ପ୍ରଥମଥର ପାଇଁ ଦେଖିବା ସମୟରେ ମୋକଦ୍ଦମାର ଏକ ଖୁବ୍‌ବେଶୀ ଦୃଢ଼ ଭିତ୍ତି ରହିଥିଲା ପରି ମୋତେ ଆଦୌ ମନେ ହେଲା ନାହିଁ । ହିଉସ୍ ମୋକଦ୍ଦମାର ଅବ୍ୟବହିତ ପରେ ଏଇଟି ମୋ'ପାଖକୁ ବିଚାର ଲାଗି ଆସିଥିଲା ଏବଂ ଏପରି ଗୋଟିଏ ରାଜକୀୟ ମୋକଦ୍ଦମାର ଚାପକୁ ମୋର ସ୍ନାୟୁଗୁଡ଼ିକ ପ୍ରକୃତରେ କେତେଦୂର ସହ୍ୟ କରି ପାରିବେ, ମୁଁ ସେ ବିଷୟରେ ଆଦୌ ନିଶ୍ଚିତ ହୋଇପାରି ନଥିଲି । ମାତ୍ର ସେଥିରୁ ମୁକୁଳି ବାହାରି ଆସିବାର ବି କୌଣସି ଉପାୟ ନଥିଲା । ମୋତେ ସେହି ମୋକଦ୍ଦମାର ବିଚାର ହାତକୁ ନେବାକୁ ହିଁ ପଡ଼ିବ ...'' । ★

କଲିସ୍ ତା'ପରେ ଭାରତୀୟ ପିଙ୍ଗଲ କୋଡ୍‌ର 124 (କ) ଧାରାର ନାନା ତାତ୍ପର୍ଯ୍ୟକୁ ଅଧ୍ୟୟନ କରିଥିଲେ । ସେଥିରେ ରାଜଦ୍ରୋହର ଏକ ସଂଜ୍ଞା ଦିଆଯାଇଥିଲା । ତାହାର ଚିଠା ଆଇନ୍ ବିଭାଗର ଜଣେ ବିଖ୍ୟାତ ସଭ୍ୟ ମ୍ୟାକଲେ ସାହେବ କରିଥିଲେ ବୋଲି ପାରମ୍ପରିକ ଭାବରେ ବିଶ୍ୱାସ କରାଯାଉଥିଲା । ସେହି ଧାରାଟି ଏକ ''ଦୁର୍ଦ୍ଧର୍ଷ'' ଧାରା ଥିଲା । କିଛି କହିବା କିମ୍ବା ଲେଖିବା ତ ଆହୁରି ପରର କଥା, ଆଖିର ପିଛୁଳାଟାଏ ପକାଇଲେ ମଧ୍ୟ ଜଣେ ବ୍ୟକ୍ତିକୁ ସରକାରଙ୍କ ବିରୋଧରେ ରାଜଦ୍ରୋହ କରିବାର ଅଭିଯୋଗରେ ଧରି ନିଆଯିବାର ସମ୍ଭାବନା ରହିଥିଲା । ଏପରିକି, ପଣ୍ଡିତ ମାଲବ୍ୟଙ୍କ ପରି ଜଣେ ସ୍ଥିରମତିସମ୍ପନ୍ନ ବ୍ୟକ୍ତି ମଧ୍ୟ ଥରେ ଲେଜିସ୍‌ଲେଟିଭ୍ ଆସେମ୍ବ୍ଲିରେ ଏହିପରି ମନ୍ତବ୍ୟ ଦେବାକୁ ବାଧ ହୋଇଥିଲେ: ''ଏହାକୁ ମୁଁ ପ୍ରତ୍ୟେକ ଭାରତୀୟର କର୍ତ୍ତବ୍ୟ ବୋଲି କହିବି ଯେ ତାକୁ ପ୍ରକୃତରେ ଘୃଣା ହିଁ କରିବାକୁ ହେବ ଏବଂ ବର୍ତ୍ତମାନ ଚାଲୁଥିବା ଏହି ସରକାର ବିରୋଧରେ ଘୃଣାର ପ୍ରଚାର କରିବାକୁ ହେବ ।''

ମୋ' ସମ୍ମୁଖରେ ପ୍ରକୃତରେ କେଉଁ ସମ୍ଭାବନାଟି ରହିଥିଲା ବୋଲି ମୁଁ ଯେତେ ଅଧିକ ଚିନ୍ତା କରିବାକୁ ଲାଗିଲି, ମୋତେ ଦୃଷ୍ଟିଗୋଚର ହେଉଥିବା ଚିତ୍ରଟି ସେତେ ଅଧିକ ପରିମାଣରେ ଅସୁଖକର ବୋଧ ହେବାକୁ ଲାଗିଲା । ମୋକଦ୍ଦମାଟି ବେଳେବେଳେ ଏତେ ଦୁର୍ବଳ ବୋଲି ମନେ ହେଉଥିଲା ଯେ, ଆଇନ୍ ଅନୁସାରେ ପ୍ରକୃତରେ ଆଦୌ କୌଣସି ଦଣ୍ଡାଦେଶ ସମ୍ଭବ ହେବ ବୋଲି ମୋ'ମନରେ ସନ୍ଦେହ ଜାତ ହେଉଥିଲା । ମାତ୍ର ମୁଁ ଯେ କ'ଣ କରିପାରିବି, ସେ ବିଷୟରେ କିଛି ଠିକ୍ କରି ପାରି ନଥିଲି । ...'' କଲିସ୍ ପୋଲିସ୍ ଡେପୁଟୀ ସୁପରିଣ୍ଟେଣ୍ଡେଣ୍ଟ ଫ୍ରାଙ୍କ୍ ଫିଅର୍ନଲେ ହୁଇଟିଂହ୍ୱଲ୍‌ଙ୍କ ସହିତ ଏକ ମନଖୋଲା କଥାବାର୍ତ୍ତା କରିଥିଲେ । ସଦାଶୟ ସରକାର ଏହି ମୋକଦ୍ଦମାଟି କାହିଁକି ରୁଜୁ କଲେ, ଆପଣ ମୋତେ କହନ୍ତୁ ତ ! ଏହା ପଶ୍ଚାତରେ ପ୍ରକୃତ ସତ୍ୟ କ'ଣ ରହିଛି ?'' ଫ୍ରାଙ୍କ୍ ଉତ୍ତର ଦେଲେ, ''ଭାରତୀୟ ଉତ୍ତେଜନା-ସୃଷ୍ଟିକାରୀମାନେ ବ୍ରହ୍ମଦେଶ ଭିତରକୁ ଆସି ନାକ ପୂରାନ୍ତୁ ନାହିଁ ବୋଲି ସରକାରୀ ଉଚ୍ଚକର୍ତ୍ତା ଇଚ୍ଛା ପ୍ରକାଶ କଲେ । କେବଳ ସେତିକି ନୁହେଁ, ଉଚ୍ଚ କର୍ତ୍ତା ଇଚ୍ଛା କରୁଛନ୍ତି ଯେ ବ୍ରହ୍ମଦେଶ ଭାରତୀୟ ସମସ୍ୟା ଭିତରେ ଆଦୌ କୌଣସି ପ୍ରକାରେ ଗୋଳିଆ ଘଣ୍ଟା ହୋଇ ନଯାଉ । ଯେତେବେଳେ ଗୋଇନ୍ଦା ବିଭାଗ ଭାଷଣଗୁଡ଼ିକ ପ୍ରତି ତାଙ୍କର ଦୃଷ୍ଟି ଆକର୍ଷଣ

★ Trials in Burma, ଲେଖକ ମରିସ୍ କଲିସ୍, ପେଙ୍ଗୁଇନ୍ ପ୍ରକାଶନ-ଲାଦନୀ, ସର୍ଭିସେସ୍ ସଂସ୍କରଣ : ଅକ୍ସଫୋର୍ଡ୍ ବିଶ୍ୱବିଦ୍ୟାଳୟରେ ମରିସ୍ କଲିସ୍ ଜଣେ ପ୍ରତିଭାଶାଳୀ ଛାତ୍ର ଥିଲେ, 1911 ରେ ଆଇ.ସି.ଏସ୍. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ, ବାଇଶି ବର୍ଷ କାଳ (1912-34) ବ୍ରହ୍ମଦେଶରେ ନିଯୁକ୍ତ ହୋଇଥିଲେ । ତା'ପରେ ସେ ଲେଖାଲେଖି କଲେ ଏବଂ ଅଟାଧିକ ସୁପରିଚିତ ପୁସ୍ତକର ଲେଖକ ହିସାବରେ ପ୍ରଖ୍ୟାତ ହେଲେ ।

କରିଥିଲେ, ସେତେବେଳେ ତାହା ସେନ୍‌ଗୁପ୍ତଙ୍କ ପରି ଲୋକମାନଙ୍କୁ ବ୍ରହ୍ମଦେଶର ମୁଣ୍ଡ ଭିତରେ ସେହିସବୁ ବିଚାରକୁ ଆଣି ଭର୍ତ୍ତି କରିବାରେ ନିରୁତ୍ସାହିତ କରିବାଲାଗି ତାଙ୍କୁ ଏକ ଚମତ୍କାର ସୁଯୋଗ ପରି ବୋଧ ହେଲା ।''

## ସେନଗୁପ୍ତ ଗିରଫ ହେଲେ : କଲିକତାରେ ଉତ୍ତେଜନା

ଯେତେବେଳେ ମାର୍ଚ୍ଚ 11 ତାରିଖ ଦିନ (1930) କଲିକତା ପୋଲିସ୍‌ର ସର୍ବୋଚ୍ଚ କର୍ତ୍ତାଙ୍କର ସହଯୋଗରେ ରେଙ୍ଗୁନ୍ ପୋଲିସ୍ ସେନଗୁପ୍ତଙ୍କର ଏଲ୍‌ଗିନ୍ ରୋଡ଼ରେ ଥିବା ତାଙ୍କର ଘରକୁ ଯାଇ ତାଙ୍କ ଉପରେ ୱାରଣ୍ଟ ଜାରି କଲା ଏବଂ ଫେବୃୟାରୀ 20 - 21ରେ ସେ ରେଙ୍ଗୁନ୍ ଠାରେ ଦେଇଥିବା ଭାଷଣଗୁଡ଼ିକର ଭିତ୍ତିରେ ତାଙ୍କୁ 'ରାଜଦ୍ରୋହ'ର ଅପରାଧରେ ଅଭିଯୁକ୍ତ କଲା, ସେତେବେଳେ ସ୍ୱୟଂ ସେନଗୁପ୍ତ ମଧ୍ୟ ଚକିତ ହୋଇ ପଡ଼ିଥିଲେ । ସେହିସବୁ ଭାଷଣରେ ସେ ପ୍ରକୃତରେ 'ରାଜଦ୍ରୋହ' ଶବ୍ଦଟିକୁ ଉଚ୍ଚାରଣ କରିଥିଲେ । 5000 ଟଙ୍କା ଲେଖାଏଁ ଦୁଇଟି ପ୍ରତିଶ୍ରୁତିରେ ସେ ଜାମିନ୍ ପାଇପାରିବେ ବୋଲି ତାଙ୍କୁ କୁହାଗଲା, ମାତ୍ର ସେ ସେଥିରେ ରାଜି ହୋଇ ନଥିଲେ । ଏହି ବିଷୟ କଲିକତା ପୋଲିସ୍ କମିଶନର୍‌ଙ୍କ ସହିତ ଫୋନ୍‌ଯୋଗେ ସଂପର୍କ ସ୍ଥାପନ କରାଗଲା । ସଂପୃକ୍ତ ଅଭିଯୁକ୍ତ ବ୍ୟକ୍ତି କଲିକତା କର୍ପୋରେସନ୍‌ର ମେୟର୍ ଥିବାରୁ କମିଶନର୍ ମଧ୍ୟ ବଡ଼ କୁଣ୍ଠିତ ଅନୁଭବ କରିଥିଲେ । ସେନଗୁପ୍ତ ଗୃହବନ୍ଦୀ ହୋଇ ରହିବାର ପ୍ରସ୍ତାବରେ ସେ ସମ୍ମତ ହେଲେ । ତାଙ୍କ ଘର ପାଖରେ ଦିନରାତି ନିୟମିତ ଏକ ପୋଲିସ୍ ପହରା ରହିବ ବୋଲି ସ୍ଥିର ହେଲା ।

ମେୟର୍ ସେନ୍‌ଗୁପ୍ତଙ୍କୁ ଏପରି ହଠାତ୍ ଗିରଫ କରାଯାଇ ଥିବାର ସମ୍ବାଦ ସହରବ୍ୟାପୀ ଉତ୍ତେଜନା ଓ ବିସ୍ମୟ ସୃଷ୍ଟି କରିଥିଲା । ତହିଁ ଆରଦିନ କଲିକତା ପାଇଁ ଏକ ପ୍ରତିବାଦ ହରତାଳ କରାଯିବାର ଘୋଷଣା ହେଲା । ସେହିଦିନ ଯତୀନ୍ଦ୍ରମୋହନଙ୍କୁ ଗିରଫ କରାଯାଇଥିବା ଜଣେ ବନ୍ଦୀ ହିସାବରେ ତାଙ୍କ ମୋକଦ୍ଦମାର ବିଚାର ଲାଗି ରେଙ୍ଗୁନ୍ ନିଆଯିବାର କଥା ଥିଲା ।

ତହିଁ ଆରଦିନ ସେହି ବୃହତ୍ ସହରରେ ପ୍ରତ୍ୟୁଷ ହେବା ମାତ୍ରକେ ହଜାର ହଜାର ନରନାରୀ ଆଉଟ୍ରାମ୍ ଘାଟ ଆଡ଼କୁ ଚାଲିଚାଲି ଯାଉଥିବାର ଦେଖା ଯାଇଥିଲା । ସେହିଠାରୁ ହିଁ ମେୟରଙ୍କର 'ସିର୍‌ଧାନା' ଡାକବାହୀ ଜାହାଜରେ ବସି ରେଙ୍ଗୁନ୍ ଯାତ୍ରା କରିବାର କଥା । କେତେକ ବୟୋଜ୍ୟେଷ୍ଠ ପୌରସଭା-ସଦସ୍ୟ ସୁରେଶଚନ୍ଦ୍ର ମଜୁମଦାର (ଆନନ୍ଦ ବଜାର ପତ୍ରିକା) ଏବଂ କଲିକତା ମ୍ୟୁନିସିପାଲ୍ ଗେଜେଟ୍‌ର ସମ୍ପାଦକ ଅମଲ୍ ହୋମ୍‌ଙ୍କ ସମେତ ସହରର ପ୍ରଧାନ ପ୍ରଧାନ ନାଗରିକମାନେ ସିଧା ଜାହାଜ ପର୍ଯ୍ୟନ୍ତ ସେନଗୁପ୍ତ ଦମ୍ପତିଙ୍କର ଅନୁଗମନ କରିଥିଲେ । ମାତ୍ର, ଭାରି ନୃଶଂସ ଭାବରେ, ସେହି ବିପଜ୍ଜନକ ଯାତ୍ରାରେ ଶ୍ରୀମତୀ ସେନଗୁପ୍ତଙ୍କୁ ପୀଡ଼ିତ ସ୍ୱାମୀଙ୍କ ସହିତ ରେଙ୍ଗୁନ୍ ଯିବାଲାଗି ଅନୁମତି ମିଳିଲା ନାହିଁ । ପ୍ରସିଦ୍ଧା ନାରୀନେତ୍ରୀ ଶ୍ରୀମତୀ ଜ୍ୟୋତିର୍ମୟୀ ଗାଙ୍ଗୁଲିଙ୍କ ସମେତ ସେନଗୁପ୍ତଙ୍କର କେତେକ ଘନିଷ୍ଠ ସହକର୍ମୀ ଆପଣାର ପ୍ରିୟ ନେତାଙ୍କ ମୁହଁରେ ନାଲି ଅବିର ବୋଳି ଦେଇଥିଲେ । ତାହା ସହିତ, ତାଙ୍କୁ ହଜାର ହଜାର ପୁଷ୍ପମାଳ ଏବଂ ପୁଷ୍ପତୋଡ଼ା ଅର୍ପଣ କରା ଯାଇଥିଲା ।

ବିରାଟ ଜନତାର ବିପୁଳ ହର୍ଷନାଦ ଏବଂ ବିଜୟଧ୍ୱନି ସହିତ ଜାହାଜ ସମୁଦ୍ରଆଡ଼କୁ ଯାତ୍ରା ଆରମ୍ଭ କଲା ।

## କର୍ପୋରେସନ୍‌ର ପ୍ରତିବାଦ

ରେଙ୍ଗୁନ ମାଜିଷ୍ଟ୍ରେଟଙ୍କ ଦ୍ୱାରା କଲିକତାର ମେୟରଙ୍କୁ ଏପରି ଭାବରେ ଗିରଫ କରିବାରୁ କଲିକତା କର୍ପୋରେସନ୍ ତରଫରୁ 1930 ମାର୍ଚ୍ଚ 17 ତାରିଖ ସୋମବାର ଦିନ ଦୃଢ଼ ପ୍ରତିବାଦ ଜ୍ଞାପନ କରା ଯାଇଥିଲା । କର୍ପୋରେସନ୍‌ର ସଦସ୍ୟମାନେ ଏହି ମର୍ମରେ ସର୍ବସମ୍ମତିକ୍ରମେ ପ୍ରସ୍ତାବ ଗ୍ରହଣ କରି, "ସହରର ସବୁସ୍ତରର ବ୍ୟକ୍ତିଙ୍କ ପାଖରେ ପ୍ରକୃତ ସମ୍ମାନର ଅଧିକାରୀ ହୋଇ ରହିଥିବା ମେୟର ଯତୀନ୍ଦ୍ରମୋହନ ସେନଗୁପ୍ତଙ୍କର ଗିରଫ ହେତୁ ସେମାନଙ୍କର ଦୃଢ଼ ପ୍ରତିବାଦ ଏବଂ କ୍ରୋଧକୁ ଲିପିବଦ୍ଧ କରି ରଖିଲେ ।" ବ୍ରହ୍ମଦେଶ ସରକାରଙ୍କର ଏହି କାର୍ଯ୍ୟକୁ କର୍ପୋରେସନ୍ "ଜନମତର ସ୍ୱାଧୀନ ଅଭିବ୍ୟକ୍ତି ଏବଂ ସ୍ୱାଧିନ ଭାଷଣ ଅଧିକାର ଉପରେ ଏକ ଅପ୍ରତ୍ୟାଶିତ ଓ ସୁଚିନ୍ତିତ ହସ୍ତକ୍ଷେପ ତଥା ଭାରତୀୟ ଜାତୀୟ ଆନ୍ଦୋଳନର ମୂଳରେ ଏକ କୁଠାରାଘାତ" ବୋଲି ମନେ କରୁଛନ୍ତି ବୋଲି ଘୋଷଣା କରିଥିଲେ ।

## ରେଙ୍ଗୁନ୍‌ରେ ବିଚାର ହେଲା

ମାର୍ଚ୍ଚ 17 ତାରିଖ ବଡ଼ିସକାଳୁ ସେନଗୁପ୍ତ ରେଙ୍ଗୁନ୍‌ରେ ପହଞ୍ଚିଲେ । ସେଠାରେ ଥିବା ଅନେକ ସଂଖ୍ୟକ ଭାରତୀୟ ଅଧିବାସୀ, ବ୍ରହ୍ମଦେଶର କେତେଜଣ ମୁଖ୍ୟ ନାଗରିକ, ସନ୍ନ୍ୟାସୀ ଏବଂ ନାରୀ ଜାହାଜଘାଟରେ ସମବେତ ହୋଇ ତାଙ୍କର ଭବ୍ୟ ସ୍ୱାଗତ କରିଥିଲେ । ରେଙ୍ଗୁନ୍‌ର ପୋଲିସ୍ ସୁପରିଣ୍ଟେଣ୍ଡେଣ୍ଟ୍ ଫିଲିପ୍‌ସ୍, ସେନଗୁପ୍ତଙ୍କୁ ସେଠାରୁ ଜିଲ୍ଲା ମାଜିଷ୍ଟ୍ରେଟ୍ କଲିସ୍‌ଙ୍କର ବାସଭବନକୁ ନେଇ ଯାଇଥିଲେ । ସେଠାରେ ସ୍ୱୟଂ ମାଜିଷ୍ଟ୍ରେଟ୍ ଏବଂ ପୋଲିସ୍ କମିଶନର୍ ମେରିକେନ୍ ତାଙ୍କର ଅପେକ୍ଷା କରୁଥିଲେ । ଅଭିଯୁକ୍ତ ବ୍ୟକ୍ତିଙ୍କୁ ଔପଚାରିକ ଭାବରେ ମାଜିଷ୍ଟ୍ରେଟ୍‌ଙ୍କ ପାଖରେ ହାଜର କରାଯାଇ ସାରିବା ପରେ ସେନଗୁପ୍ତଙ୍କୁ ପ୍ରଥମେ ଚାହା ପିଇବାକୁ ଅନୁରୋଧ କରା ଯାଇଥିଲା ଏବଂ ଏକ ସାମାନ୍ୟ ଅର୍ଥପରିମାଣରେ ତାଙ୍କୁ ଜାମିନ୍ ମଧ ମିଳିପାରିବ ବୋଲି କୁହାଯାଇଥିଲା । ଜଣେ ସତ୍ୟାଗ୍ରହୀ ହିସାବରେ ସେନଗୁପ୍ତ ଉଭୟ ପ୍ରସ୍ତାବରେ ଅସମ୍ମତି ପ୍ରକାଶ କରିଥିଲେ ଏବଂ ଈଷତ୍ ହସି ଅତ୍ୟନ୍ତ ଭଦ୍ର ଭାବରେ କହିଥିଲେ: "ବିଚାର ସମୟରେ ମୋତେ ଆପଣାର ପକ୍ଷରକ୍ଷା କରିବାଲାଗି ମଧ ବାରଣ ରହିଛି ।" ତେଣୁ ତାଙ୍କୁ ଜେଲ୍‌କୁ ନିଆ ଯାଇଥିଲା । ମାର୍ଚ୍ଚ 18 ତାରିଖ ଦିନ ଏଗାରଟା ବେଳେ ବିଚାର ଆରମ୍ଭ ହେବ ବୋଲି ଧାର୍ଯ୍ୟ ହେଲା ।

ସରକାରୀ ଓକିଲ ଏଗ୍ଗାର୍ ଅଭିଯୋଗକାରୀଙ୍କ ତରଫରୁ ମୋକଦ୍ଦମାର ଶୁଣାଣି ଆରମ୍ଭ କଲେ । ସର୍ବପ୍ରଥମ ସାକ୍ଷୀ ପୋଲିସ୍ କମିଶନର ମେରିକିନ୍ ମୋକଦ୍ଦମାର ବିଷୟବସ୍ତୁର ବୟାନ ଦେଲେ । ମାତ୍ର ଜଣେ ସତ୍ୟାଗ୍ରହୀ ହିସାବରେ ସେନଗୁପ୍ତ ସେହି ଶୁଣାଣିରେ ଅଂଶଗ୍ରହଣ କରିବାକୁ ନାହିଁ କରିଦେଲେ ଏବଂ ସାକ୍ଷୀମାନଙ୍କୁ କୌଣସି ଜେରା କଲେ ନାହିଁ, ଅତ୍ୟନ୍ତ ନ୍ୟାୟମତି ମାଜିଷ୍ଟ୍ରେଟ୍ କଲିସ୍ ମୁଦାଲାପକ୍ଷର ଅନ୍ୟ ସାକ୍ଷୀ କେହି ଥିଲେ ସାକ୍ଷ୍ୟ ଦେବାକୁ ଆହ୍ୱାନ କଲେ । ଅର୍ଥାତ୍, ଯେଉଁମାନେ ଶ୍ରୀଯୁକ୍ତ ସେନଗୁପ୍ତଙ୍କୁ ଏହି ବକ୍ତୃତାମାନ ଦେବାଲାଗି ନିମନ୍ତ୍ରଣ କରିଥିଲେ, ସେମାନଙ୍କୁ ଆହ୍ୱାନ କରିଥିଲେ । ବାହାରେ ରୁଣ୍ଡ ହୋଇଥିବା ଜନତା ଅସ୍ଥିର ହୋଇ ପଡ଼ିଲା । ମାଜିଷ୍ଟ୍ରେଟ୍ ତହିଁ ଆରଦିନ ପର୍ଯ୍ୟନ୍ତ ବିଚାରକୁ ମୁଲତବୀ ରଖିଲେ ।

ପରଦିନ ବିଚାର ସମୟରେ ଆହୁରି ଅଧିକ ବିକ୍ଷୁବ୍ଧତା ପ୍ରକାଶ ପାଇଥିଲା । ଅବଶ୍ୟ ତଦ୍ୱାରା କୌଣସି ପ୍ରକାରେ ବିଚଳିତ ନ ହୋଇ ମାଜିଷ୍ଟ୍ରେଟ୍ ବିଚାର ଚାଲୁ ରଖିଥିଲେ । ଏହି ବିଚାର

ସମୟରେ ସେନଗୁପ୍ତ ସଂପୂର୍ଣ୍ଣ ଭାବରେ ଏକ ଔଦାସୀନ୍ୟ ଭାବ ଅବଲମ୍ବନ କରିଥିଲେ ଏବଂ ତାଙ୍କର ବନ୍ଧୁ ଶ୍ରୀଯୁକ୍ତ ସେନ୍‌ଙ୍କ ଠାରୁ ଖଣ୍ଡିଏ ଖବରକାଗଜ ନେଇ ତାହାରି ଭିତରେ ନିବିଷ୍ଟ ହୋଇ ରହିଥିଲେ । କେବଳ ସମ୍ବାଦ ଗୁଡ଼ିକରେ ରହିଥିବା କେତେକ ବିଷୟରେ ଫୁସ୍‌ଫୁସ୍ କରି କିଛି କହି ଯାହା ଅନ୍ୟମାନଙ୍କର ଦୃଷ୍ଟି ଆକର୍ଷଣ କଲାଭଳି ଉପରକୁ ମୁହଁ ଟେକୁଥିଲେ । ଶ୍ରୀଯୁକ୍ତ କଲିସ୍ ଲେଖିଛନ୍ତି, "ସେ ତାଙ୍କର ଭୂମିକାଟିକୁ ଅଭିନୟ କରୁଥିଲେ ଓ ମୁଁ ତ ତାହାକୁ ବେଶ୍ ଆସ୍ୱାଦନ କରିବାରେ ଲାଗିଥିଲି । ଜଣେ ବ୍ୟକ୍ତି ହିସାବରେ, ତାଙ୍କ ବିଷୟରେ ମୁଁ ଯାହାସବୁ କରୁଥିଲି, ସେଗୁଡ଼ିକ ପ୍ରତି ଗଭୀର ଆଗ୍ରହ ପ୍ରକାଶ ନ କରିବା ତାଙ୍କଲାଗି ପ୍ରକୃତରେ ଅସମ୍ଭବ ଥିଲା; ମାତ୍ର ଜଣେ ରାଜନୀତିଜ୍ଞ ହିସାବରେ, କାରାବରଣ ଦ୍ୱାରା ତିଷ୍ଠି ରହିଥିବା ଏକ ଦଳର ଜଣେ ନେତା ହିସାବରେ ମୁଁ ଯେଉଁ ମାର୍ଗରେ ଗତି କରୁଥିଲି, ସିଏ ସେହି ମାର୍ଗଟି ସକାଶେ ଦୁଃଖ ପ୍ରକାଶ କରୁଥିଲେ ।"

କଲିସ୍ ମନେ ମନେ ପୁଣି କଳ୍ପନା କରିବାକୁ ଲାଗିଲେ, "ତାଙ୍କ ମତରେ ତାଙ୍କ ବିରୋଧରେ ଆଗତ ଏହି ମୋକଦ୍ଦମା ଏତେ ସାଂଘାତିକ ଭାବରେ ଦୁର୍ବଳ ଥିଲା ଯେ, ତାଙ୍କପ୍ରତି ଏକ କଠୋର ଦଣ୍ଡବିଧାନ କରାଗଲେ ସେ ତଦ୍ୱାରା ଜଣେ ସହିଦରେ ପରିଣତ ହୋଇଯିବେ । ଜଣେ ମନୁଷ୍ୟ ହିସାବରେ ସେ ଜେଲ୍ ଭିତରକୁ ଯିବାକୁ ଆଦୌ ଇଚ୍ଛା କରୁ ନ ଥିଲେ; ଜଣେ ରାଜନୀତିଜ୍ଞ ହିସାବରେ ସେ ଜେଲ୍ ଯିବାକୁ ବାଧ ଅନୁଭବ କରୁଥିଲେ ଏବଂ ଆପଣା ମାର୍ଗରେ ଜଣେ ସାହସୀ ତଥା ନିଷ୍ଠାବାନ୍ ବ୍ୟକ୍ତି ହୋଇଥିବାରୁ, ଆପଣାର ବ୍ୟକ୍ତିଗତ ଆରାମ ତୁଳନାରେ ଆପଣାର କର୍ତ୍ତବ୍ୟଟା ହିଁ ତାଙ୍କୁ ଅଧିକ ମହତ୍ତ୍ୱପୂର୍ଣ୍ଣ ଓ ଶକ୍ତିଶାଳୀ ବୋଲି ବୋଧ ହେଉଥିଲା । ତେଣୁ ସେ ଏକାଧାରରେ ଉତ୍ତେଜିତ ହୋଇ ରହିଥିଲେ ଓ ଏକ ନୈରାଶ୍ୟ ବି ଅନୁଭବ କରୁଥିଲେ... ମାତ୍ର, ତାଙ୍କ ଉପରେ ସମସ୍ତଙ୍କର ଆଖି ନିବିଷ୍ଟ ହୋଇ ରହିଥିଲା । ଏସିଆ ମହାଦେଶର ଅଧେ ସମ୍ବାଦପତ୍ର-ପ୍ରତିନିଧି ବିଚାର ପ୍ରକୋଷ୍ଠ ମଧ୍ୟରେ ଉପସ୍ଥିତ ରହିଥିଲେ । ତାଙ୍କର ସମର୍ଥକମାନେ ତେଣେ ରାସ୍ତା ଉପରେ ଏଢ଼େ ପାଟିରେ ଗର୍ଜନ କରିବାରେ ଲାଗିଥାନ୍ତି । ତେଣୁ ତାଙ୍କୁ ଅତ୍ୟନ୍ତ ସାବଧାନ ହୋଇ ରହିବାକୁ ହେବ, ଯେପରି ଭିତରର କୌଣସି ସଙ୍କେତ ବାହାରକୁ ପ୍ରକାଶ ପାଇ ନ ଯାଏ; କ୍ଷଣକ ପାଇଁ ମୋର ଆଖି ତାଙ୍କ ଆଖି ସହିତ ମିଳିଗଲା ଏବଂ ମୁଁ ସବୁଯାକ ସତ୍ୟକୁ ଦେଖିପାରିଲି, ମାତ୍ର ସେ ପୁନର୍ବାର ସତେଅବା ଅତ୍ୟନ୍ତ ମନୋନିବିଷ୍ଟ ହୋଇ ରହିଥିବା ପରି ନଇଁପଡ଼ି, ଖବରକାଗଜ ପଢ଼ିବାକୁ ଲାଗିଲେ ।"

ମୁଦାଲା ପକ୍ଷର ସାକ୍ଷ୍ୟଗ୍ରହଣ ଏବଂ ସରକାରୀ ଜବାବରେ ପରବର୍ତ୍ତୀ ଦୁଇଟି ଦିନ କଟିଗଲା । ବିରାଟ ଜନତା ଯେପରି କୌଣସି ପ୍ରକାର ହିଂସାଚରଣ କରି ନ ବସେ, ସେଥିଲାଗି ପୋଲିସ୍ ଏବଂ ସୈନ୍ୟବାହିନୀ ସାହାଯ୍ୟରେ ଯଥେଷ୍ଟ ସତର୍କମୂଳକ ବ୍ୟବସ୍ଥା କରା ଯାଇଥିଲା । ସେଦିନ ରାୟ ଦେବା ସ୍ଥଗିତ ରହିଲା ।

କଲିସ୍ ଲେଖିଲେ, "ମୁଁ ଏହି ମୋକଦ୍ଦମାରେ କ'ଣ କହିବି, ସେହିକଥା ଜାଣିବାଲାଗି ସମସ୍ତେ ଉଦ୍‌ଗ୍ରୀବ ହୋଇ ରହିଥିଲେ ଏବଂ, ଯଦି ମୁଁ ସେନଗୁପ୍ତଙ୍କୁ ଖଲାସ କରିଦିଏ, ତେବେ ସରକାର ମୋ ପ୍ରତି କିପରି ଆଚରଣ କରିବେ, ସେହି ବିଷୟରେ ମଧ୍ୟ ସେମାନଙ୍କର ଅନେକ ଉତ୍ସୁକତା ରହିଥିଲା ।"

ତହିଁ ଆରଦିନ କଲିସ୍ ମୋକଦ୍ଦମାର ରାୟ ଶୁଣାଇଦେଲେ । ସେଥିଲାଗି ଅଧଘଣ୍ଟାଏ ସମୟ ଲାଗିଥିଲା । ସେନଗୁପ୍ତଙ୍କୁ ସେ ଦଶଦିନ ଅଶ୍ରମ କାରାଦଣ୍ଡରେ ଦଣ୍ଡିତ କରିଥିଲେ । ଦଣ୍ଡାଦେଶଟିକୁ ଶୁଣି ସେନଗୁପ୍ତ ଈଷତ୍ ହସିଥିଲେ । ତାହାହିଁ ଏକ ସଙ୍କେତରୂପେ କାର୍ଯ୍ୟ କଲା । କଲିସ୍ ମନେ ମନେ

ଭାବିଲେ, ''ଏହାଦ୍ୱାରା ଜାତୀୟତାବାଦୀ ସମସ୍ତ ସମ୍ବାଦପତ୍ରକୁ ଏହିପରି ମୁରୁକି ହସିବାକୁ କୁହାଗଲା । ଏହି ମୋକଦ୍ଦମା ଜଣେ ସହିଦ୍ ଉତ୍ପନ୍ନ କରିବାରେ ସଫଳ ହୋଇପାରିଲା ନାହିଁ, ମାତ୍ର ସରକାର ଉଦ୍ଦେଶ୍ୟରେ, ଅନ୍ତତଃ ସରକାରଙ୍କର ଅଭିଯୋଗକାରୀ ବିଭାଗଟି ଉଦ୍ଦେଶ୍ୟରେ ହସିବାଲାଗି ଏଥିରୁ ଅବଶ୍ୟ ଉତ୍ତମ ସାମଗ୍ରୀ ମିଳିଗଲା । ମାତ୍ର ତା' ବୋଲି ସେମାନେ ଏଥିପାଇଁ ବ୍ରିଟିଶ୍ ଜାତିକୁ କଦାପି ହସାଇପାରିଲେ ନାହିଁ । ଯେଉଁ ବିଚାରାଳୟ ମୋକଦ୍ଦମାଟିର ବିଚାର କରିଥିଲା, ତାହା ଏକ ବ୍ରିଟିଶ୍ ବିଚାରାଳୟ ଥିଲା । ଜଣେ ବ୍ରିଟିଶ୍ ମାଜିଷ୍ଟ୍ରେଟ୍ ମୋକଦ୍ଦମାଟିର ବିଚାର କରୁଥିଲେ । ଏ ବିଷୟରେ ଯେତେ କମ୍ କୁହାଯିବ ସେତେ ଭଲ ।''

## ଭାରତସାରା କୋଳାହଳ

ମାର୍ଚ୍ଚ 31 ତାରିଖ ଦିନ ଦିଲ୍ଲୀରେ ଗୋଟିଏ ଚାଞ୍ଚଲ୍ୟକର ଦୃଶ୍ୟ ଦେଖିବାକୁ ମିଳିଥିଲା । ଲେଜିସ୍‌ଲେଟିଭ୍ ଆସେମ୍ବ୍ଲିରେ ସେତେବେଳେ ପ୍ରଶ୍ନ ପଚାରିବାର ସମୟ କାର୍ଯ୍ୟକାରୀ ସ୍ୱରାଷ୍ଟ୍ର-ସଦସ୍ୟ ହେଗ୍ (ସେ ପରେ 'ନାଇଟ୍' ହୋଇଥିଲେ)ଙ୍କୁ କନ୍ହେଇୟାଲାଲ୍ ମୁନ୍‌ସୀ ଏବଂ ଅନ୍ୟ ରାଜନୀତିକ-ସଭ୍ୟମାନେ ପ୍ରଶ୍ନମାନ ପଚାରି ବ୍ୟତିବ୍ୟସ୍ତ କରି ପକାଇଥିଲେ । ସେମାନଙ୍କ ଭିତରେ ଅପ୍ରତିହତ ପଣ୍ଡିତ ମାଳବ୍ୟ ମଧ ଥିଲେ । ସେମାନେ ସେନଗୁପ୍ତଙ୍କୁ ଗିରଫ କରାଯାଇଥିବାର କାରଣ ଜାଣିବାକୁ ଚାହିଲେ । ବଡ଼ ଅସ୍ପଷ୍ଟ ଭାବରେ ପ୍ରଶ୍ନଗୁଡ଼ିକର ଉତ୍ତର ଦିଆଗଲା । ଏଠାରେ ତାହାର ଏକ ଉଦାହରଣ ଦିଆଯାଉଛି:

''ଯେଉଁସବୁ କ୍ଷେତ୍ରରେ ହିଂସାର ଅଭିପ୍ରାୟ ରହିଥିବ ଏବଂ ଯେଉଁ କ୍ଷେତ୍ରରେ କୌଣସି ଭାଷଣ ଆଇନ୍ ଭଙ୍ଗ କରିବା ଏବଂ ସରକାରଙ୍କର କର୍ତ୍ତୃତ୍ୱକୁ ଅସ୍ୱୀକାର କରିବା ଦିଗରେ ଉଦ୍ଦିଷ୍ଟ କୌଣସି ଆନ୍ଦୋଳନ ଲାଗି ପ୍ରୋତ୍ସାହନ ଦେଉଥିବ, କେବଳ ସେହିସବୁ କ୍ଷେତ୍ରରେ ହିଁ ରାଜଦ୍ରୋହର ଅଭିଯୋଗ ଅଣାଯାଇପାରିବ ବୋଲି ଭାଇସରୟ୍ ଜାନୁଆରୀ 25 ତାରିଖରେ ଯେଉଁ ମତବ୍ୟକ୍ତ କରିଛନ୍ତି, ଭାରତ ସରକାର ସେଥିରେ ପ୍ରକୃତରେ ଏକମତ କି ?''

''ହଁ, ଏକମତ ।''

''ଶ୍ରୀଯୁକ୍ତ ସେନଗୁପ୍ତଙ୍କର ଭାଷଣଗୁଡ଼ିକ ସେହି ଶ୍ରେଣୀର ଥିଲା କି ?''

''ହଁ, ଥିଲା'' ।

ଶେଷରେ ଗୟାପ୍ରସାଦ ସିଂହ ପଚାରିଲେ, ''ମାନ୍ୟବର ସଭ୍ୟ କ'ଣ ଏପରି ଉପଲବ୍ଧି କରୁଛନ୍ତି ଯେ, ବ୍ରହ୍ମଦେଶ ତଥା ଭାରତବର୍ଷର ସରକାର ଶ୍ରୀ ସେନଗୁପ୍ତଙ୍କ ନାମରେ ଯେପରି ମୋକଦ୍ଦମା ଚଳାଇଲେ ତଦ୍ଦ୍ୱାରା ସେମାନଙ୍କୁ କେବଳ ହାସ୍ୟାସ୍ପଦ ହେବାକୁ ହିଁ ପଡ଼ିଲା ?'' ଏହି ସମୟରେ ଅଧକ୍ଷ ମହୋଦୟ ''ଶାନ୍ତି, ଶାନ୍ତି'' ବୋଲି କହି ହସ୍ତକ୍ଷେପ କରିବାକୁ ବାଧ ହେଲେ ।

ଉଦାରପନ୍ଥୀ ନେତା ପଣ୍ଡିତ ହୃଦୟନାଥ କୁଞ୍ଜରୁ (ଏପ୍ରିଲ୍ 1978 ରେ ତାଙ୍କର ମୃତ୍ୟୁ ହୋଇଛି) କହିଲେ, ''ଆଇନ୍‌ର ଅବମାନନା କରିବାଲାଗି ସରକାର ଆଉ କଦାପି ଏହାଠାରୁ ଏକ ଅଧିକ ଭଲ ବାଟ ବାହାର କରିପାରି ନ ଥାନ୍ତେ ।'' ରାଜା ଗଜନଫର୍ ଅଲ୍ଲି ଘୋଷଣା କଲେ, ''ବିଚାରାଳୟରେ ଯେଉଁଭଳି ପ୍ରମାଣମାନ ଉପସ୍ଥାପିତ କରାଯାଇଛି ଏବଂ ଶ୍ରୀଯୁକ୍ତ ସେନଗୁପ୍ତଙ୍କୁ ଯେପରି ଭାବରେ ଗିରଫ କରି ବ୍ରହ୍ମଦେଶକୁ ନିଆଯାଇଛି, ସେଥିରୁ ସ୍ପଷ୍ଟ ହୋଇଯାଉଛି ଯେ ସମସ୍ତ ପ୍ରସଙ୍ଗଟିକୁ କେବଳ ଏକ ପ୍ରହସନ ବୋଲି କୁହାଯାଇପାରିବ । ଏପରିକି, ଲବଣ ଆଇନ୍ ଅମାନ୍ୟ କରିବାଲାଗି ଯାତ୍ରା ଆରମ୍ଭ କରିବାକୁ ପ୍ରସ୍ତୁତ ହେଉଥିବା ବରିଷ୍ଠ ନେତା ମହାତ୍ମା ଗାନ୍ଧି ''ଏହି

ଘଟଣାଟିର ସଦୁପଯୋଗ କରିବାଲାଗି'' ୟଙ୍ଗ୍ ଇଣ୍ଡିଆ କାଗଜରେ ଲେଖାଟିଏ ଲେଖିଥିଲେ । ସେଥିରେ ସେ କହିଥିଲେ ଯେ, ଯଦି ସେ କୌଣସି ଏକ ସ୍ୱାଧୀନ ପରିବେଶ ମଧ୍ୟରେ ରହିଥାନ୍ତେ, ତେବେ ସେ ନିଶ୍ଚୟ ସେନଗୁପ୍ତଙ୍କୁ ଖଲାସ କରି ଦେଇଥାନ୍ତେ ଏବଂ ତାଙ୍କ ବିରୋଧରେ ଏକ ଅହେତୁକ ଅଭିଯୋଗ ଆଣିଥିବାରୁ ସରକାରଙ୍କୁ ଦଣ୍ଡର ଆଦେଶ କରିଥାନ୍ତେ । ସେ ଏକଥା ମଧ୍ୟ ଘୋଷଣା କରିଥିଲେ: ''ଯଦି ନିଜର ବିରକ୍ତି ପ୍ରକାଶ କରିବା ଏକ ଅପରାଧ ହୁଏ ଏବଂ ଯଦି 124 (କ) ଧାରା ଭିତରେ ପ୍ରକୃତରେ କୌଣସି ବାସ୍ତବ ତାତ୍ପର୍ଯ୍ୟ ରହିଥାଏ, ତେବେ, ରାଜଦ୍ରୋହକୁ ନିଜର ଏକ ଧର୍ମରେ ପରିଣତ କରିଥିବା ମୋର ମଧ୍ୟ କେଉଁ କାଳରୁ ବିଚାର ହୋଇ ଦଣ୍ଡବିଧାନ ହୋଇ ସାରିଥାନ୍ତା । ମାତ୍ର ସରକାର ପୃଥିବୀର ଜନମତକୁ ଭୟ କରୁଛନ୍ତି । ଅହିଂସାର ନୀତି ଏକ ଯଥାର୍ଥ ନୀତି; ଅଦୂର ଭବିଷ୍ୟତରେ ବିଜୟ ସୁନିଶ୍ଚିତ ।''

## ରେଙ୍ଗୁନ୍ ସଙ୍କଟର ଅବସାନ

ସେନଗୁପ୍ତ ଜେଲ୍‌କୁ ଯିବାପରେ ଚତୁର୍ଥ ଦିନ କଲିସ୍ ଜେଲଖାନାରେ ତାଙ୍କ ସହିତ ସାକ୍ଷାତ କରିଥିଲେ ଏବଂ ତାଙ୍କର ଭଲମନ୍ଦ ବୁଝିଥିଲେ । ସେନଗୁପ୍ତ ଏହି କାର୍ଯ୍ୟଟିର ଖୁବ୍ ପ୍ରଶଂସା କରିଥିଲେ । ତାଙ୍କୁ ଅଷ୍ଟମ ଦିନ ମୁକ୍ତି ଦିଆଗଲା । ଠିକ୍ ତହିଁ ଆରଦିନ ତାଙ୍କୁ ଗୋଟିଏ ବିରାଟ ସଭାରେ ଭାଷଣ ଦେବାଲାଗି ନିମନ୍ତ୍ରଣ କରାଗଲା । ସେ ପୁନର୍ବାର ପୂର୍ବର ସେହି ଓଜସ୍ୱିତା ସହିତ ଭାଷଣ ଦେଇଥିଲେ, ମାତ୍ର କିଛିଟା ସାବଧାନତା ଅବଲମ୍ବନ କରିଥିଲେ ।

ତା'ପରେ ରେଙ୍ଗୁନ୍ ଛାଡ଼ିବା ପୂର୍ବରୁ ସେନଗୁପ୍ତ ମାଜିଷ୍ଟ୍ରେଟ୍ କଲିସ୍‌ଙ୍କର ବଙ୍ଗଳାକୁ ଯାଇ ତାଙ୍କ ସହିତ ସୌଜନ୍ୟଗତ ସାକ୍ଷାତ କରିଥିଲେ । ଆଗନ୍ତୁକ ''ଅତିଶୟ ଉତ୍ସାହରେ ପୂର୍ଣ୍ଣ ହୋଇ'' ରହିଥିଲେ । ତାଙ୍କୁ କଲିସ୍ ସର୍ବପ୍ରକାରର ଭଦ୍ରତା ପ୍ରଦର୍ଶନ କରିଥିଲେ । ସେନ୍‌ଗୁପ୍ତ ହସି ହସି କହିଥିଲେ, ଆପଣ ଯେତେବେଳେ ମୋତେ ପ୍ରଥମଥର ପାଇଁ ଦେଖିଲେ ସେତେବେଳେ ମୋତେ କପେ ଚାହା ପିଇବାକୁ ଅନୁରୋଧ କରିଥିଲେ । ମୁଁ ନାହିଁ ବୋଲି କହିଥିଲି । ଦେଖିଲେ ତ ମୁଁ କିପରି ସେହି କଥାକୁ ମନେ ରଖିଛି ! ବର୍ତ୍ତମାନ ଆପଣ ମୋତେ ଗୋଟିଏ ଗ୍ଲାସ୍ ବାର୍ଲିପାଣି ପିଇବା ପାଇଁ ଦେଇପାରିବେ କି ? ଅଳ୍ପ କେତେ ମିନିଟ୍ ପାଇଁ ଦୁହିଁଙ୍କ ମଧ୍ୟରେ ହାର୍ଦ୍ଦିକ କଥାବାର୍ତ୍ତା ହୋଇଥିଲା ।

''ମୁଁ ବଡ଼ିସକାଳେ ବଙ୍ଗଳା ଫେରିଯିବି । ସେଠାରେ ପହଞ୍ଚିବା ମାତ୍ରକେ ମୋତେ ପୁଣି ସଂଗ୍ରାମ ଭିତରେ ଲିପ୍ତ ହୋଇଯିବାକୁ ପଡ଼ିବ । ଆପଣଙ୍କ ସହିତ ଆଉ ଦେଖାହୋଇ ନ ପାରେ ।'' ★ କଲିସ୍ କହିଲେ, ''ଆପଣ ଅତ୍ୟନ୍ତ ଉଦାର ମନୋଭାବ ଦେଖାଇଛନ୍ତି ଏବଂ ଏଥର ଏକ ଅସ୍ୱାଭାବିକ ଅବସରରେ ମଧ୍ୟ ଆପଣଙ୍କ ସହିତ ଦେଖା ହୋଇଛି । ଏହାକୁ ମନେ ରଖିବା ଲାଗି, ଆପଣ ମୋ ଠାରୁ ଗୋଟିଏ ସାନ ସଉକ ସାଙ୍ଗରେ ନେଇଯିବେ କି ?'' କଲିସ୍ ଧଳା ପଥରରେ ତିଆରି ହୋଇଥିବା ସାନ ସିଂହଟିଏ ଆଣିଲେ, ସିଂହର ଲାଙ୍ଗୁଳରେ ଅଗକୁ ପଦ୍ମଫୁଲଟିଏ ହୋଇ ରହିଥାଏ- ବେଶ୍ ଏକ ପ୍ରତୀକାତ୍ମକ ମୂର୍ତ୍ତିଟିଏ- ଏବଂ ତାହାକୁ ସେନଗୁପ୍ତଙ୍କୁ ଉପହାର ଦେଲେ । ସେ ସେଇଟିକୁ ତାଙ୍କ ବକ୍ଷ ଉପରେ ଥିବା ଗୋଟିଏ ପକେଟ୍ ଭିତରେ ନେଇ ରଖିଲେ । ତା'ପରେ ହାଲୁକା ଭାବରେ କହିଲେ, ''ମାତ୍ର ଏଥର ବନ୍ଦ କରିବାର ବେଳ ଆସି ପହଞ୍ଚିଲା । ମୋ' ଉପରେ ମୁଁ ରାତ୍ରିର ଚକଗୁଡ଼ିକର

★ ଜଣେଇଶି ମାସପରେ 1931 ନଭେମ୍ବର 10 ତାରିଖରେ ଲଣ୍ଡନର ଭିକ୍ଟୋରିଆ ଷ୍ଟେସନ ଠାରେ ସେନଗୁପ୍ତ କଲିସ୍‌ଙ୍କୁ ଭେଟିବାର ଆଉଏକ ସୁଯୋଗ ପାଇଥିଲେ ।

କ୍ଷିପ୍ର ଘୂର୍ଣ୍ଣନ ଶବ୍ଦ ଶୁଣିବାକୁ ପାଉଛି । ବର୍ତ୍ତମାନ ଏହି ଗମ୍ଭୀର ପରିହାସ ଏତିକି ଥାଉ । ମୋତେ ଯିବାକୁ ହେବ- ବିଦାୟ- ସମ୍ଭବତଃ ପରେ କୌଣସି ଅଧିକ ସୁଖମୟ ସମୟରେ......''

## ବଙ୍ଗଳା ରାଜନୀତିରେ ମୋଡ଼-ପରିବର୍ତ୍ତନ

ଯତୀନ୍ଦ୍ରମୋହନ ମେୟରରୂପେ ନିର୍ବାଚିତ ହେବାର ପ୍ରଥମ କାଳରେ 1925 ବଙ୍ଗଳା ରାଜନୀତିରେ ରହିଥିବା ଯେଉଁ ବିଭେଦମାନ ଉପରିଭାଗରେ ଦେଖା ଦେବାକୁ ଆରମ୍ଭ କରିଥିଲା, ପରବର୍ତ୍ତୀ ଦଶକ ଗୁଡ଼ିକରେ ମଧ ତାହାର ଅବସାନ ଘଟିପାରି ନ ଥିଲା । ବସ୍ତୁତଃ କୃଷ୍ଣନଗର ପ୍ରାଦେଶିକ ସମ୍ମିଳନୀ (1926) ବେଳକୁ ସେହି ବିଭେଦ ବୃଦ୍ଧି ପାଇଥିଲା ଏବଂ ତା'ର ଅବ୍ୟବହିତ ପରେ ପ୍ରାଦେଶିକ କଂଗ୍ରେସ କମିଟିର ଗୋଟିଏ ବୈଠକ ଡକାଗଲା । ସମ୍ମିଳନୀଟି ମଧ ସଭାପତି, ପ୍ରତିନିଧିବର୍ଗ, ପ୍ରାଦେଶିକ କଂଗ୍ରେସ କମିଟିର ନେତା ଓ ସଦସ୍ୟମାନଙ୍କ ଭିତରେ ରହିଥିବା ବହୁ ମତପାର୍ଥକ୍ୟର ଏକ ମଞ୍ଚରେ ପରିଣତ ହୋଇଯାଇଥିଲା । ଏଥିରୁ ପରେ ଗମ୍ଭୀର ନାନା ପରିଣାମ ଉପୁଜିଲା । ଦେଖାଗଲା ଯେ, ସେହି ସଂସ୍ଥା ଭିତରେ ତିନୋଟି ଗୋଷ୍ଠୀ ରହିଛନ୍ତି, ଗୋଟିଏ ତତ୍କାଳୀନ ସଭାପତି ସେନଗୁପ୍ତଙ୍କ ପକ୍ଷରେ, ଆଉ ଗୋଟିଏ ତାଙ୍କ ବିରୋଧରେ ଓ ଆଉଗୋଟିଏ ତୃତୀୟ ଅତ୍ୟନ୍ତ ନିରପେକ୍ଷ ଗୋଷ୍ଠୀ । ଏହି ଶେଷ ଗୋଷ୍ଠୀ ଆପଣାର କେତେଜଣ ଅନୁଗାମୀ ରହିଥିବା ଲଳିତ ମୋହନ ଦାସଙ୍କ ନେତୃତ୍ୱରେ ପରିଚାଳିତ ହେଉଥିଲା । ପ୍ରଦେଶ କଂଗ୍ରେସ କମିଟିରେ ଏପରି କେତୋଟି କମିଟି ରହିଥିଲା, ଯେଉଁଥିରେ କି ସେନଗୁପ୍ତ-ବିରୋଧୀ ଗୋଷ୍ଠୀଟି କ୍ରମଶଃ ଅଧିକ ଶକ୍ତିଶାଳୀ ହୋଇ ଆସୁଥିଲା । ସେମାନେ ଯେଉଁ ପାଞ୍ଚଜଣ ସୁପରିଚିତ ବ୍ୟକ୍ତିଙ୍କ ଦ୍ୱାରା ପ୍ରଭାବିତ ହେଉଥିଲେ, ସେମାନେ ହେଲେ, ବି. ସି. ରାୟ, ଟି. ସି. ଗୋସ୍ୱାମୀ, ନିର୍ମଳଚନ୍ଦ୍ର ଚନ୍ଦ୍ର, ନଳିନୀ ରଞ୍ଜନ ସରକାର ଓ ଶରତଚନ୍ଦ୍ର ବୋଷ । ସେମାନଙ୍କୁ ''ବୃହତ୍ ପାଞ୍ଚଜଣ'' ବୋଲି କୁହାଯାଉଥିଲା ଏବଂ ସେମାନେ ଏକ ଦୀର୍ଘ ବିବୃତି ଦେଇ ବଙ୍ଗ ପ୍ରଦେଶରେ କଂଗ୍ରେସର କାର୍ଯ୍ୟକୁ ଅବହେଳା କରିଥିବା ସମେତ ଆହୁରି କେତେକ ଭୁଲ୍‌ଭଟକାର ଅପବାଦ ଲଗାଇ ଯତୀନ୍ଦ୍ରମୋହନ ସେନଗୁପ୍ତଙ୍କର ନିନ୍ଦା କରିଥିଲେ । ସ୍ୱଭାବତଃ ଶାନ୍ତ ପ୍ରକୃତିର ଜଣେ ବ୍ୟକ୍ତି ହୋଇଥିବାରୁ ଯତୀନ୍ଦ୍ରମୋହନ ଏହାର କୌଣସି ପ୍ରତିଶୋଧ ନେଲେ ନାହିଁ, ଅବଶ୍ୟ ସିଏ ଏକ ଉତ୍ତରପତ୍ର ବାହାର କରି ସେଥିରେ ପ୍ରତିପକ୍ଷର ଦର୍ଶିତ ବିଷୟଗୁଡ଼ିକର ଖଣ୍ଡନ କରିଥିଲେ । ପାର୍ଥକ୍ୟ ଅଚିରେ ଅଧିକ ତୀବ୍ର ହେଲା ଏବଂ ଅଧିକ ଗମ୍ଭୀର ଆକାର ଧାରଣ କଲା ।

ଏହି ସମୟରେ କଲିକତାରେ କଂଗ୍ରେସ କାର୍ଯ୍ୟକାରୀ କମିଟିର ଏକ ଅଧିବେଶନ ବସିଲା । କମିଟିର ଜଣେ ମୁଖ୍ୟ ସଦସ୍ୟ ସରୋଜିନୀ ନାଇଡୁ ଏକ ସମାଧାନର ଉଦ୍ୟମ କରିଥିଲେ । ଏକ ମିଳିତ ଇସ୍ତାହାରରେ ସେନଗୁପ୍ତ ଏବଂ ଗୋସ୍ୱାମୀ ସବୁ କଂଗ୍ରେସଲୋକେ ପୁନର୍ବାର ଏକାଠି ହୋଇଗଲେ ବୋଲି ଘୋଷଣା କଲେ । ବଙ୍ଗ ପ୍ରଦେଶ କଂଗ୍ରେସ କମିଟିର ନୂଆ କାର୍ଯ୍ୟକାରୀ କମିଟି ଗଢ଼ାହେଲା, ମାତ୍ର ''ବୃହତ୍ ପାଞ୍ଚ''ଙ୍କ ମଧ୍ୟରୁ ଚାରି ଜଣ ସେଥିରେ ରହିବାକୁ ଅସମ୍ମତ ହେଲେ । ଏହିପରି ଭାବରେ ଏକ ବିଷଚକ୍ର ଆକାର ଲାଭ କଲା ଏବଂ ବଙ୍ଗଳାର ରାଜନୀତିକ ଦିଗ୍‌ବଳୟ ଉପରେ ଅନ୍ଧକାରର ଏକ ଛାୟା ବିସ୍ତାରି ରଖିଲା । ''ଦି ଫରଓ୍ୱାର୍ଡ଼'' କାଗଜର ସମ୍ପାଦକ ପି. କେ ଚକ୍ରବର୍ତ୍ତୀ କଂଗ୍ରେସ ରାଜନୀତି ସମ୍ବନ୍ଧରେ (1925-26) ''ନିଷିଦ୍ଧ ସମ୍ପତ୍ତିର ବାହକ'' ଶୀର୍ଷକରେ କଡ଼ା ଭାଷାରେ ଏକ ସମ୍ପାଦକୀୟ ଲେଖିଥିଲେ । ପରେ ଅବଶ୍ୟ ଜଣାପଡ଼ିଲା ଯେ, ସଂବାଦପତ୍ର

ଉପରେ ନିୟନ୍ତ୍ରଣ ଥିବା ''ବୃହଦ୍ ପାଞ୍ଚ'' ଙ୍କ ମଧ୍ୟରୁ ଜଣେ ରାତାରାତ ସେହି ଲେଖାଟିକୁ ଦାବି ରଖିଲେ । କେବଳ ସେତିକି ନୁହେଁ, ପ୍ରବୀଣ ସମ୍ପାଦକଙ୍କୁ ମଧ୍ୟ ସଙ୍ଗେ ସଙ୍ଗେ କାଗଜଟିରୁ ବାହାରକୁ ଚାଲିଯିବାକୁ ପଡ଼ିଲା । ତା'ପରେ ଚକ୍ରବର୍ତ୍ତୀ ଅନ୍ୟାନ୍ୟ ସମ୍ବାଦପତ୍ରରେ ଯତୀନ୍ଦ୍ରମୋହନ ସେନଗୁପ୍ତଙ୍କୁ ସମର୍ଥନ କରି ଅତ୍ୟନ୍ତ ଶକ୍ତିଶାଳୀ ଲେଖାମାନ ଲେଖିଲେ । ଉକ୍ତ ଘଟଣାଟି ଘଟିବା ପୂର୍ବରୁ ଦେଶବନ୍ଧୁଙ୍କର କାଗଜ ''ଦି ଫରଓ୍ୱାଡ଼୍'' ଦେଶପ୍ରିୟଙ୍କୁ ଦୃଢ଼ ସମର୍ଥନ କରୁଥିଲା, ମାତ୍ର ତା'ପରେ ତାଙ୍କ ବିରୋଧରେ ଯାଇଥିଲା ।

ବଙ୍ଗ ପ୍ରାଦେଶିକ କଂଗ୍ରେସ କମିଟିର ଏହି ଗୋଷ୍ଠୀ-ରାଜନୀତିର ପ୍ରତିକ୍ରିୟା ଚିଟାଗଙ୍ଗ ଜିଲ୍ଲା କଂଗ୍ରେସ ଉପରେ ମଧ୍ୟ ପଡ଼ିଲା । ସେନଗୁପ୍ତ ଦୀର୍ଘ ସମୟ ଧରି ତାହାର ସଭାପତି ରହି ଆସିଥିଲେ ଓ ସେଥିରେ ତାଙ୍କରି ପ୍ରଭାବ ହିଁ ସର୍ବାଧିକ ରହିଥିଲା । ବସ୍ତୁତଃ, ସେ ଅସହଯୋଗ ଆନ୍ଦୋଳନର ଆରମ୍ଭରୁ ହିଁ ସେହି ଜିଲ୍ଲାରେ (ତାଙ୍କ ନିଜ ଜିଲ୍ଲା) କଂଗ୍ରେସ କାର୍ଯ୍ୟକ୍ରମର ନେତା ହୋଇ ରହିଥିଲେ । ତା'ପରେ କ୍ଷମତା ରାଜନୀତି ହିଁ ଯୁଗର ବିଷମୟ ରୀତିରେ ପରିଣତ ହୋଇଗଲା । କଲିକତାରେ ପ୍ରଦେଶ କଂଗ୍ରେସ କମିଟିର ଏବଂ ଚିଟାଗଙ୍ଗରେ ଜିଲ୍ଲା କଂଗ୍ରେସର ସଭାପତି ବାଛିବା ପାଇଁ ହୋଇଥିବା ପରବର୍ତ୍ତୀ ନିର୍ବାଚନରେ ସେନଗୁପ୍ତ କୌଣସି କାରଣରୁ ପରାଜିତ ହେଲେ । ଉଭୟ ସ୍ଥାନରେ ଅତିଶୟ ଉତ୍ତେଜନା ଦେଖା ଯାଇଥିଲା । ସେନଗୁପ୍ତ ସଙ୍ଗେ ସଙ୍ଗେ କଂଗ୍ରେସ କାର୍ଯ୍ୟକାରୀ କମିଟିରୁ ଇସ୍ତଫା ଦେଲେ, ମାତ୍ର ପରେ ତାହାକୁ ପ୍ରତ୍ୟାହାର କରି ନେବାଲାଗି ତାଙ୍କୁ ପ୍ରବର୍ତ୍ତାଯାଇ ପାରିଥିଲା ।

ବଙ୍ଗ କଂଗ୍ରେସରେ ଥିବା ଦୁଇ ଗୋଷ୍ଠୀ ମଧ୍ୟରେ ରହିଥିବା ଉକ୍ତ ପାର୍ଥକ୍ୟମାନ 1928 ର କଲିକତା କଂଗ୍ରେସ ପରେ ଅଧିକ ଗମ୍ଭୀର ଆକାର ଧାରଣ କଲା । ଏହା ''ସୁଭାଷବାବୁ ଏବଂ ମୋତିଲାଲଜୀଙ୍କ ମଧ୍ୟରେ ଉତ୍ତ୍ୟକ୍ତ ବାକ୍‌ବିନିମୟର କାରଣ ହୋଇଥିଲା ଏବଂ ଲାହୋର ଠାରେ ଅନୁଷ୍ଠିତ କଂଗ୍ରେସ ସପ୍ତାହରେ ଏହା ଆହୁରି ଅଧିକ ପ୍ରକାଶ୍ୟ ଭାବରେ ପଦାକୁ ଆସିଥିଲା ।'' (ଦ୍ରଷ୍ଟବ୍ୟ: ଭାରତୀୟ ଜାତୀୟ କଂଗ୍ରେସର ଇତିହାସ, ଲେଖକ- ଡାକ୍ତର ପଟ୍ଟାଭି ସୀତରାମାୟା, ପୃଷ୍ଠା- 360) କାଉନ୍‌ସିଲ୍‌ରେ ପ୍ରବେଶ କରିବାର ପ୍ରଶ୍ନ ନେଇ ସେନଗୁପ୍ତ ଏବଂ ବୋଷଙ୍କ ମଧ୍ୟରେ ରହିଥିବା ପାର୍ଥକ୍ୟମାନ ଆହୁରି ଅଧିକ ତିକ୍ତ ମଧ୍ୟ ହୋଇଥିଲା ।

## 'ଆଡ୍‌ଭାନ୍ସ' କାଗଜ ବାହାରିଲା

ଏହି ପର୍ଯ୍ୟାୟରେ କଲିକତାର ଦୈନିକ କାଗଜ 'ଲିବର୍ଟି' (ପୁରାତନ 'ଫରଓ୍ୱାର୍ଡ଼'ର ପରବର୍ତ୍ତୀ ରୂପ) ପ୍ରାୟ ପ୍ରତ୍ୟେକ ବିଷୟରେ ସେନଗୁପ୍ତଙ୍କର ଲାଗ୍‌ଲାଗ୍ ସମାଲୋଚନା କରିବାକୁ ଆରମ୍ଭ କଲା । ସେତେବେଳେ ଯତୀନ୍ଦ୍ରମୋହନ ନିଜର ଏକ ଖବରକାଗଜର ଅଭାବକୁ ତୀବ୍ର ଭାବରେ ଅନୁଭବ କରିଥିଲେ ଏବଂ 1929 ଡିସେମ୍ବର ମାସରେ 'ଦି ଆଡ୍‌ଭାନ୍ସ' କାଗଜର ପ୍ରକାଶନ ହାତକୁ ନେଲେ । ସିଏ ନିଜେ ମୁଖ୍ୟ-ସମ୍ପାଦକ ହେଲେ ଏବଂ ସାମ୍ବାଦିକ ପି. କେ. ଚକ୍ରବର୍ତ୍ତୀ ସମ୍ପାଦକ ନିଯୁକ୍ତ ହେଲେ । ପରିଚାଳନାର ଦାୟିତ୍ୱ ଦେଶପ୍ରିୟଙ୍କର ସାନଭାଇ ସଦ୍ୟ ବିଲାତଫେରନ୍ତା ଆର୍. ଏମ୍. ସେନଗୁପ୍ତଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ଲାହୋର କଂଗ୍ରେସର ଅଧିବେଶନ ସମୟରେ କଂଗ୍ରେସ ଶିବିର ଏବଂ ପ୍ରେକ୍ଷାଳୟମାନଙ୍କରେ ଏହି କାଗଜର ସର୍ବପ୍ରଥମ ସଂଖ୍ୟାଟି ଉପଲବ୍ଧ ହୋଇ ପାରିଥିଲା । ସେହି ଜାତୀୟ ମଞ୍ଚରେ ତାହା ସମସ୍ତଙ୍କର ହାର୍ଦ୍ଦିକ ପ୍ରଶଂସା ଲାଭ କରିଥିଲା ।

ବଙ୍ଗ ରାଜନୀତିରେ ପୁନର୍ବାର ଶୃଙ୍ଖଳା ଫେରାଇ ଆଣିବାଲାଗି କଂଗ୍ରେସ ଉଚ୍ଚ ମହଲରେ ହେଉଥିବା ଉଦ୍ୟମର କୌଣସି ଅଭାବ ନଥିଲା । ଏକଦା 1929 ମସିହାରେ ବଙ୍ଗ କଂଗ୍ରେସ ମଧ୍ୟରେ ରହିଥିବା ଅନୈକ୍ୟର ସମାଧାନ ଲାଗି କଂଗ୍ରେସ କାର୍ଯ୍ୟକାରୀ କମିଟି ତରଫରୁ ପଣ୍ଡିତ ମୋତିଲାଲ ନେହେରୁଙ୍କୁ ପ୍ରବର୍ତ୍ତାଯାଇଥିଲା । ତଥାପି କେତେକ ଆପତ୍ତି ଓ ଅସୁବିଧା ଏଥିରେ ଅନ୍ତରାୟ ହେଲା ଏବଂ ତା'ପରେ ବିବାଦର ମୀମାଂସା ଲାଗି ଡାକ୍ତର ଏମ୍. ଏସ୍. ଅଣେଙ୍କୁ କୁହାଗଲା । ତାହାର ଅବ୍ୟବହିତ ପରେ ଆଇନ୍ ଅମାନ୍ୟ ଆନ୍ଦୋଳନ ଦେଶରେ ଏକ ଉଦ୍‌ବେଳନ ସୃଷ୍ଟି କରିଥିଲା (1930-31-32) । କୁହାଯାଏ ଯେ ଅଣେ ଏକ ରିପୋର୍ଟ୍ ପ୍ରସ୍ତୁତ କରିଥିଲେ, ମାତ୍ର, ସେହି ସମୟରେ ଦେଶ ଯେଉଁ ଜାତୀୟ ସଂକଟ ମଧ୍ୟଦେଇ ଗତି କରୁଥିଲା, ସେହି ଦୃଷ୍ଟିରୁ ତାହାକୁ ସମ୍ଭବତଃ ଗଡ଼ାଇଦିଆ ଯାଇଥିଲା ।

ଏକଥା ମଧ୍ୟ ଦେଖା ଯାଇଥିଲା ଯେ, ବଙ୍ଗଳାରେ କାର୍ଯ୍ୟ କରୁଥିବା ଦୁଇ ବିପ୍ଲବୀ ପାର୍ଟି ମଧ୍ୟ ଏହି ଦୁଇ ପରିପନ୍ଥୀ ଗୋଷ୍ଠୀଙ୍କ ମଧ୍ୟରୁ ଏଇଟିର ବା ସେଇଟିର ପକ୍ଷ ଗ୍ରହଣ କରିବାକୁ ଲାଗିଲା : କେତେଜଣ ପ୍ରବୀଣ ଅନୁଶୀଳନ ସଭ୍ୟ ସେନଗୁପ୍ତଙ୍କର ଦୃଢ଼ ସମର୍ଥକ ଥିଲେ । ଅନ୍ୟ ପକ୍ଷରେ 'ଯୁଗାନ୍ତର' ଗୋଷ୍ଠୀ ମୋଟାମୋଟି ବେଶ୍ ସକ୍ରିୟ ଭାବରେ ବୋଷ୍‌ଙ୍କର ପକ୍ଷ ଗ୍ରହଣ କରିଥିଲେ । ସେହି ସମୟରେ ଏହାକୁ ବଙ୍ଗଳା କଂଗ୍ରେସରେ ରହିଥିବା ଗୋଷ୍ଠୀବାଦର ଏକ ପ୍ରାରୂପିକ ଉଦାହରଣ ବୋଲି କୁହାଯିବ । ଯେତେବେଳେ କଂଗ୍ରେସର ଲାହୋର ଅଧିବେଶନ (1929) ର ସଭାପତି ପଦ ପାଇଁ ମନୋନୟନ ହେବାକୁ ଯାଉଥିଲା, ପ୍ରାୟ ସେହି ସମୟରେ ବଙ୍ଗ ପ୍ରଦେଶ କଂଗ୍ରେସ କମିଟିର ମୁଖ୍ୟ ସୁଭାଷଚନ୍ଦ୍ରଙ୍କ ନାମ ସେଥିଲାଗି ପ୍ରସ୍ତାବିତ ହେଲା ଏବଂ ବିଶିଷ୍ଟ 'ଯୁଗାନ୍ତର' ସଭ୍ୟମାନଙ୍କର ସମର୍ଥନରେ ତାହା ବହୁମତରେ ଗୃହୀତ ହୋଇ ଯାଇଥିଲା । ସେତେବେଳେ ଆମେରିକାରେ ଜଣେ ସୁବିଦିତ ନାଗରିକ ରୂପେ ବାସ କରୁଥିବା ଡାକ୍ତର ତାରକନାଥ ଦାସଙ୍କୁ ସେମାନେ ଦ୍ୱିତୀୟ ବିକଳ୍ପ ରୂପେ ବାଛିଲେ, ଅନ୍ୟ ଗୋଷ୍ଠୀ ଯତୀନ୍ଦ୍ରମୋହନଙ୍କୁ ମନୋନୀତ କଲେ, - ଯତୀନ୍ଦ୍ର ସମାନ ପରିମାଣରେ ଲୋକପ୍ରିୟ ଥିଲେ ଏବଂ ତାଙ୍କ ପକ୍ଷରେ ଆହୁରି ଏକ ଦୃଢ଼ ଯୁକ୍ତି ରହିଥିଲା ଯେ, ସେ ବଙ୍ଗ ପ୍ରଦେଶ କଂଗ୍ରେସ କମିଟିର ଅଧ୍ୟକ୍ଷ ତଥା କଲିକତା କଂଗ୍ରେସ ଅଧିବେଶନରେ (1928) ଅଭ୍ୟର୍ଥନା ସମିତିର ଚେୟାରମ୍ୟାନ୍ ହୋଇ ମଧ୍ୟ ରହିଥିଲେ । ଏହିପରି ଏକ ପରିସ୍ଥିତିରେ ନୀରବ ଆପତ୍ତିଭାବ ପ୍ରକାଶ ପାଇଥିଲା । ବିରୋଧବାଦୀମାନେ ସମ୍ବାଦପତ୍ରରେ ପ୍ରଚାର ଆରମ୍ଭ କରିଦେବାର ଫଳ ସ୍ୱରୂପ ଦୁଇଜଣଙ୍କ ମଧ୍ୟରୁ ସେନଗୁପ୍ତଙ୍କ ନାମକୁ ବାଦ୍ ଦେବାଲାଗି ଏକ ଶକ୍ତିଶାଳୀ ମତ ପ୍ରକାଶ ପାଇଲା । ତାଙ୍କ ନାମରେ ଆସିଥିବା ପ୍ରସ୍ତାବଟି ପରବର୍ତ୍ତୀ ପର୍ଯ୍ୟାୟରେ କାଟ ଖାଇଗଲା ।

ସେକଥା ଯାହା ହୋଇଥାଉ ପଛକେ, ଲାହୋର କଂଗ୍ରେସର ସଭାପତିପଦ ଶେଷକୁ ଅଖିଳ ଭାରତ ମନୋନୟନର ସଂଖ୍ୟାଗରିଷ୍ଠତା ଅନୁସାରେ ଜବାହରଲାଲ ନେହରୁଙ୍କ ଭାଗରେ ପଡ଼ିଥିଲା ।

ଏହିସବୁ ମତଭେଦ ପ୍ରକୃତରେ କେତେ ଗଭୀରକୁ ଯେ ଭେଦି ରହିଥିଲା, ତାହା ଭାବିଲେ ଭାରି ଆଶ୍ଚର୍ଯ୍ୟ ହେବାକୁ ହୋଇଥାଏ । ସ୍ଥାନୀୟ ହରିଜନମାନେ 1929 ମସିହାରେ ମୁନ୍‌ସୀଗଞ୍ଜ (ଢ଼ାକା ଜିଲ୍ଲା) ଠାରେ ଯେଉଁ ମନ୍ଦିର ସତ୍ୟାଗ୍ରହ ଆରମ୍ଭ କରିଥିଲେ, ସେଥିରୁ ମଧ୍ୟ ଏହି ମତଭେଦର ଗୋଟିଏ ଦୃଷ୍ଟାନ୍ତ ମିଳିପାରିବ । ଜଣେ ଲୋକପ୍ରିୟ କଂଗ୍ରେସ ନେତା ହିସାବରେ ଦେଶପ୍ରିୟ ଯତୀନ୍ଦ୍ରମୋହନ ସେହି ସତ୍ୟାଗ୍ରହ ପ୍ରତି ଆପଣାର ଦୃଢ଼ ସମର୍ଥନ ଜଣାଇଥିଲେ । ସ୍ଥାନୀୟ ଓକିଲମାନେ (ଏମାନଙ୍କ ମଧ୍ୟରୁ ଅଧିକାଂଶ ସବର୍ଣ୍ଣ ହିନ୍ଦୁ ଥିଲେ) ପ୍ରତିନିଧିତ୍ୱ କରୁଥିବା ରକ୍ଷଣଶୀଳ ହିନ୍ଦୁ ସଂପ୍ରଦାୟ ତାହାର ବିରୋଧ କରିଥିଲେ । ସଂବାଦ ମିଳିଲା ଯେ, ହରିଜନମାନଙ୍କ ବିରୋଧରେ ଗୋପନରେ

କାର୍ଯ୍ୟ କରୁଥିବା "ସୁପ୍ତ କଂଗ୍ରେସ ନେତୃତ୍ୱ" ଠାରୁ ସେମାନେ ପ୍ରୋତ୍ସାହନ ପାଉଥିଲେ । ଏହିସବୁ କାର୍ଯ୍ୟକଳାପ ଆପାତତଃ ସେନଗୁପ୍ତଙ୍କର ଅସଫଳତା ପ୍ରତିପାଦିତ କରିଦେବା ନିମନ୍ତେ ଉଦ୍ଦିଷ୍ଟ ହୋଇଥିଲା । ମାତ୍ର ସେନଗୁପ୍ତ ଆପଣାର ସ୍ୱାଭାବିକ ସମତାଭାବ, ଦୃଷ୍ଟି ତଥା ଉଦାର ମନୋଭାବ ଦ୍ୱାରା ପ୍ରେରିତ ହୋଇ "ହରିଜନମାନଙ୍କ ପ୍ରତି ରହିଥିବା କଂଗ୍ରେସ ସଂଗଠନର ନୀତି ଅନୁସାରେ" ଏହି ବିବାଦର ଏକ ନିଷ୍ପତ୍ତି ହେଉ ବୋଲି ଦାବି କରିଥିଲେ । ମାତ୍ର କ୍ଷମତାରେ ଥିବା ପ୍ରାଦେଶିକ କଂଗ୍ରେସ ପ୍ରକୃତରେ ତାହା କରିବାକୁ ଇଚ୍ଛା କରୁ ନଥିଲା । ଫଳରେ, ତତ୍କାଳୀନ "ରାଜନୀତିକ ଶତ୍ରୁତାଭାବ"କୁ ଅତିକ୍ରମ କରିଯିବା ଉଦ୍ଦେଶ୍ୟରେ ଦେଶପ୍ରିୟଙ୍କ ଠାରୁ ପ୍ରେରଣା ପାଇ ସ୍ଥାନୀୟ ବ୍ୟକ୍ତିମାନେ "ଆହ୍ୱାନଟିର ସମ୍ମୁଖୀନ ହେବାଲାଗି" ଅଗ୍ରସର ହୋଇ ଯାଇଥିଲେ ଏବଂ ମନ୍ଦିରଗୁଡ଼ିକ ହରିଜନମାନଙ୍କ ଲାଗି ଖୋଲା ହେବାରେ ସଫଳତା ଲାଭ କରିଥିଲେ । ★ ରାଜନୀତିକ ସଂଗଠନଗତ ଇତିହାସର ପୁରୁଣା ଘାଆଗୁଡ଼ାକୁ ନ ଉଖାରି ହୁଏତ ଏତିକି କୁହାଯାଇ ପାରିବ ଯେ, ବଙ୍ଗଳା କଂଗ୍ରେସରେ ହୋଇଥିବା ଏହି ବିଭେଦ ପରେ ଦୀର୍ଘ ଅନେକ ବର୍ଷ ପର୍ଯ୍ୟନ୍ତ ମଧ୍ୟ ସମାହିତ ହୋଇ ପାରି ନ ଥିଲା ।

ପରବର୍ତ୍ତୀ କାଳରେ ଏହି ପ୍ରତିଦ୍ୱନ୍ଦ୍ୱିତା ଏକ ଅନ୍ୟ ଆକାର ଧାରଣ କରିଥିଲା ଏବଂ ଯେଉଁ ବ୍ୟକ୍ତିମାନଙ୍କର ପରିସ୍ଥିତି ଉପରେ ଏକ ନିୟନ୍ତ୍ରଣ ରହିଥିଲା, କିଏ ସବୁ ଭୁଲ କରୁଥିଲେ ଏବଂ କେଉଁମାନେ ଉଚିତ ବାଟରେ ଯାଉଥିଲେ, ସେମାନେ ସେକଥା ଭଲ କରି ଜାଣିଥିଲେ । କଂଗ୍ରେସର ଜଣେ ସୁବିଦିତ ପୂର୍ବତନ ନେତା ଅତୁଲ୍ୟ ଘୋଷ (1977-78) ରେ ସେ ବଙ୍ଗଳା ସାପ୍ତାହିକ 'ଦେଶ' ପତ୍ରିକାରେ ଆପଣାର ସଂସ୍ମରଣମାନ ଲେଖୁଥିଲେ)ଙ୍କ କଥାରେ କହିବାକୁ ଗଲେ : ".....ଯାବତୀୟ ପ୍ରତିକୂଳ ପରିସ୍ଥିତିରେ, ଯେତେବେଳେ ଅତିରିକ୍ତ ପରିମାଣରେ ଶତ୍ରୁତା ଲାଗି ରହିଥିଲା, ସେତେବେଳେ ଯତୀନ୍ଦ୍ରମୋହନ 'ଅସାଧାରଣ' ପ୍ରକୃତି ତଥା ଚରିତ୍ର ରହିଥିବା ଜଣେ ନେତାରୂପେ ଆପଣାର ପରିଚୟ ଦେଇଥିଲେ ।" "ବୃହତ୍ ପାଞ୍ଚଜଣ" ଏବଂ ଯତୀନ୍ଦ୍ରମୋହନ ସେନଗୁପ୍ତ ଓ ତାଙ୍କ ଗୋଷ୍ଠୀ ମଧ୍ୟରେ ବିବାଦ ଲାଗିଥିବା ସମୟକୁ ଲକ୍ଷ୍ୟ କରି ସେ ଏପରି କହିଥିଲେ ।

## ଚିଟାଗଙ୍ଗ ଅତ୍ୟାଚାର

ଅବିଭକ୍ତ ଭାରତରେ ଭାରତବର୍ଷର ସ୍ୱାଧୀନତା ସଂଗ୍ରାମରେ ଚିଟାଗଙ୍ଗ ଅନେକ ଦୁଃଖଦାୟକ ତଥା ଗୌରବମୟ ଘଟଣାର ଅଭିନୟ ସ୍ଥାନ ହେବାର ମର୍ଯ୍ୟାଦା ଅର୍ଜନ କରିଥିଲା । ସେଗୁଡ଼ିକର ବିଶଦ ବିବରଣୀ ବାହାରକୁ ପ୍ରକାଶିତ ହେବା ଏବେ ମଧ୍ୟ ବାକି ରହିଛି । ଇନିସ୍‌ପେକ୍ଟର୍ ଆସାନୁଲ୍ଲାଙ୍କର ହତ୍ୟା (ଅଗଷ୍ଟ-ସେପ୍ଟେମ୍ବର, 1931) ପରେ ଚିଟାଗଙ୍ଗରେ ଯେଉଁସବୁ ଅତ୍ୟାଚାର ଘଟିଥିଲା, ତାହା ରକ୍ତ ଚଢ଼ାଇ ଦେଉଥିବା ନାନା ଘଟଣାର ଏକ ଅଧ୍ୟାୟ ହୋଇ ରହିଛି । ସେତେବେଳେ ଆଉ ଆଇନ୍ ବୋଲି ଆଦୌ କିଛି ରହିଲା ନାହିଁ ଓ ଆଚରଣଗୁଡ଼ିକ ସମସ୍ତ ପାଶବିକତାକୁ ଅତିକ୍ରମ କରି ଯାଇଥିଲା । ଏହି ସବୁକିଛି ଘଟଣା ବ୍ରିଟିଶ୍ ଶାସକମାନଙ୍କର ପ୍ରକାଶ୍ୟ ପରୋକ୍ଷ ମୌନ ଅନୁମତି ସହିତ ହିଁ ଘଟୁଥିଲା । ଚିଟାଗଙ୍ଗ ବିପ୍ଳବର (1930-35) ଇତିହାସରେ ଯେଉଁମାନଙ୍କର କୃତିତ୍ୱମାନ ଗୌରବମୟ ଏବଂ ଅମର ହୋଇ ରହିଛି, ସେହି ପ୍ରଚଣ୍ଡ ଯୁବକଗୋଷ୍ଠୀକୁ ନିର୍ମମ ଭାବରେ ଦବାଇ

★ ଅନେକ ବର୍ଷ ପୂର୍ବେ ବଂଗ ପ୍ରାଦେଶିକ କଂଗ୍ରେସ କମିଟିର କାର୍ଯ୍ୟକାରୀ ସମିତିର ଜଣେ ସଭ୍ୟ ଥିବା ଅଧ୍ୟାପକ ଏନ୍.ସି. ଭଟ୍ଟାଚାର୍ଯ୍ୟଙ୍କ ଠାରୁ ଏହି ତଥ୍ୟଟି ପ୍ରାପ୍ତ ହୋଇଥିଲା । ବୁଦ୍ଧଦେବ ଭଟ୍ଟାଚାର୍ଯ୍ୟଙ୍କ ଦ୍ୱାରା ଲିଖିତ 'ସତ୍ୟାଗ୍ରହ ଇନ୍ ବେଙ୍ଗଲ୍ 1927-1933, ମିନର୍ଭା ପବ୍ଲିକେଶନ୍‌ସ୍ 1977 ମଧ୍ୟ ଦ୍ରଷ୍ଟବ୍ୟ ।

ରଖିବାକୁ ହିଁ ବ୍ରିଟିଶ୍ ସରକାର ସେହିଭଳି ଆଚରଣ କରିଥିଲେ । ଏକ ନିରୀହ ଜାତି ଉପରେ ସେତେବେଳେ ଯେଉଁ ପଶୁବତ୍ ଅତ୍ୟାଚାରମାନ କରା ଯାଉଥିଲା, ସେଥିରେ ଯେକୌଣସି ଯଥାର୍ଥ ସଭ୍ୟତାର ମୁଣ୍ଡ ଲଜ୍ଜାରେ ତଳକୁ ହିଁ ହୋଇଯିବ ।

ଦୁର୍ଦ୍ଦଶାର ସେହି ଦିନଟି ହେଉଛି 1931 ମସିହା ଅଗଷ୍ଟ 31ତାରିଖ । ସାଧାରଣତଃ "ନିଜାମ୍ ପଲ୍ଟଣ" ନାମରେ ପରିଚିତ ସ୍ଥାନୀୟ ମଇଦାନରେ ଏକ ଫୁଟ୍‌ବଲ୍ ମ୍ୟାଚ୍‌ର ଫାଇନାଲ୍ ଖେଳ ସରିଥାଏ । ବିଜୟୀ ଟାଉନ୍ କ୍ଲବ୍ (ଚିଟାଗଙ୍ଗର ପୋଲିସ୍‌ମାନେ ଏଥିରେ ବହୁସଂଖ୍ୟାରେ ରହିଥିଲେ)ର ଅଧ୍ୟକ୍ଷ ପୋଲିସ୍ ଇନିସ୍‌ପେକ୍ଟର୍ ଖାଁ ବାହାଦୁର ଆସାନୁଲ୍ଲା ସେଥିରେ ଏତେ ଆନନ୍ଦିତ ହୋଇ ପଡ଼ିଥିଲେ ଯେ, ତାହା ବାହାରକୁ ବଡ଼ ଜଳଜଳ ହୋଇ ଦିଶୁଥିଲା । ତାଙ୍କର କ୍ଲବ୍ ସିଲ୍ଡ୍ ପାଇ ସାରିଥାନ୍ତି । ସେଠାରେ ଜିଲ୍ଲାର ପ୍ରଧାନ ପ୍ରଧାନ ସରକାରୀ କର୍ମଚାରୀ ଓ ବେସରକାରୀ ବ୍ୟକ୍ତିମାନେ ଉପସ୍ଥିତ ଥାଆନ୍ତି, ଆଖପାଖର ଅନେକ ଉଚ୍ଚପଦସ୍ଥ ଇଉରୋପୀୟ ମଧ୍ୟ ରହିଥାନ୍ତି । ସଶସ୍ତ୍ର ପୋଲିସ୍ ଘେରା ବାନ୍ଧି ଜଗିରହିଥାନ୍ତି, ସୈନ୍ୟବାହିନୀର କେତେକ ବ୍ୟକ୍ତି ମଧ୍ୟ ଥାଆନ୍ତି । ଚିଟାଗଙ୍ଗ ଅସ୍ତ୍ରାଗାର ଲୁଣ୍ଠନ ଏବଂ ତା'ପରେ ଘଟିଥିବା ନାନା ବିକ୍ଷୋଭ ଫଳରେ ସହରର ରାଜନୀତିକ ପରିସ୍ଥିତିରେ ସନ୍ଦେହ ଓ ଆତଙ୍କ ଅତିମାତ୍ରାରେ ହୋଇଥିବାରୁ ସେହି ବ୍ୟବସ୍ଥା କରା ହୋଇଥାଏ । ଖାଁ ବାହାଦୁରଙ୍କୁ ସମସ୍ତେ ଅଭିନନ୍ଦନ ଜ୍ଞାପନ କରୁଥାନ୍ତି । ହଠାତ୍ ଗୋଟିଏ ପିସ୍ତଲ ଫୁଟାଯିବାର ଶବ୍ଦରେ ଚାରିଆଡ଼ କମ୍ପି ଉଠିଲା ଏବଂ ଇନିସ୍‌ପେକ୍ଟର୍ ମରି ତଳେ ପଡ଼ିଗଲେ । ଆନନ୍ଦ-ଉଲ୍ଲାସ ଜାଗାରେ ଚାରିଆଡ଼େ ଭୟ ଓ ଆତଙ୍କ ଖେଳିଗଲା । ବେଶ୍ କିଛି ସମୟ ଯୁଦ୍ଧ ପରେ ପୋଲିସ୍ ଆକ୍ରମଣକାରୀକୁ କାବୁ କରିନେବାରେ ସଫଳ ହୋଇଥିଲା ।

ହତ୍ୟାକାରୀ 14 ବର୍ଷର ଜଣେ ବାଳକ ହରିପଦ ଭଟ୍ଟାଚାର୍ଯ୍ୟ ଦୁଇଟି ରିଭଲଭର ସହିତ ସେହିଠାରେ ହିଁ ଧରା ହେଲା । ତାକୁ ଧରାଯିବା ମୁହୂର୍ତ୍ତରୁ ହିଁ ତା ଉପରେ ନାନା ଅମାନୁଷିକ ଅତ୍ୟାଚାରମାନ କରାଗଲା । ସର୍ବପ୍ରଥମେ ତାକୁ ଘୋଷାରି ଘୋଷାରି ସଦର ପୋଲିସ୍ ଥାନାର ହାଜତ ପର୍ଯ୍ୟନ୍ତ ନିଆଗଲା । ଯେପରି ଷଡ଼ଯନ୍ତ୍ରଟି ବିଷୟରେ ସକଳ ତଥ୍ୟ ମିଳିଯାଇ ପାରିବ, ସେଥିଲାଗି ତା' ଉପରେ ଯାବତୀୟ ପ୍ରକାରର ଅତ୍ୟାଚାର କରା ଯାଇଥିଲା । ଅର୍ଦ୍ଧମୃତ ବାଳକଟି କୌଣସି ଗୁପ୍ତ ତଥ୍ୟ ପ୍ରକାଶ କରି ନ ଥିଲା । ଏତେ ଅଳ୍ପ ବୟସର ହୋଇଥିଲେ ମଧ୍ୟ ମରଣକୁ ଖାତିର କରୁ ନ ଥିବା ଏହି ବାଳକଟିର ଅତୁଳନୀୟ ସାହସ ଥିଲା, ଅପରାଜେୟ ଦେଶପ୍ରେମ ଏବଂ ଦୃଢ଼ ସଂକଳ୍ପ ରହିଥିଲା । ପୋଲିସ୍ ଉତ୍ତମରୂପେ ଜାଣିଥିଲେ ଯେ ହରିପଦ ହେଉଛି ଅନେକ ତରୁଣ ଷଡ଼ଯନ୍ତ୍ରକାରୀମାନଙ୍କ ମଧ୍ୟରେ କେବଳ ଜଣେ, ମାତ୍ର, ସମ୍ଭବତଃ ସମସ୍ତଙ୍କ ମଧ୍ୟରେ ଅଧିକ ସାହସୀ । ଆତ୍ମଗୋପନକାରୀ ଚିଟାଗଙ୍ଗ ଅସ୍ତ୍ରାଗାର ଲୁଣ୍ଠନର ନେତା ସୂର୍ଯ୍ୟ ସେନ୍ ଏବଂ ନିର୍ମଳ ସେନ୍‌ଙ୍କ ଦ୍ୱାରା ଏମାନେ ତାଲିମ ପାଇଛନ୍ତି । ସେତେବେଳେ ଏକ ବିଶେଷ ନ୍ୟାୟାଳୟରେ ଅସ୍ତ୍ରାଗାର ଲୁଣ୍ଠନ ମୋକଦ୍ଦମାର ବିଚାର ହେଉଥିଲା । ଏକଥା ମଧ୍ୟ ଜଣାଗଲା ଯେ, ଚିଟାଗଙ୍ଗ ଜେଲ୍‌ରେ ଥିବା ବିଚାରାଧୀନ ବନ୍ଦୀମାନେ ଏହି ଘଟଣାରେ ଅତ୍ୟନ୍ତ ହର୍ଷ ଅନୁଭବ କରିଥିଲେ । ଯେଉଁ ଘୃଣ୍ୟ ବ୍ୟକ୍ତିଟି ସେମାନଙ୍କ ଦୃଷ୍ଟିରେ ବିପ୍ଳବକାରୀ ବାଳକ ତଥା ସଂପୃକ୍ତ ଅନ୍ୟମାନଙ୍କ ଉପରେ ଅକଥନୀୟ ଓ ନିର୍ମମ ନାନା ଅତ୍ୟାଚାର କରିଥିବା ଲାଗି ଦାୟୀ ଥିଲା, ତାହାର ମୃତ୍ୟୁ ଦ୍ୱାରା ନାଟକର ପରିସମାପ୍ତି ଘଟିଲା । ସେତେବେଳେ ପୋଲିସ୍ ଇନିସ୍‌ପେକ୍ଟର୍ ଜିଲ୍ଲା ଗୋଇନ୍ଦା ବିଭାଗର ବି ମୁଖ୍ୟ ଥିଲେ ଏବଂ ତେଣୁ ଅସ୍ତ୍ରାଗାର ଲୁଣ୍ଠନର ଘଟଣାବଳୀର ତଦନ୍ତରେ ମଧ୍ୟ ସେ ସକ୍ରିୟ ଭାବରେ ସଂପୃକ୍ତ ଥିଲେ ।

**ପ୍ରକାଶ୍ୟ ପ୍ରତିହିଂସା**

ସେହିଦିନ ରାତିରେ ହିଁ କର୍ତ୍ତୃପକ୍ଷ- ପୋଲିସ୍ ଏବଂ ଜିଲ୍ଲା ମାଜିଷ୍ଟ୍ରେଟ୍ ଚିଟାଗଙ୍ଗର ହିନ୍ଦୁ ବାସିନ୍ଦାଙ୍କ ଉପରେ 'ପ୍ରକାଶ୍ୟ ପ୍ରତିହିଂସା'ର ଏକ ସଂଗଠିତ ଯୋଜନାକୁ କାର୍ଯ୍ୟକାରୀ କରିବାଲାଗି ଷଡ଼ଯନ୍ତ୍ର କରିଥିଲେ । ବେସରକାରୀ ଇଉରୋପୀୟମାନେ ସେମାନଙ୍କୁ ଏଥିରେ ସାହାଯ୍ୟ କରିଥିଲେ । ସର୍ବପ୍ରଥମ ପଦକ୍ଷେପ ସ୍ୱରୂପ, ରାଜନୀତିକ ଦୃଷ୍ଟିରୁ 'ସନ୍ଦେହ' କରାଯାଉଥିବା ସହରର ପ୍ରାୟ ଶହେରୁ ଅଧିକ ବାଳକଙ୍କୁ ସଂପୂର୍ଣ୍ଣ ଭାବରେ କବଳିତ କରି ନିଆଗଲା । କେତେକ କ୍ଷେତ୍ରରେ ସେମାନଙ୍କର ଅଭିଭାବକମାନଙ୍କୁ ମଧ୍ୟ ଗିରଫ କରି ନିଆଯାଇଥିଲା । ସେମାନଙ୍କୁ ସମସ୍ତଙ୍କୁ ସହର ଥାନାର ହାଜତରେ ଅଟକ ରଖାଗଲା ଏବଂ ଲୁଣ୍ଠନ ମୋକଦ୍ଦମାରେ ଆତ୍ମଗୋପନକାରୀ ବ୍ୟକ୍ତିମାନଙ୍କ ବିଷୟରେ ତଥ୍ୟ ସଂଗ୍ରହ କରିବାର ସୁସ୍ପଷ୍ଟ ମତଲବରେ ସେମାନଙ୍କ ଉପରେ ନିର୍ମମ ପ୍ରହାର ହେଲା ଓ ଅକଳ୍ପନୀୟ ଅତ୍ୟାଚାରମାନ କରାଗଲା । ଅପର ପକ୍ଷରେ, ଉପକଣ୍ଠ ଅଞ୍ଚଳରୁ ଅସାମାଜିକ ଉପାଦାନମାନଙ୍କୁ ଡକାଇ ଅଣାଯାଇଥିଲା ଏବଂ, ସମୟାନୁକ୍ରମେ, ଏହି ଜଘନ୍ୟ ଆସୁରିକତାରେ ଅବଶିଷ୍ଟ ଭୂମିକାମାନ ଗ୍ରହଣ କରିବାରେ ନିୟୋଜିତ କରାଗଲା ।

ଏହି ଖେଳର ଆଉ ଗୋଟିଏ ଦିଗ ମଧ୍ୟ ରହିଥିଲା ଓ ତାହାର ମଧ୍ୟ ପୂର୍ବରୁ ଯୋଜନା କରା ଯାଇଥିଲା । ଏଥିରେ କୌଣସି ସନ୍ଦେହ ନାହିଁ ଯେ, ସଂବାଦପତ୍ର ମାନଙ୍କର ମୁହଁ ବନ୍ଦ କରି ରଖିବା ସକାଶେ ପୂର୍ବଦିନ ରାତିରୁ ବେସରକାରୀ ଇଉରୋପୀୟମାନଙ୍କର ଗୋଟିଏ ଦଳ ଚିଟାଗଙ୍ଗରୁ ପ୍ରକାଶ ପାଉଥିବା ବଙ୍ଗଳା ଦୈନିକ 'ପାଞ୍ଚଜନ୍ୟ'ର ଦପ୍ତର ଉପରେ ଚଢ଼ାଉ କରିଥିଲେ ଏବଂ ସେଠାରେ ରହୁଥିବା ସହକାରୀ ସମ୍ପାଦକ ହରେନ୍ଦ୍ର ଚୌଧୁରୀଙ୍କୁ ଆକ୍ରମଣ କଲେ । ତାଙ୍କର ମୁଣ୍ଡରେ ଆଘାତ ବାଜି ରକ୍ତ ବୋହିବାରେ ଲାଗିଲା । ସ୍ଲେଜ୍ ହାତୁଡ଼ି ଓ ଅନ୍ୟାନ୍ୟ ହତିଆରରେ ପିଟି ସେମାନେ ଛାପାକଳକୁ ଭାଙ୍ଗି ଚୂନା କରି ଦେଇଥିଲେ । ଏହା ଫଳରେ କାଗଜଟି ବାହାରିବା ବନ୍ଦ ହୋଇଗଲା ଏବଂ ଜଘନ୍ୟତମ ସ୍ଥାନୀୟ ସଂବାଦମାନ ପଦାରେ ପ୍ରକାଶ ପାଇବା ଆଉ ସମ୍ଭବ ହେଲା ନାହିଁ ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ଘଟଣାଟିର ଦୁଇଦିନ ପୂର୍ବେ କଲିକତାର ଏକ ଆଙ୍ଗ୍ଲୋ-ଇଣ୍ଡିଆନ୍ ସଂବାଦପତ୍ରରେ ଏକ ସଂକ୍ଷିପ୍ତ ଅଗ୍ରଲେଖା ବାହାରିଥିଲା, ଯେଉଁଥିରେ କି ''ଆତଙ୍କବାଦୀ ତଥା ଧ୍ୱଂସମୂଳକ ଆନ୍ଦୋଳନ'' ପ୍ରତି ସକ୍ରିୟ ସହାନୁଭୂତି ଦେଖାଉଛି ବୋଲି ଚିଟାଗଙ୍ଗର ଏହି ଖବରକାଗଜଟି ନାମରେ ଅଭିଯୋଗ କରାଯାଇଥିଲା । ସେହି ସଂବାଦପତ୍ରରେ ଅତୀତରେ ବେଶ୍ କେତେ ସମୟ ଧରି ଯେଉଁସବୁ ଲେଖା ପ୍ରକାଶ ପାଇ ଆସୁଥିଲା, ଏଇଟି ମଧ୍ୟ ଠିକ୍ ସେହି ଧାରାରେ ଲେଖା ହୋଇଥିଲା । ବଙ୍ଗଳାର ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ଅତ୍ୟାଚାରମାନ ହେଉଥିଲା । ସ୍ଥାନୀୟ ଇଉରୋପୀୟମାନେ ସତେଅବା ଏହି କାଗଜଟି ବିରୋଧରେ ପ୍ରକାଶ୍ୟରେ ଆପଣାର କ୍ରୋଧ ପ୍ରକାଶ କରିବାଲାଗି ସୁଯୋଗର ଅପେକ୍ଷା କରି ରହିଥିଲେ । ତାହାକୁ ଉଚିତ ଶିକ୍ଷା ଦେବାଲାଗି ସୁଯୋଗ ଆସି ପହଞ୍ଚିଲା । ସ୍ଥାନୀୟ ଜନସାଧାରଣ ଏଇଥି ସକାଶେ ଭାରି ଚିନ୍ତିତ ହୋଇ ପଡ଼ିଥିଲେ ଯେ, ଏକ ସମଗ୍ର ସଂପ୍ରଦାୟର ଜୀବନ ଓ ମରଣ ସହିତ ସଂପୃକ୍ତ କୌଣସି ସମ୍ବାଦ ପ୍ରକାଶ ପାଇବାରେ ମଧ୍ୟ ଏପରି ସଂପୂର୍ଣ୍ଣ ଭାବରେ ପଥରୁଦ୍ଧ କରି ରଖାଯାଇଥିଲା ।

ସେତେବେଳେ ମୁଁ ଯାହା ଦେଖିଥିଲି ଓ ଶୁଣିଥିଲି, ସେକଥା ମନେ ପକାଇଲେ ଆଜି ଚାଳିଶବର୍ଷ ପରେ ମଧ୍ୟ ମୋର ହୃତ୍‌କମ୍ପ ଜାତ ହୁଏ । ହରିପଦ ଓ ତା'ର ବାପାମାଆଙ୍କ ଉପରେ ଯେଉଁ ଅମାନୁଷିକ ଅତ୍ୟାଚାର କରା ଯାଇଥିଲା, ସେକଥା ମୁଁ ଶୁଣିବାକୁ ପାଇଛି । ପୁଅର ପରିତ୍ରାକୁ

ସଂଗ୍ରହକରି ତାକୁ ପିତାମାତାଙ୍କର ତଣ୍ଟିବାଟେ ଜବରଦସ୍ତି ଭିତରକୁ ପୂରାଇ ଦିଆଯାଉଥିଲା । (ନିଜେ ହରିପଦର ବାପା ମୋତେ ଏକଥା ବର୍ଣ୍ଣନା କରି କହିଥିଲେ ।)

କେବଳ ସେତିକି ନୁହେଁ । ସ୍ଥାନୀୟ ବାସିନ୍ଦାଙ୍କର ଗୃହ ଉପରେ ଆକ୍ରମଣ କରାଯିବା ବ୍ୟତୀତ ସାମରିକ ଗୋଇନ୍ଦା ଅଫିସର କାପ୍ଟେନ୍ ଷ୍ଟିଭେନସନ୍‌ଙ୍କ କର୍ତ୍ତୃତ୍ୱାଧୀନରେ ସଶସ୍ତ୍ର ସୈନିକମାନଙ୍କର ଅନ୍ତତଃ ଦୁଇଟି ବାହିନୀ ସ୍ଥାନୀୟ ଖୋଲା ହାଇସ୍କୁଲମାନଙ୍କ ଉପରେ ଆସି ଆକ୍ରମଣ କରିଥିଲେ । ବିଶେଷ କରି ପାତିୟା ହାଇସ୍କୁଲ ଏବଂ ସାରୋୟାତଲି ପି. ସି. ହାଇସ୍କୁଲ ଉପରେ ଏହି ଆକ୍ରମଣ ହୋଇଥିଲା । ସେଠାରେ ବାଳକମାନଙ୍କ ଉପରେ, ଏପରିକି କେତେକ ଶିକ୍ଷକଙ୍କ ଉପରେ (ଯେଉଁମାନେ ଘଟଣାସ୍ଥଳରେ ପିଲାମାନଙ୍କୁ ରକ୍ଷା କରିବାକୁ ଚେଷ୍ଟା କରିଥିଲେ) ଆଖିବୁଜା ପ୍ରହାର, ଅତ୍ୟାଚାର ଓ ଆକ୍ରମଣମାନ ହୋଇଥିଲା ।

ଏହି ଆଚରିତ ବର୍ବରତାର କ୍ୱଚିତ କୌଣସି ପଟାନ୍ତର ଥିବ ! ଏକ ସଂପୂର୍ଣ୍ଣ ଗ୍ରାମାଞ୍ଚଳକୁ ଏପରି ବ୍ୟାପକ ଭାବରେ ଧ୍ୱସ୍ତବିଧ୍ୱସ୍ତ କରି ପକାଇବାର ଦୃଷ୍ଟାନ୍ତ ଆମକୁ ଅତି କ୍ୱଚିତ୍ ଦେଖିବାକୁ ମିଳିବ । ଅତ୍ୟାଚାରୀ ଦୁର୍ଦ୍ଧର୍ଷ ବାହିନୀର ପଦତଳେ ଏହି ଅଞ୍ଚଳଟି କେବଳ ଅସହାୟ ହୋଇ ପଡ଼ିରହିଥିଲା । ତାହା ମଧ୍ୟଯୁଗର ନାଦିରଶାହ ଏବଂ ଚେଙ୍ଗିଜ୍ ଖାଁଙ୍କର ଅତ୍ୟାଚାରକୁ ସ୍ମରଣ କରାଇ ଦେଉଥିଲା ।

ଇତ୍ୟବସରରେ ଘଟୁଥିବା ଘଟଣାଗୁଡ଼ିକ ଦ୍ୱାରା ଅତ୍ୟନ୍ତ ବିବ୍ରତ ହୋଇ ଦରିଦ୍ର ତଥା ନିରପରାଧ ଜନତାକୁ ସରକାରଙ୍କ ନିର୍ଦ୍ଦେଶରେ ଆଚରିତ ଏହି ସାମୂହିକ ଓ ସଂଗଠିତ ନିର୍ମମତାର କବଳରୁ ରକ୍ଷା କରିବାର ଏକ ଉପାୟ ବାହାର କରିବାଲାଗି କେତେଜଣ ମୁଖ୍ୟ ନାଗରିକ ଏକାଠି ବସି ଆଲୋଚନା କରିଥିଲେ । ସେମାନେ ଏହି ସଂବାଦକୁ କଲିକତାରେ ଥିବା ଦେଶପ୍ରିୟ ଯତୀନ୍ଦ୍ରମୋହନ ସେନଗୁପ୍ତ ଓ ବଙ୍ଗଳାର ଅନ୍ୟ ନେତାମାନଙ୍କ ଗୋଚରକୁ ଆଣିବାଲାଗି ସ୍ଥିର କରିଥିଲେ ଏବଂ ଏହି ଦାରୁଣ ଦୁଃସମୟରେ ସଙ୍ଗେ ସଙ୍ଗେ ଚିଟାଗଙ୍ଗ ଆସି ଅସହାୟ ଲୋକମାନଙ୍କୁ ରକ୍ଷା କରିବା ସକାଶେ ଅନୁରୋଧ ଜଣାଇଥିଲେ । ଲୁଣ୍ଠନ ମୋକଦ୍ଦମାରେ ଆତ୍ମଗୋପନ କରି ରହିଥିବା ବ୍ୟକ୍ତିମାନଙ୍କୁ ସାହାଯ୍ୟ କରୁଥିବାର ଓ ସେମାନଙ୍କୁ ନିଜ ଘରେ ସ୍ଥାନ ଦେଉଥିବାର ନାନା ଅସ୍ପଷ୍ଟ ଏବଂ ପ୍ରମାଣହୀନ ଅଭିଯୋଗମାନ ଲଗାଇ ଏଠାରେ ପ୍ରତ୍ୟେକ ହିନ୍ଦୁ ନାଗରିକର ଜୀବନ ଓ ଧନକୁ କିପରି ବିପନ୍ନ କରି ରଖା ହୋଇଥିଲା, ସେମାନେ ସେମାନଙ୍କୁ ସେହି ବିଷୟରେ ଅବଗତ କରାଇଥିଲେ ।

ଯତୀନ୍ଦ୍ରମୋହନଙ୍କ ପାଖକୁ ଗୋଟିଏ ଜରୁରୀ ତାରବାର୍ତ୍ତା ପଠାଗଲା । ଯତୀନ୍ଦ୍ରମୋହନ ଆସିବାକୁ ପ୍ରସ୍ତୁତ ଅଛନ୍ତି ବୋଲି ଉତ୍ତର ଦେଇ ଜଣାଇ ଦେଇଥିଲେ । ଏହି ସଂବାଦରେ ଜିଲ୍ଲା କଲେକ୍ଟର କେମ୍ ଏକାବେଳକେ କାତର ହୋଇଗଲେ । ସେହି ମୁହୂର୍ତ୍ତରେ ପରିସ୍ଥିତିର ସମ୍ମୁଖୀନ ହେବାକୁ ସେନଗୁପ୍ତଙ୍କ ପରି ଜଣେ ସୁବିଖ୍ୟାତ ସାଧାରଣ ନେତା ସେଠାରେ ଆସି ପହଞ୍ଚିଲେ ଅବସ୍ଥା କ'ଣ ହେବ ଚିନ୍ତା କରି ସେ ଆତଙ୍କ ଗଣିବାକୁ ଲାଗିଲେ । ଜଣେ ସ୍ଥାନୀୟ ନେତା ତ୍ରିପୁରା ଚରଣ ଚୌଧୁରୀଙ୍କୁ ସେ ସଂବାଦ ଦେଇଥିଲେ ଯେ, ଗ୍ରାମାଞ୍ଚଳରୁ ପୋଲିସ୍‌ବାହିନୀ ଏବଂ ସୈନ୍ୟମାନଙ୍କୁ ତୁରନ୍ତ ପ୍ରତ୍ୟାହାର କରି ଆଣିବାକୁ ଖବର ଦିଆଯାଇଛି ଏବଂ ପୁନର୍ବାର ଶାନ୍ତିଶୃଙ୍ଖଳା ସ୍ଥାପନ କରିବାଲାଗି ନିର୍ଭର ପ୍ରତିଶ୍ରୁତି ମଧ୍ୟ ଦିଆଯାଇଛି । ସରକାରୀ କର୍ମକର୍ତ୍ତାମାନେ ସେନଗୁପ୍ତଙ୍କର ଆସିବାକୁ ଗଡ଼ାଇ ଦିଆଯାଉ ବୋଲି ପ୍ରସ୍ତାବ ଦେଇଥିଲେ । ମାତ୍ର ଆଉ ସେଥିଲାଗି ସମୟ ନ ଥିଲା । ଯତୀନ୍ଦ୍ରମୋହନ କଲିକତାରୁ ବାହାରି ସାରିଥିଲେ । ତାଙ୍କ ସାଙ୍ଗରେ ତାଙ୍କର କେତେଜଣ ସହକର୍ମୀ, ବଙ୍ଗଳାର ତତ୍କାଳୀନ କେତେଜଣ ନେତା ମଧ୍ୟ ଚିଟାଗଙ୍ଗ ଆସୁଥିଲେ ।

**କଲିକତାକୁ ଜଣାଇ ଦିଆଗଲା**

ଇତିମଧ୍ୟରେ ଚିଟାଗଙ୍ଗର ଜଣେ କଂଗ୍ରେସ ନେତା ମହିମଚନ୍ଦ୍ର ଦାସ ଓ କବିରାଜ ଯତୀନ୍ଦ୍ର ରକ୍ଷିତ ଘଟଣାବଳୀର ଏକ ପ୍ରତ୍ୟକ୍ଷଦର୍ଶୀ ବିବରଣୀ ସହିତ କଲିକତା ଯାତ୍ରା କରିଥିଲେ । କଲିକତାରେ ପହଞ୍ଚି ମହିମଚନ୍ଦ୍ର ଯତୀନ୍ଦ୍ରମୋହନଙ୍କୁ ତାଙ୍କ ବାସଭବନରେ ସାକ୍ଷାତ କରିଥିଲେ ଏବଂ ଚିଟାଗଙ୍ଗର ହିନ୍ଦୁ ନାଗରିକମାନଙ୍କ ଲାଗି ଏତେ କ୍ଷତି ଓ ଦୁଃଖଭୋଗର କାରଣ ହୋଇଥିବା ଘଟଣାବଳୀର ବର୍ଣ୍ଣନା କରିଥିଲେ । ଏତେ କଥା ପ୍ରକୃତରେ ଘଟିଛି ଏବଂ ତଥାପି କଲିକତାର ଖବରକାଗଜ ମାନଙ୍କରେ ତାହାର ଏତେ ଅଳ୍ପ ଅଂଶ ଛପାଯାଇଛି ବୋଲି ଜାଣି ଯତୀନ୍ଦ୍ରମୋହନ ବିସ୍ମିତ ହୋଇ ଯାଇଥିଲେ । ବ୍ରିଟିଶ ପ୍ରେସ୍ କଟକଣା ପ୍ରକୃତରେ କେତେ ଅଧିକ ଦୂର ଯାଇପାରେ, ସେପର୍ଯ୍ୟନ୍ତ ସେକଥାକୁ ସେ ଆଦୌ ଉପଲବ୍ଧି କରି ନଥିଲେ । କଲିକତାର କେତେଜଣ ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ ଏକାଠି ମିଶି ସେନଗୁପ୍ତ ଆଲ୍‌ବର୍ଟ୍ ହଲ୍‌ରେ ଏକ ସାଧାରଣ ସଭା ଡ଼ାକିଲେ । ସେହି ସଭାରେ ପ୍ରଥମେ ଚିଟାଗଙ୍ଗର ମହିମ ବାବୁ ଓ ତାଙ୍କପରେ ଯତୀନ୍ଦ୍ରମୋହନ ଅତ୍ୟନ୍ତ ସଂବେଗପୂର୍ଣ୍ଣ ଭାବରେ ଚିଟାଗଙ୍ଗରେ ହୋଇଥିବା ନାନା ଅତ୍ୟାଚାର ଏବଂ ସେଠାରେ ବାସ କରିଥିବା ହିନ୍ଦୁମାନଙ୍କର ଦୟନୀୟ ଅବସ୍ଥାକୁ ବର୍ଣ୍ଣନା କରି କହିଥିଲେ । ଦରିଦ୍ର ଦୁର୍ଦ୍ଦଶାପନ୍ନ ଲୋକମାନେ କିପରି ଲୁଟତରାଜ, ଅଗ୍ନିକାଣ୍ଡ ଏବଂ ଅତ୍ୟାଚାରର ଶିକାର ହୋଇଥିଲେ, ସେମାନେ ତାହା ବୁଝାଇ ଦେଇଥିଲେ । ସେହି ସଭାସ୍ଥଳରେ ହିଁ ବିଭିନ୍ନ ଦଳଙ୍କୁ ନେଇ ଏକ ଚିଟାଗଙ୍ଗ ଅନୁସନ୍ଧାନ କମିଟି ଗଠିତ ହେଲା । ସେଥିରେ ଯତୀନ୍ଦ୍ରନାଥ ବସୁ ଅଧ୍ୟକ୍ଷ, ନିଶିଥ ସେନ ସମ୍ପାଦକ ଏବଂ ମୌଲାନା ଅକ୍ରାମ୍ ଖାଁ, ବି.ଏନ୍. ସାସମଲ ଓ ଡ଼ାକ୍ତର ଜେ.ଏମ୍. ଦାସଗୁପ୍ତ, ଟି.ସି. ଗୋସ୍ୱାମୀ, ସତ୍ୟାନନ୍ଦ ବୋଷ୍, ଡ଼ାକ୍ତର ନରେଶ ଚନ୍ଦ୍ର ସେନଗୁପ୍ତ, ଅଧ୍ୟାପକ ନୃପେନ୍ଦ୍ର ଚନ୍ଦ୍ର ବାନର୍ଜୀ ଏବଂ ହାଜୀ ଅବଦୁଲ ରସିଦ୍ ଖାଁ ସଦସ୍ୟ ରହିଲେ । ସର୍ବଶେଷ ସଦସ୍ୟଙ୍କ ସ୍ଥାନରେ ପରେ ଅସରଫ୍ ଉଦ୍ଦିନ୍ ଅହମ୍ମଦ ଚୌଧୁରୀଙ୍କୁ ନିଆ ଯାଇଥିଲା ।

ସେନଗୁପ୍ତ, ଚିଟାଗଙ୍ଗରେ ପହଞ୍ଚିବାର ଦୁଇ ଦିନ ପୂର୍ବରୁ ଜଣେ ପ୍ରମୁଖ କଂଗ୍ରେସ କର୍ମୀ ଏବଂ ସମାଜ ସେବକ ସୁଶାନ୍ତ ଚୌଧୁରୀ ଓ ମୁଁ (ମୁଁ ସେତେବେଳେ ଜଣେ ସାମ୍ବାଦିକର କାର୍ଯ୍ୟ କରୁଥିଲି) ବ୍ୟକ୍ତିଗତ ଭାବରେ ଭୟଙ୍କର ଦୃଶ୍ୟଗୁଡ଼ିକୁ ଦେଖିବା ଲାଗି ଏବଂ ସେନଗୁପ୍ତଙ୍କର ଅନୁସନ୍ଧାନ ସକାଶେ ସଂବାଦପତ୍ର ଲାଗି ଏକ ପ୍ରାଥମିକ ବିବରଣୀ ପ୍ରସ୍ତୁତ କରିବା ଲାଗି ଉପଦ୍ରୁତ ଗ୍ରାମାଞ୍ଚଳକୁ ଚାଲି ଯାଇଥିଲୁ । ଆମେ ଦିନ ତମାମ ସବୁଠାରୁ ଅଧିକ ପରିମାଣରେ ବିପର୍ଯ୍ୟସ୍ତ ହୋଇଥିବା ଅନ୍ତତଃ ପାଞ୍ଚଗୋଟି ଗ୍ରାମ ବୁଲି ଦେଖିଥିଲୁ । ପୋଲିସ୍ ଓ ସୈନ୍ୟବାହିନୀ ଆକ୍ରମଣ କରି ଧ୍ୱଂସ କରି ଦେଇଥିବା ଏବଂ ନିଆଁ ଲଗାଇ ପୋଡ଼ି ଦେଇଥିବା କେତେକ ଗୃହ ଆମର ଦୃଷ୍ଟିଗୋଚର ହୋଇଥିଲା । ପ୍ରକୃତରେ ତାହା ଏକ ଆତଙ୍କଦାୟକ ଦୃଶ୍ୟ ଥିଲା । ନିରୀହ ଜନସାଧାରଣ, ପିଲା ଓ ବଡ଼, ନାରୀ ଓ ଶିଶୁ, ଏଥିରୁ କେହି ରକ୍ଷା ପାଇ ନଥିଲେ । ଆମେ ଶୁଣିଥିବା କାହାଣୀମାନ ଆମର ରକ୍ତକୁ ତତାଇ ଦେଉଥିଲା । ଅନେକ ଲୋକଙ୍କର ଦେହ ଉପରେ ଆଘାତ ହୋଇଥିଲା, ଏସବୁ ଏବେସୁଦ୍ଧା ଶୁଖି ନଥିଲା । ପୋଲିସ୍ ବାଡ଼ି ଏବଂ ଗୁର୍ଖା 'କୁକ୍‌ରି' ମାନ ଅତି ନିର୍ମମ ଭାବରେ ଚାଲିଥିଲା । ଭାଗ୍ୟହୀନ ଲୋକମାନଙ୍କୁ ଦଉଡ଼ି ଦ୍ୱାରା ଗଛରେ ବାନ୍ଧି ପାଶବିକ ଭାବରେ ପ୍ରହାର କରା ଯାଇଥିଲା । ଆମେ ସେହିସବୁ ଦଉଡ଼ିକୁ ତଥାପି ଗଛମାନଙ୍କରେ ବନ୍ଧା ହୋଇ ରହିଥିବାର ଦେଖିବାକୁ ପାଇଲୁ । ପୋଲିସ୍ ସାହେବ ମଧ୍ୟ ସାନ, ବଡ଼ କେତେ କେତେ ଲୋକଙ୍କୁ ଗୋଇଠା ମାରି ଆପଣା ଲାଗି ଏକ ଭୂମିକା ଗ୍ରହଣ କରିଥିଲେ । ଅନେକ ସ୍ଥାନରେ ନିରୀହ ବ୍ୟକ୍ତିମାନଙ୍କର ରକ୍ତ ତଥାପି ଶୁଖି ନଥିଲା । ଆମ

ଆଖି ଆଗରେ ଲୁଟତରାଜ ଏବଂ ଅଗ୍ନିକାଣ୍ଡର କବଳରେ ପଡ଼ିଥିବା କେତେକେତେ ଗୃହ ଆଁ କରି ଅନାଇ ରହିଥିଲେ ଏବଂ ଏହି ଅତ୍ୟାଚାରର ଅଭ୍ରାନ୍ତ ପ୍ରମାଣ ଯୋଗାଇ ଦେଉଥିଲେ । ଏପରି ଗୋଟିଏ ଆଖି ନଥିଲା, ଯେଉଁଥିରୁ କି ଲୁହ ବୋହି ନଥିଲା । ଚତୁର୍ଦ୍ଦିଗରେ ଦୁଃଖଭୋଗ ଏବଂ ଆତଙ୍କ ବ୍ୟାପ୍ତ ହୋଇ ରହିଥିଲା ।

## ସେନଗୁପ୍ତଙ୍କ ଦଳ ଆସି ପହଞ୍ଚିଲେ

ଶ୍ରୀଯୁକ୍ତ ସେନଗୁପ୍ତ ଏବଂ ଅନୁସଂନ୍ଧାନ କମିଟିର କେତେକ ସଦସ୍ୟ ଆସି ଅଚିରେ ଚିଟାଗଙ୍ଗ ଠାରେ ପହଞ୍ଚିଲେ(ସେପ୍ଟେମ୍ବର 7) । ଏହି ପ୍ରଥମ ଘଟଣାଟିରୁ ହିଁ ଉଲ୍ଲେଖଯୋଗ୍ୟ ଅନେକ ଘଟଣାର ଏକ କ୍ରମ ଆରମ୍ଭ ହୋଇଗଲା । ଯତୀନ୍ଦ୍ରମୋହନ ଏବଂ ଅନୁସନ୍ଧାନ କମିଟି ଯେତେବେଳେ ଡାକଗାଡ଼ି ଯୋଗେ ପାହାଡ଼ଟାଲି ଷ୍ଟେସନ୍‌ରେ ଆସି ପହଞ୍ଚିଲେ, ସେତେବେଳେ ସବ୍‌ଡ଼ିଭିଜନାଲ୍ ମାଜିଷ୍ଟ୍ରେଟ୍ ତାଙ୍କୁ ତାଙ୍କ ଡ଼ବା ଭିତରେ ଯାଇ ସାକ୍ଷାତ କରିଥିଲେ ଏବଂ ସେଠାରେ ଅଟକି ସେହି ଷ୍ଟେସନରେ ଆସି ତାଙ୍କଲାଗି ଅପେକ୍ଷା କରିଥିବା ଜିଲ୍ଲା ମାଜିଷ୍ଟ୍ରେଟ୍ ଏ.ଏଚ୍. କେମ୍ ଆଇ. ସି. ଏସ୍‌ଙ୍କ ସହିତ ଦେଖା କରିବାଲାଗି ଅନୁରୋଧ କଲେ । ମାତ୍ର ଶ୍ରୀଯୁକ୍ତ ସେନଗୁପ୍ତଙ୍କର ହୃଦୟ ସେତେବେଳେ ଯନ୍ତ୍ରଣା ଏବଂ ଉଦ୍‌ବେଗରେ ଆର୍ତ୍ତନାଦ କରିବାରେ ଲାଗିଥିଲା । ଅଧବାଟରେ ଓହ୍ଲାଇ ସେ ଏପରି ଆକସ୍ମିକ ଭାବରେ କଲେକ୍ଟରଙ୍କ ସହିତ ଦେଖା କରିବାକୁ ଆପାତତଃ ଆଦୌ ପ୍ରସ୍ତୁତ ନଥିଲେ । ବଙ୍ଗର ନେତା ତେଣୁ ତତ୍‌କ୍ଷଣାତ୍ ଭାରି ତୀକ୍ଷ୍ଣ ଭାବରେ ଉତ୍ତର ଦେଇଥିଲେ "ମାତ୍ର, ନିଜ ଲୋକମାନଙ୍କ ସହିତ ଦେଖାକରିବା ପୂର୍ବରୁ ମୁଁ ହଠାତ୍ ଏଠାରେ ମାଜିଷ୍ଟ୍ରେଟ୍‌ଙ୍କୁ ଦେଖା କରିପାରିବି ବୋଲି ଆପଣ କିପରି ଆଶା କରୁଛନ୍ତି ? ଆପଣ ବରଂ ମାଜିଷ୍ଟ୍ରେଟ୍ ମହୋଦୟଙ୍କୁ କହିବେ ଯେ, ସେ ମୋର ଏହି ଅନୁସନ୍ଧାନ କମିଟି ଆଗରେ ସାକ୍ଷ୍ୟ ଦେବାଲାଗି ଯଥାରୀତି ପ୍ରସ୍ତୁତ ହୋଇ ରହିବେ । ଆପଣଙ୍କୁ ଧନ୍ୟବାଦ" । କହିବା ବାହୁଲ୍ୟ, ଦୁର୍ଜ୍ଜେୟ ଏସ୍.ଡ଼ି.ଓ. ତାଙ୍କ ଉପର ହାକିମଙ୍କ ପାଖକୁ ଫେରି ଯାଇଥିଲେ । ପୂର୍ବରୁ ତାହା ହୃଦୟଙ୍ଗମ କରି ନ ଥିଲେ ଦିଲ୍ଲୀ ମାଜିଷ୍ଟ୍ରେଟ୍ ଅନ୍ତତଃ ସେତେବେଳେ ହୃଦୟଙ୍ଗମ କରିଥିବେ ଯେ ଯତୀନ୍ଦ୍ରମୋହନ ଆଦୌ ଜଣେ ନରମ ମଣିଷ ନୁହନ୍ତି । ପ୍ରାୟ ଦଶବର୍ଷ ପୂର୍ବେ ବାରଦ୍ୱର ସହିତ ତାଙ୍କ ଦ୍ୱାରା ପରିଚାଳିତ ବି.ଓ.ସି. ଏବଂ ଆସାମ ବଙ୍ଗଳା ରେଳବାଇ କର୍ମଚାରୀ ଧର୍ମଘଟ ସମୟରେ ଏହି ଯତୀନ୍ଦ୍ରମୋହନ ହିଁ ଇଉରୋପୀୟ ତଥା ବ୍ରିଟିଶ୍ ହାକିମମାନଙ୍କୁ କେତେ କେତେ ଉନିଦ୍ର ରଜନୀ ଯାପନ କରିବାରେ ନିମିତ୍ତରୂପେ କାର୍ଯ୍ୟ କରିଥିଲେ ।

ସେନଗୁପ୍ତ ଏବଂ ଚିଟାଗଙ୍ଗ ଅନୁସନ୍ଧାନ କମିଟିରେ ଥିବା ତାଙ୍କର ସହକର୍ମୀମାନେ ପ୍ରଥମ ଦୁଇଦିନ ବ୍ୟକ୍ତିଗତ ଭାବରେ ପ୍ରତ୍ୟେକ ଗୃହ ଏବଂ ବ୍ୟବସାୟ ସଂସ୍ଥାମାନ ବୁଲି ଦେଖିବାକୁ ଯାଉଥିଲେ ଏବଂ ମର୍ମନ୍ତୁଦ ଘଟଣଗୁଡ଼ିକର ଦାଉକୁ ସହିଥିବା ଓ ନିଜେ ସେଗୁଡ଼ିକୁ ଦେଖିଥିବା ବ୍ୟକ୍ତିମାନଙ୍କର ବିବୃତିଗୁଡ଼ିକୁ ସଂଗ୍ରହ କରିଥିଲେ । ସହରର ତଦନ୍ତ ଶେଷ ହେବା ପରେ ସେନଗୁପ୍ତ ଓ ନୃପେନ୍ଦ୍ର ବାନର୍ଜି ମଫସଲ ଅଞ୍ଚଳର କ୍ଷତିଗ୍ରସ୍ତ ଗ୍ରାମଗୁଡ଼ିକୁ ଗଲେ । ସେତେବେଳେ ବର୍ଷାଋତୁ ହୋଇଥାଏ । ଗାଁର ରାସ୍ତାଗୁଡ଼ିକ କାଦୁଅରେ ପଚପଚ ହୋଇ ରହିଥାଏ, ସ୍ଥାନେ ସ୍ଥାନେ ଆଣ୍ଠୁଏ ପାଣିରେ ପଶିଯିବାକୁ ହେଲା । 'ଯତିନ୍ ବାରିଷ୍ଟର' ଓ 'ମାଷ୍ଟର ମହାଶୟ'- ପ୍ରିୟ ନେତା ଦ୍ୱୟଙ୍କୁ ଲୋକମାନେ ସେହି ନାମରେ ଡ଼ାକୁଥିଲେ- ସବୁପ୍ରକାର ଅସୁବିଧାକୁ ଆଡ଼େଇ ଦେଇ ସହକର୍ମୀମାନଙ୍କ ସହିତ ଚାରିଆଡ଼େ ବୁଲି ଆପଣାର କର୍ତ୍ତବ୍ୟ କରିଥିଲେ । ସେମାନଙ୍କୁ ବାହିନେବା ପାଇଁ ପାଲିଙ୍କି ସଜ ହୋଇ ରହିଥିଲା,

ମାତ୍ର ନେତୃବୃନ୍ଦ ଚାଲି ଚାଲି ଯାଇଥିଲେ । ସେମାନେ ଦ୍ୱାର ଦ୍ୱାର ବୁଲି ଦୁଃଖରେ ପଡ଼ିଥିବା ପ୍ରତ୍ୟେକ ପରିବାରକୁ ଭେଟିଲେ, ସେଠାରେ ଲୋକମାନଙ୍କ ସହିତ କଥାବାର୍ତ୍ତା କଲେ ଏବଂ ପୋଲିସ୍ ତଥା ସୈନ୍ୟବାହିନୀର ଅତ୍ୟାଚାର ସହିଥିବା ପ୍ରତ୍ୟେକଙ୍କ ଠାରୁ ସେମାନଙ୍କ କାହାଣୀ ଶୁଣିଥିଲେ । ଚରମ ନୃଶଂସତାର ପ୍ରତ୍ୟକ୍ଷ ସଙ୍କେତ ଏବଂ ମଣିଷ ପ୍ରତି ମଣିଷର ଅମାନୁଷିକ ଆଚରଣର ଦୁଃଖଦାୟକ ପ୍ରମାଣମାନ ଦେଖି ନେତାମାନେ ସ୍ତମ୍ଭୀଭୂତ ହୋଇ ଯାଇଥିଲେ । ସେମାନେ ଦରିଦ୍ର ନିର୍ଦ୍ଦୋଷ ଲୋକମାନଙ୍କୁ ଭେଟିଲେ, ବିଶେଷ ଭାବରେ ଦୁଃଖରେ ପଡ଼ିଥିବା ନାରୀମାନଙ୍କ ପାଖକୁ ଗଲେ; ଅପୂରଣୀୟ ଭାବରେ କ୍ଷତିଗ୍ରସ୍ତ ଓ ବିଧ୍ୱସ୍ତ ହୋଇ ଯାଇଥିବା ଘରଗୁଡ଼ିକର ଦୁଃଖଦାୟକ ଦୃଶ୍ୟ ମଧ୍ୟ ସେମାନଙ୍କର ଆଖିରେ ପଡ଼ିଥିଲା ।

ସେନଗୁପ୍ତ ଏବଂ ତାଙ୍କର ଦଳ ଗ୍ରାମାଞ୍ଚଳରେ ଦୁଇଦିନ ରହିଲେ । ସେ ଯାହାସବୁ ଦେଖିଲେ, ତାହା ତାଙ୍କୁ ଗଭୀର ଭାବରେ ସ୍ପର୍ଶ କରିଥିଲା ଓ ତାଙ୍କର ଆତ୍ମା ଏଥିରେ ଅତ୍ୟନ୍ତ ବିଚଳିତ ହୋଇ ପଡ଼ିଥିଲା । ପାଖରେ ଥିବା ଲୋକମାନଙ୍କୁ ସେ କହିଥିଲେ ଯେ ଏହିସବୁ ଅତ୍ୟାଚାର ପଛରେ ହୁଏତ ଭଗବାନଙ୍କର ହାତ ରହିଥିଲା । ବ୍ରିଟିଶ୍ ଶାସନକର୍ତ୍ତାମାନେ କିପରି ସ୍ୱୟଂ ସାଂପ୍ରଦାୟିକ ବିକ୍ଷୁବ୍ଧତାମାନ ସୃଷ୍ଟି କରୁଥିଲେ ଓ ସେଗୁଡ଼ିକୁ ଉପହିତ କରୁଥିଲେ ଏବଂ ସର୍ବତ୍ର ସ୍ୱାଧୀନତା-ସଂଗ୍ରାମୀମାନଙ୍କ ଉପରେ କିପରି ଉଲଗ୍ନ ଅତ୍ୟାଚାର ଚାଲିଥିଲା, ଏହାଦ୍ୱାରା ସେସବୁ ପୂର୍ଣ୍ଣ ଭାବରେ ପ୍ରମାଣିତ ହୋଇଗଲା । ଏହିପରି ଅତ୍ୟାଚାରମାନ ‘‘ବ୍ରିଟିଶ୍ ରାଜତ୍ୱର ଶବାଧାରରେ ଶେଷ କଣ୍ଟାଗୁଡ଼ିକ’’ ପରି କାର୍ଯ୍ୟ କରିବ ବୋଲି ସ୍ୱର୍ଗତ ଲାଲା ଲଜପତ ରାୟ କରିଥିବା ଐତିହାସିକ ଭବିଷ୍ୟବାଣୀଟି ତାଙ୍କର ମନେ ପଡ଼ିଯାଇଥିଲା । ସାଇମନ କମିଶନ ବିରୋଧରେ ଲାହୋର ଠାରେ ଏକ ଶୋଭାଯାତ୍ରାରେ ନେତୃତ୍ୱ ଦେଉଥିବା ସମୟରେ ଲାଲାଜୀଙ୍କ ଉପରେ ଲାଠିମାଡ଼ ହୋଇଥିଲା ଓ ସିଏ ସେହି ସମୟରେ ଏକଥା କହିଥିଲେ । ତାଙ୍କର ସେହି ବାଣୀ ପ୍ରକୃତରେ ଏକ ସତ୍ୟବାଣୀରେ ପରିଣତ ହେଲା ।

ଚିଟାଗଙ୍ଗ ଗଣ୍ଡଗୋଳର ଅସଲ ସ୍ୱରୂପ ବିଷୟରେ ସେନଗୁପ୍ତ ପୂର୍ବରୁ ଯେଉଁ ବିବୃତି ଦେଇଥିଲେ, ଗ୍ରାମାଞ୍ଚଳର ଗସ୍ତମାନ ଶେଷ କରିବା ପରେ ତାଙ୍କ ଆଗରେ ତାହାହିଁ ସତ୍ୟ ବୋଲି ପ୍ରମାଣିତ ହୋଇ ଯାଇଥିଲା । ସେ ଏହି ଲେଖକକୁ ତାହାର ଏକ ବିଶେଷ ବିବରଣୀ ପ୍ରସ୍ତୁତ କରିବା ଲାଗି ନିର୍ଦ୍ଦେଶ ଦେଇଥିଲେ । ଏଗୁଡ଼ିକ ପୋଲିସ୍ ଏବଂ ସୈନ୍ୟବହିନୀ ଦ୍ୱାରା ହୋଇଥିବା ଅତ୍ୟାଚାରଗୁଡ଼ିକର ହିଁ କାହାଣୀ ଥିଲା ଏବଂ ସରକାର ସେଗୁଡ଼ିକର ଯେପରି ବିବରଣୀ ଦେଉଥିଲେ, ଆଦୌ ସାଂପ୍ରଦାୟିକ ଗଣ୍ଡଗୋଳ ନ ଥିଲା । ସେ ଶେଷ ପର୍ଯ୍ୟନ୍ତ ହିଁ ଏହି ଭୟାବହତା ସହିତ ସଂଗ୍ରାମ କରିବେ ବୋଲି ଘୋଷଣା କରିଥିଲେ ଏବଂ ଅପରାଧ କରିଥିବା ବ୍ୟକ୍ତିମାନେ ଯେ କଦାପି ଶାସ୍ତି ନ ପାଇ ପଳାଇ ଯିବେ ନାହିଁ, ସେକଥା ସେ ଅବଶ୍ୟ ଦେଖିବେ ବୋଲି କହିଥିଲେ । ଏକ ଅଗ୍ନିମୟ ସ୍ୱରରେ ସେ କହିଥିଲେ ଯେ, ବ୍ରିଟିଶ୍ ଶକ୍ତିକୁ ଅବଶ୍ୟ ଏହି ଭୂମି ଛାଡ଼ି ଚାଲିଯିବାକୁ ପଡ଼ିବ ।

କଲିକତା ଫେରିଯିବା ପୂର୍ବରୁ ସେନଗୁପ୍ତ କମିଶନରଙ୍କ ସହିତ ସାକ୍ଷାତ କରିଥିଲେ ଏବଂ ଘଟଣାବଳୀ ବିଷୟରେ ନିଜେ କରିଥିବା ଟିକିନିଖି ତଦନ୍ତ ବିଷୟରେ ତାଙ୍କୁ ଜଣାଇ ଦେଇଥିଲେ । ଯଥାର୍ଥ ଭାବରେ ଚିନ୍ତା କରୁଥିବା ଜଣେ ବ୍ରିଟେନ୍‌ବାସୀ ହିସାବରେ ସେ ନ୍ୟାୟର ସହିତ ଏହାର ପ୍ରତିକାର କରିବେ ବୋଲି ସେ ତାଙ୍କୁ ଅନୁରୋଧ କରିଥିଲେ । ପରବର୍ତ୍ତୀ ବର୍ଣ୍ଣନାରୁ ଜଣାଯିବ ଯେ, କମିଶନରଙ୍କୁ ଯତୀନ୍ଦ୍ରମୋହନ କହିଥିବା ଏହିସବୁ କଥାକୁ ସେ ପ୍ରକୃତରେ ଯଥେଷ୍ଟ ଓଜନ ଦେଇ ଗ୍ରହଣ କରିଥିଲେ ।

ଯତୀନ୍ଦ୍ରମୋହନ ଏବଂ ଅନୁସନ୍ଧାନ କମିଟିର ସଦସ୍ୟମାନେ କଲିକତାକୁ ଫେରିଆସିବା ପରେ ସେପ୍ଟେମ୍ବର 13 ତାରିଖ ଦିନ କଲିକତା ଟାଉନ୍ ହଲ୍‌ରେ ଗୋଟିଏ ସାଧାରଣ ସଭା ହୋଇଥିଲା । ଏକ ଶକ୍ତିଶାଳୀ ବକ୍ତୃତା ଦେଇ ଯତୀନ୍ଦ୍ରମୋହନ ଚିଟାଗଙ୍ଗରେ ହୋଇଥିବା ଅତ୍ୟାଚାରଗୁଡ଼ିକ ବିଷୟରେ ଆପଣାର ତୀବ୍ର ଘୃଣା ବ୍ୟକ୍ତ କରିଥିଲେ ଏବଂ ସେଗୁଡ଼ିକର ନିନ୍ଦାବାଦ କରିଥିଲେ । ସେ କହିଥିଲେ ଯେ, ପ୍ରଧାନତଃ ପୋଲିସ୍ ଏବଂ ସୈନ୍ୟବାହିନୀର ସ୍ୱେଚ୍ଛାଚାରିତା ସକାଶେ ହିଁ ଏସବୁ ଘଟିଲା ବୋଲି ତାଙ୍କର ଓ ତାଙ୍କ ବନ୍ଧୁମାନଙ୍କର ସଂପୂର୍ଣ୍ଣ ହୃଦ୍‌ବୋଧ ହୋଇଛି । ଉଭରୋପୀୟ ସରକାରୀ ତଥା ବେସରକାରୀ ଲୋକମାନେ ସେମାନଙ୍କୁ ଏଥିରେ ସାହାଯ୍ୟ କରିଛନ୍ତି ଓ ଉତ୍ସାହ ଦେଇଛନ୍ତି । ବେଳେବେଳେ ତାଙ୍କର ଚକ୍ଷୁରୁ ଅଶ୍ରୁ ବିଗଳିତ ହୋଇ ଆସୁଥିଲା । ବିଶେଷ କରି ସେ ଯେତେବେଳେ ଦରିଦ୍ର ଗ୍ରାମବାସୀମାନଙ୍କ ଉପରେ ହୋଇଥିବା କୁକର୍ମ ଗୁଡ଼ିକର ବର୍ଣ୍ଣନା କରୁଥିଲେ, ସେତେବେଳେ ଆଦୌ ଲୁହ ସମ୍ଭାଳି ପାରୁ ନ ଥିଲେ । ସେ ଏବଂ ତାଙ୍କର ସହକର୍ମୀମାନେ ସାଧାରଣରେ ଯାହାସବୁ ବ୍ୟକ୍ତ କଲେ, ତାହାକୁ ମିଥ୍ୟା ବୋଲି ପ୍ରମାଣ କରିବାକୁ ସେ ସରକାରଙ୍କୁ ଆହ୍ୱାନ ଦେଇଥିଲେ ।

### ''ସରକାରଙ୍କ ସମ୍ମାନକୁ ପିଠିରୁ ଛୁରା ମରାହେଲା''- ରବୀନ୍ଦ୍ରନାଥ

ଚିଟାଗଙ୍ଗରେ ହୋଇଥିବା ଅରାଜକ ଉତ୍ତେଜନା ଏବଂ ବ୍ରିଟିଶ୍ ଅତ୍ୟାଚାରର ତୀବ୍ର ନିନ୍ଦାବାଦ କରି (ଅଗଷ୍ଟ 30-31 ସେପ୍ଟେମ୍ବର ପ୍ରଥମ ସପ୍ତାହ, 1931) ରବୀନ୍ଦ୍ରନାଥ ଠାକୁର ନିମ୍ନଲିଖିତ ବିବୃତି ଦେଇଥିଲେ:

''ଚିଟାଗଙ୍ଗ ସହର ଓ ବଙ୍ଗଳାର ଗ୍ରାମାଞ୍ଚଳରେ ଗୋଟିକ ପରେ ଗୋଟିଏ ହୋଇ ଅତି କ୍ଷିପ୍ର ଗତିରେ ନାନା ଅତ୍ୟାଚାରର ଯେଉଁ ବିସ୍ଫୋଟ ଘଟିଲା, ତାହା ଯେ କେବଳ ଗଭୀର ଦୁଃଖର କାରଣ ହୋଇଛି ତା' ନୁହେଁ, ତାହା 'ଏକ ଅସହନୀୟ ଲଜ୍ଜା ମଧ ଆଣି ଦେଇଛି । ଏହା ନିଃସନ୍ଦେହ ଭାବରେ ଏକ ଗଭୀର ପରିତାପର ବିଷୟ ଯେ, ଏହା ବ୍ରିଟିଶ୍ ସରକାରଙ୍କ ଉପରେ ରହିଥିବା ଆମର ବିଶ୍ୱାସକୁ ଅତ୍ୟନ୍ତ ଦୁର୍ବଳ କରିଦେଇଛି । ଏହିପରି ଘଟଣାମାନ ଏଡ଼େ ସହଜରେ ବାରବାର ଘଟିବାଦ୍ୱାରା ତାହାର ନୈତିକ ସମ୍ମାନର ପିଠିରେ ଛୁରିକାଘାତ କରାଯାଇଛି । ମାତ୍ର ଆମ ନିଜ ଜାତିର କୌଣସି ଏକ ଗୋଷ୍ଠୀ ଯେ ଏଡ଼େ ହୃଦୟହୀନ ଭାବରେ ଏକ ଜାତି ହିସାବରେ ଆମର ଗୌରବମୟ ସ୍ମୃତିରେ ଏପରି ବିଷ ଆଣି ଭରିଦେବେ ଏବଂ ଆମ ଜାତିର ଇତିହାସକୁ ଏପରି ଚିରକାଳ ଲାଗି ଦୂଷିତ କରିଦେଇଯିବ, ତାହା ଆମକୁ ଏକ ତୀବ୍ର ଅପମାନ ବୋଧରେ ପ୍ରକୃତରେ ଅବାକ୍ କରିଦେଉଛି ।'....

ଏକଥା ଆଦୌ ବସ୍ତୁପ୍ରକୃତି ଦ୍ୱାରା ସମର୍ଥିତ ହେଉନାହିଁ ଯେ ଏକ ବହୁଦୂରବର୍ତ୍ତୀ ଦ୍ୱୀପର ଆଉଗୋଟିଏ ଜାତି ସବୁଦିନ ସକାଶେ ଭାରତବର୍ଷକୁ ଆପଣାର ଅଧୀନ କରି ରଖିପାରିବ । ମାତ୍ର ଆମେ ହିନ୍ଦୁ ଓ ମୁସଲମାନ ସମସ୍ତେ ଗୋଟିଏ ଭୂମିର ସନ୍ତାନ ହିସାବରେ ଏକ ଦେଶସଂଘର ନିର୍ମାଣ କରିବା ପାଇଁ ସବୁଦିନ ଲାଗି ପରସ୍ପରର ପାଖରେ ହିଁ ଆସି ଠିଆହେବୁ, ଆମର ବିଜୟ ତଥା ଆମର ଲଜ୍ଜାକୁ ଏକତ୍ର ଅଙ୍ଗେ ନିଭାଇବୁ । ସେଗୁଡ଼ିକ ଲାଗି ଆମ ଭିତରୁ ଯିଏ ଦାୟୀ ହୋଇଥାଉ ପଛକେ, ଆମେ ଏକତ୍ର ହିଁ ତାହାକୁ ଭୋଗ କରିବୁ । ଏହି ହୃଦୟବିଦାରକ ସଙ୍କଟ ସମୟରେ ଆଉ ପରସ୍ପରକୁ ଦୋଷ ଦେଲେ ଓ ଭର୍ତ୍ସନା କଲେ ଆଦୌ ହେବ ନାହିଁ, ମାତ୍ର ଚାଲ ଆମେ ଈଶ୍ୱରବିଶ୍ୱାସୀ ପ୍ରତ୍ୟେକ ମୁସଲମାନ ପାଖରେ ଏହି ନିବେଦନ କରିବା ଯେ, ସେମାନଙ୍କର ନିଜର ଧର୍ମ ଏବଂ ସଂସ୍କୃତିର ମଙ୍ଗଳ ସକାଶେ ତଥା ଆମର ଏହି ରକ୍ତରଞ୍ଜିତ ମାନବତା ଦୃଷ୍ଟିରୁ

ଏହି ଅନର୍ଥର ଗତିରୋଧ କରିବାରେ ସେମାନେ ଆମକୁ ସାହାଯ୍ୟ କରନ୍ତୁ । ତା' ନହେଲେ ତାହା କ୍ରମେ ବ୍ୟର୍ଥତାର ହିଁ ଏକ ସ୍ଥାୟୀ କାରଣରେ ପରିଣତ ହୋଇଯିବ ଏବଂ ଆମର ଏହି ଦୁର୍ଭାଗ୍ୟମୟ ଦେଶ ଉପରକୁ ସମଗ୍ର ପୃଥିବୀର ରୋଷ ଏବଂ ଉପହାସକୁ ଯାଇ ଡାକି ଆଣିବ ।''

- ରବୀନ୍ଦ୍ରନାଥ ଠାକୁର

(ଅମୃତ ବଜାର ପତ୍ରିକା, ସେପ୍ଟେମ୍ବର 6, 1931)

ନିଖିଳ ଭାରତ ହିନ୍ଦୁ ମହାସଭାର ସାଧାରଣ ସମ୍ପାଦକ ପାଟନା ଠାରୁ ବଙ୍ଗଳାର ଗଭର୍ଣ୍ଣର ସାର୍ ଷ୍ଟାନଲି ଜ୍ୟାକ୍‌ସନ୍‌ଙ୍କ ପାଖକୁ ଏକ ଜରୁରୀ ତାରବାର୍ତ୍ତା ପଠାଇ ଚିଟାଗଙ୍ଗର ହିନ୍ଦୁମାନେ ଭୋଗ କରିଥିବା ଦୁର୍ଦ୍ଦଶା ବିଷୟରେ ଗଭୀର ଉଦ୍‌ବେଗ ପ୍ରକାଶ କରିଥିଲେ । ତାହାର ଉତ୍ତରରେ ଗଭର୍ଣ୍ଣରଙ୍କ ସେକ୍ରେଟାରୀ ଅସ୍ୱୀକାର କରି କହିଥିଲେ ଯେ, ''ହତ୍ୟାକାଣ୍ଡ ପରେ ହୋଇଥିବା ଲୁଟତରାଜ ଓ ଅନ୍ୟାନ୍ୟ ଗଣ୍ଡଗୋଳ ସରକାର କିମ୍ବା ସରକାରୀ ଅଫିସର୍‌ମାନଙ୍କ ଉପେକ୍ଷା ଅଥବା ଉଦାସୀନତା ଦ୍ୱାରା ହୋଇ ନଥିଲା ବା ସେଗୁଡ଼ିକ ଦ୍ୱାରା କୌଣସି ପ୍ରୋତ୍ସାହନ ପାଇ ନଥିଲା । ମହାମାନ୍ୟ ଗଭର୍ଣ୍ଣର୍‌ଙ୍କ ପାଖରେ ଯେଉଁ ଖବର ପହଞ୍ଚିଛି, ସେଥିରୁ ଜଣାଯାଉଛି ଯେ, କେବଳ ସ୍ଥାନୀୟ କର୍ତ୍ତୃପକ୍ଷଙ୍କର ଦୂରଦୃଷ୍ଟି ଏବଂ ଶକ୍ତି ବଳରେ ହିଁ ଗଣ୍ଡଗୋଳଟିକୁ ଏତେ ଶୀଘ୍ର ଦବାଇ ଦିଆଯାଇପାରିଥିଲା ।''

### ସରକାରଙ୍କୁ ଆହ୍ୱାନ

ଗଭର୍ଣ୍ଣରଙ୍କ ତରଫରୁ ଏହି ମନ୍ତବ୍ୟ ଅତ୍ୟନ୍ତ ଉତ୍ତେଜନା ସୃଷ୍ଟି କଲା । ଚିଟାଗଙ୍ଗ ଗଣ୍ଡଗୋଳର ବେସରକାରୀ ଅନୁସନ୍ଧାନ-ଗୋଷ୍ଠୀର ସଦସ୍ୟମାନେ ସଙ୍ଗେ ସଙ୍ଗେ ଆପଣାର ପ୍ରତିକ୍ରିୟା ବ୍ୟକ୍ତ କଲେ । ସେମାନେ ଗଭର୍ଣ୍ଣରଙ୍କ ପାଖକୁ ଏକ ପତ୍ର ଲେଖି ପଠାଇଲେ । ସେଥିରେ ସେମାନେ ଅନ୍ୟାନ୍ୟ ବିଷୟ ମଧ୍ୟରେ ଲେଖିଥିଲେ :

''ସାଧାରଣଙ୍କ ତରଫରୁ ବାରମ୍ବାର ଦାବି କରା ଯାଇଥିଲେ ମଧ୍ୟ ଆପଣଙ୍କର ସରକାର ଆଦୌ କୌଣସି ତଦନ୍ତ କଲା ନାହିଁ ।.....ଇତି ମଧ୍ୟରେ ଆମର ଏହି କମିଟି ଚିଟାଗଙ୍ଗ ଯାଇ ଗଣ୍ଡଗୋଳ ହୋଇଥିବା ସ୍ଥାନଗୁଡ଼ିକୁ ବୁଲି ଦେଖିଥିଲା ଏବଂ ବହୁ ସଂଖ୍ୟକ ସାକ୍ଷୀମାନଙ୍କ ଠାରୁ ସାକ୍ଷ୍ୟ ଗ୍ରହଣ କରିଥିଲା । ....ଆପଣଙ୍କର ସରକାର ଯେଉଁ ସରକାରୀ ତଦନ୍ତର ଆଦେଶ ଦେଇଥିଲେ, ତାହା ସଂଗ୍ରହ କରିଥିବା ତଥ୍ୟଗୁଡ଼ିକ ବିଷୟରେ ଜନସାଧାରଣ ଆଦୌ କିଛି ଜାଣି ନାହାନ୍ତି । ସର୍ବସାଧାରଣ ତାହା ଜାଣିବାକୁ ଅବଶ୍ୟ ଦାବି କରିବେ ବୋଲି ଆପଣ ନିଶ୍ଚୟ ଅବଗତ ଥିଲେ, ପ୍ରକୃତ ତଥ୍ୟ ବିଷୟରେ ଆଦୌ କିଛି ନ ଜାଣି ଏହି ସମସ୍ୟାଟିର କ୍ଷେତ୍ରରେ ଯେ ଆପଣ ଏକ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତ କରି ସାରିଛନ୍ତି, ଆମେ ତାହାର ଦୃଢ଼ ପ୍ରତିବାଦ କରୁଛୁ ।...... ''ସମ୍ପୂର୍ଣ୍ଣତଃ, ସ୍ଥାନୀୟ କର୍ତ୍ତୃପକ୍ଷଙ୍କର ଦୂରଦୃଷ୍ଟି ଏବଂ ଶକ୍ତି ବଳରେ ହିଁ ଗଣ୍ଡଗୋଳକୁ ଶୀଘ୍ର ଦବାଇ ଦିଆଯାଇ ପାରିଲା''- ଆପଣଙ୍କର ଏହି ବିବୃତିଟି ଆଦୌ ସତ୍ୟ ନୁହେଁ ବୋଲି ଆମେ ଘୋଷଣା କରୁଛୁ । ସେହି ବିବୃତି ଯେ କେବଳ ପ୍ରକୃତ ଘଟଣାର ବିରୁଦ୍ଧାଚରଣ କରୁଛି ତା' ନୁହେଁ, ମାତ୍ର ଏଥିରେ ଜନସାଧାରଣଙ୍କୁ ଭ୍ରାନ୍ତିରେ ପକାଇଦେବା ଲାଗି ମଧ ଏକ ବ୍ୟର୍ଥ ଚେଷ୍ଟା କରାଯାଇଛି । ଆମେ ଆପଣଙ୍କ ପାଖରେ ଦାବି କରୁଛୁ ଯେ, ଆପଣ ଏହି ବିଷୟରେ ଏକ ନିଷ୍ପକ୍ଷ ତଦନ୍ତର ବ୍ୟବସ୍ଥା କରନ୍ତୁ, ଯେଉଁଥିରେ କି ସାକ୍ଷୀମାନଙ୍କୁ ଜେରା କରିବା ଲାଗି ଜନସାଧାରଣଙ୍କୁ ସୁଯୋଗ ଦିଆଯିବ,- ସ୍ଥାନୀୟ ଶାସନବ୍ୟବସ୍ଥା ତରଫରୁ ଯେଉଁ ସାକ୍ଷୀମାନଙ୍କୁ

ଠିଆ କରାଯିବ, ସାଧାରଣ ଲୋକେ ସେମାନଙ୍କୁ ପ୍ରଶ୍ନ ପଚାରି ପାରିବେ ଏବଂ ପ୍ରମାଣମାନ ଆଣି ଦେଇପାରିବେ.....

'ଆପଣ ସମ୍ଭବତଃ ଏକଥା ଜାଣିଛନ୍ତି ଯେ, ଚିଟାଗଙ୍ଗ ଗଣ୍ଡଗୋଳରେ କ୍ଷତିଗ୍ରସ୍ତ ହୋଇଥିବା ଏକାଧିକ ବ୍ୟକ୍ତି ଯେଉଁସବୁ ଅଭିଯୋଗ ପେଶ୍ କରିଥିଲେ, ସେଥିଲାଗି ସରକାରୀ ଆଦେଶ କିଛି ମିଳି ନାହିଁ ବୋଲି ଏକ ବୈଧାନିକ କାରଣ ଦେଖାଇ ସେଗୁଡ଼ିକୁ ଅଗ୍ରାହ୍ୟ କରି ଦିଆଯାଇଛି । ଯଦି ଆପଣଙ୍କର ସରକାର ଯାବତୀୟ କାର୍ଯ୍ୟାନୁଷ୍ଠାନ ଲାଗି ଆବଶ୍ୟକ ଅନୁମତି ଦେବାକୁ ପ୍ରକୃତରେ ପ୍ରସ୍ତୁତ ଅଛନ୍ତି, ତେବେ ତଦ୍ୱାରା, ଯେଉଁ ସ୍ଥାନୀୟ ଅଫିସରମାନଙ୍କ ବିରୋଧରେ ନିର୍ଦ୍ଦିଷ୍ଟ ଅଭିଯୋଗମାନ ଅଣାଯାଇଛି, ସେମାନଙ୍କୁ ମଧ୍ୟ ସେହି ଅଭିଯୋଗଗୁଡ଼ିକରୁ ମୁକ୍ତ ହେବାର ଏକ ସୁଯୋଗ ଅବଶ୍ୟ ମିଳିବ ।''

ନିଜ ସେକ୍ରେଟାରୀଙ୍କ ଜରିଆରେ ଗଭର୍ଣ୍ଣର ସେନଗୁପ୍ତଙ୍କ ନିକଟକୁ ଏକ ଉତ୍ତର ପଠାଇଥିଲେ । ସେଥିରେ ସେ ତାଙ୍କର ସେହି ପୂର୍ବ କଥନଟିର ପକ୍ଷ ସମର୍ଥନ କରିବାକୁ ହିଁ ଏକ ଦୁର୍ବଳ ଚେଷ୍ଟା କରିଥିଲେ, ମାତ୍ର ଏକ ଉଦ୍‌ବେଳିତ ଜାତିର ମନ ଉପରେ ତାହାର ଆଦୌ କୌଣସି ପ୍ରଭାବ ପଡ଼ିଲା ନାହିଁ ।

## ସେନଗୁପ୍ତ ସରକାରଙ୍କୁ ଆହ୍ୱାନ ଦେଲେ

ଚିଟାଗଙ୍ଗର ଅତ୍ୟାଚାର ବିଷୟରେ ସେନଗୁପ୍ତ ବଙ୍ଗଳା ସରକାରଙ୍କୁ ଯେଉଁ ସାହସିକ ଆହ୍ୱାନ ଦେଇଥିଲେ, 1931 ସେପ୍ଟେମ୍ବର 16 ତାରିଖର କଲିକତାରୁ ପ୍ରକାଶିତ ଜାତୀୟତାବାଦୀ ଦୈନିକ 'ଅମୃତ ବଜାର' ପତ୍ରିକାରେ ତାହା ପ୍ରକାଶ ପାଇଥିଲା । ତାହାର ଗୋଟିଏ ଅଂଶ ନିମ୍ନରେ ଉଦ୍ଧାର କରାଯାଉଛି:

''.....ଶ୍ରୀଯୁକ୍ତ ସେନଗୁପ୍ତ ଏତିକିରେ ରହିଗଲେ ନାହିଁ । ସେ ଜିଲ୍ଲା ମାଜିଷ୍ଟ୍ରେଟ୍ ଶ୍ରୀ କେମ୍‌ଙ୍କ ବିରୋଧରେ ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ଏକ ଅଭିଯୋଗ କରିଥିଲେ ଏବଂ ତାଙ୍କୁ (ଶ୍ରୀ ସେନଗୁପ୍ତ) ସେହି ଅପରାଧରେ ରାଜଦ୍ରୋହ ଏବଂ କୁତ୍ସାରଟନାର ଅଭିଯୋଗ କରି ସେ ନ୍ୟାୟାଳୟରେ ମୋକଦ୍ଦମା କରନ୍ତୁ ବୋଲି ଆହ୍ୱାନ ଜଣାଇଥିଲେ ।

''.....ଶ୍ରୀ କେମ୍‌ଙ୍କ ବିରୋଧରେ ଶ୍ରୀଯୁକ୍ତ ସେନଗୁପ୍ତ ଯେଉଁସବୁ ଅଭିଯୋଗ ଆଣିଥିଲେ, ସେଗୁଡ଼ିକ ଅତିମାତ୍ରାରେ ଗୁରୁତ୍ୱପୂର୍ଣ୍ଣ । ବସ୍ତୁତଃ, କୌଣସି ଜିଲ୍ଲାର ପ୍ରଶାସନିକ ମୁଖ୍ୟଙ୍କ ବିରୋଧରେ ଜଣେ ସାଧାରଣ ବ୍ୟକ୍ତି ଏଭଳି ଅଭିଯୋଗମାନ କ୍ୱଚିତ୍ ଆଣିଥିବ । ଶ୍ରୀଯୁକ୍ତ ସେନଗୁପ୍ତ ଜଣେ ଅଖିଳ ଭାରତୀୟ ସ୍ତରର ନେତା । ଜଣେ ଆଇନଜୀବୀ ହିସାବରେ ମଧ୍ୟ ତାଙ୍କର ଯଥେଷ୍ଟ ଅଭିଜ୍ଞତା ରହିଛି ଏବଂ ତେଣୁ ନିଜ କାର୍ଯ୍ୟର ପରିଣାମଗୁଡ଼ିକ ବିଷୟରେ ସେ ନିଶ୍ଚୟ ସଂପୂର୍ଣ୍ଣଭାବରେ ସଚେତନ ରହିଥିବେ । ସେହି କାରଣରୁ, ଯଦି ସେ ଚିଟାଗଙ୍ଗର ଜିଲ୍ଲାସ୍ତରୀୟ କର୍ତ୍ତାମାନଙ୍କୁ ଏହିପରି ସଂଗ୍ରାମର ଆହ୍ୱାନ ଦେଉଛନ୍ତି ଓ ସେମାନଙ୍କ ଜରିଆରେ ସରକାରଙ୍କୁ ମଧ୍ୟ ସଂଶ୍ଳିଷ୍ଟ କରାଉଛନ୍ତି, ତେବେ ନିଜ ଅଭିଯୋଗଟିର ବଳକୁ ସେ ନିଶ୍ଚୟ ସମ୍ପୂର୍ଣ୍ଣ ଭଲ ଭାବରେ ଜାଣିଥିବେ । ସରକାର ଏହି ଆହ୍ୱାନଟିକୁ କିପରି ଭାବରେ ଗ୍ରହଣ କରୁଛନ୍ତି ଏବଂ ସାଧାରଣଙ୍କ ଚକ୍ଷୁରେ ନିଜକୁ ଅଭିଯୋଗଗୁଡ଼ିକରୁ ମୁକ୍ତ କରି ପାରୁଛନ୍ତି ତାହା ଦେଖିବା ପ୍ରକୃତରେ ଅତ୍ୟନ୍ତ ଆଗ୍ରହୋଦ୍ଦୀପକ ହେବ ।''

**କର୍ପୋରେସନ୍ ପକ୍ଷରୁ ନିନ୍ଦା**

ଏକ ସାଂପ୍ରତିକ ଜାତୀୟ ଘଟଣାରୂପେ ଚିଟାଗଙ୍ଗର ପରିସ୍ଥିତି ସେପ୍ଟେମ୍ବର 28 ତାରିଖ ଦିନ କଲିକତା କର୍ପୋରେସନ୍‌ରେ ମଧ୍ୟ ଆଲୋଚିତ ହୋଇଥିଲା । ତତ୍କାଳୀନ ମେୟର ବି. ସି. ରାୟ ସେଦିନ ସଭାପତିତ୍ୱ କରୁଥିଲେ । ନିର୍ଦ୍ଦୋଷ ହିନ୍ଦୁମାନଙ୍କ ଉପରେ ହୋଇଥିବା ଏହି ଆକସ୍ମିକ ଲୁଟତରାଜ ଏବଂ ଅଗ୍ନିକାଣ୍ଡ ପ୍ରଭୃତିର ଘୋର ନିନ୍ଦା କରି ଶରତଚନ୍ଦ୍ର ବୋଷ ଗୋଟିଏ କଡ଼ା ବକ୍ତୃତା ଦେଇଥିଲେ ଏବଂ ଚିଟାଗଙ୍ଗ ଅତ୍ୟାଚାରର ଏକ ନିଷ୍ପକ୍ଷ ତଦନ୍ତ ହେଉ ବୋଲି ପ୍ରସ୍ତାବ ଆଗତ କରିଥିଲେ । ସେହି ସମୟରେ ସେନଗୁପ୍ତ କର୍ପୋରେସନ୍‌ର ଜଣେ ସଦସ୍ୟ ଥିଲେ । ସେ ଆଉଏକ ଚମତ୍କାର ଭାଷଣ ଦେଇଥିଲେ, ତାହା ସଚେତନ ଭାବରେ ତଥ୍ୟସଂବଳିତ ଥିଲା ଓ ତାଙ୍କର ବ୍ୟକ୍ତିଗତ ଅନୁଭବକୁ ଭିତ୍ତିକରି ପ୍ରଦତ୍ତ ହୋଇଥିଲା । ଅନ୍ୟାନ୍ୟ ବିଷୟ ମଧ୍ୟରେ, ପ୍ରସ୍ତାବଟିର ସମର୍ଥନ କରି ସେ କହିଲେ -

> ''ଘଟଣାଗୁଡ଼ିକ ଯେଉଁଠାରେ ଘଟିଥିଲା, ମୁଁ ବ୍ୟକ୍ତିଗତ ଭାବରେ ସେହିସବୁ ସ୍ଥାନକୁ ଯାଇ ଦେଖିଛି ।.... ତେଣୁ ମୁଁ ଭାବୁଛି, ଏ ବିଷୟରେ ଆଉ ଅଧିକ କୌଣସି ତଦନ୍ତ ହେବାର ପ୍ରୟୋଜନ ନାହିଁ ।....
>
> ମୁଁ ଭଲ କରି ଜାଣେ ଯେ, ପ୍ରସ୍ତାବର ଦ୍ୱିତୀୟ ଭାଗଟି (କମିଟିରେ ସାଧାରଣ ବ୍ୟକ୍ତିଙ୍କ ଲାଗି ସ୍ଥାନ ରହୁ ବୋଲି ଦାବି କରି) ସରକାରଙ୍କର କୌଣସି ଦୃଷ୍ଟି ଆକର୍ଷଣ କରିବ ନାହିଁ । ତଥାପି ଆମେ ଆମର କର୍ତ୍ତବ୍ୟ କରିଯିବା । ବେସରକାରୀ ଅନୁସନ୍ଧାନ କମିଟି ଆଜି ଉପରବେଳା ନିଜର ରିପୋର୍ଟଟିକୁ ବାହାର କରିଛନ୍ତି । ମୁସଲମାନ ଭାଇମାନଙ୍କୁ ପ୍ରଶଂସା କରି ଏକଥା କୁହାଯିବ ଯେ, ସେମାନଙ୍କ ଭିତରେ ଆଗରୁ ପ୍ରଚାର କରା ଯାଇଥିଲେ ମଧ୍ୟ ଜଣେହେଲେ ମୁସଲମାନ ଏହି ଲୋକମାନଙ୍କୁ ସାହାଯ୍ୟ କରିବାକୁ ଆସି ନାହାନ୍ତି ।... କେବଳ ଯେଉଁ କେତୋଟି ଘଟଣାରେ ମୁସଲମାନମାନେ ଭାଗ ନେଇଛନ୍ତି, ସେଗୁଡ଼ିକ ହେଉଛି ସୋମବାର (ଅଗଷ୍ଟ 31) ଦିନ ଖରାବେଳେ ଘଟିଥିବା ଦୋକାନଗୁଡ଼ିକୁ ଲୁଟି କରିବାର ଘଟଣା । କେବଳ ସେହି କ୍ଷେତ୍ରରେ ହିଁ ଆମେ ସାଂପ୍ରଦାୟିକ ଶତ୍ରୁତାର କେତେକ ଆପାତ ଦୃଷ୍ଟାନ୍ତ ପାଇଥିଲୁ । ମାତ୍ର, ପରୀକ୍ଷା କରି ଆମେ ଜାଣିବାକୁ ପାଇଲୁ ଯେ, କେବଳ କେତେକ ଗୁଣ୍ଡା ଶ୍ରେଣୀୟ ଲୋକ ସେକଥା କରିଛନ୍ତି । ଅନୁସନ୍ଧାନ ଫଳରେ ଆମେ ଏହିସବୁ ସିଦ୍ଧାନ୍ତରେ ଆସି ପହଞ୍ଚିଥିଲୁ । ବଙ୍ଗଳାର ଲୋକମାନେ ମଧ୍ୟ ସେହିସବୁ ସିଦ୍ଧାନ୍ତକୁ ଠିକ୍ ବୋଲି ଗ୍ରହଣ କରିଛନ୍ତି....''

ବେସରକାରୀ ଚିଟାଗଙ୍ଗ ଅନୁସନ୍ଧାନ କମିଟିର ରିପୋର୍ଟ୍ କଲିକତାରେ ପ୍ରକାଶିତ ହୋଇଥିଲା । (ସେପ୍ଟେମ୍ବର 28) ସମସ୍ତ ଜଗତକୁ ତ୍ରସ୍ତ କରି ଦେଇଥିବା ଜଘନ୍ୟ ଘଟଣାଗୁଡ଼ିକ ବିଷୟରେ ଟିକିନିଖି ସବୁ ତଥ୍ୟ ଜାଣିବାକୁ ପାଇ ଭାରତର ସଂବାଦପତ୍ର ଓ ଜନସାଧାରଣ ଉତ୍ତେଜିତ ହୋଇ ଉଠିଥିଲେ । ମାତ୍ର, ସେନଗୁପ୍ତ ଦେଇଥିବା ଆହ୍ୱାନ ଏବଂ ତାଙ୍କରି ନେତୃତ୍ୱରେ ଗଠିତ ଅନୁସନ୍ଧାନ କମିଟିର ରିପୋର୍ଟ ବିଷୟରେ ସରକାର ନୀରବ ରହିଗଲେ ।

ଇତ୍ୟବସରରେ ଡିଭିଜନାଲ୍ କମିଶନର ନେଲସନ ଏବଂ ବଙ୍ଗଳାର ପୋଲିସ୍ ଆଇ. ଜି. ଚିଟାଗଙ୍ଗ ଘଟଣାଗୁଡ଼ିକ ବିଷୟରେ ଏକ ସରକାରୀ ତଦନ୍ତ କରିଥିଲେ । ସେମାନେ ସରକାରୀ ଓ ବେସରକାରୀ ବ୍ୟକ୍ତିମାନଙ୍କର ବିବୃତି ଲିପିବଦ୍ଧ କରିଥିଲେ । ବେସରକାରୀ ବ୍ୟକ୍ତିମାନଙ୍କ ମଧ୍ୟରେ ପ୍ରତ୍ୟକ୍ଷଦ୍ରଷ୍ଟା ଓ କ୍ଷତିଗ୍ରସ୍ତ ଲୋକମାନେ ମଧ୍ୟ ରହିଥିଲେ । ଏମାନଙ୍କ ଭିତରୁ ଅନେକ ବ୍ୟକ୍ତି ଆଗରୁ ବେସରକାରୀ ଅନୁସନ୍ଧାନ କମିଟି ଆଗରେ ମଧ୍ୟ ସାକ୍ଷ୍ୟ ଦେଇଥିଲେ । ଦୁଇଟିଯାକ ତଦନ୍ତରେ ପ୍ରଦତ୍ତ ବିବୃତିଗୁଡ଼ିକ ପ୍ରାୟ ଗୋଟିଏ ଧରଣର ଥିଲା । (ମୁଁ ସେଠାରେ ଉପସ୍ଥିତ ଥିଲି)

ସେନଗୁପ୍ତଙ୍କ ଆହ୍ୱାନର ସରକାର କୌଣସି ଜବାବ ଦେଲେ ନାହିଁ ସତ, ମାତ୍ର ଅଚିରେ ପ୍ରତିଶୋଧମୂଳକ ଘଟଣାମାନ ଘଟିବାକୁ ଲାଗିଲା । ଅବଶ୍ୟ ଘଟିଥାନ୍ତା, ଘଟିଲା ।

### ପ୍ରତିଶୋଧ

ମାତ୍ର ଅଳ୍ପଦିନ ପୂର୍ବେ ଚିଟାଗଙ୍ଗର ଅତିରିକ୍ତ ପୋଲିସ୍ ସୁପରିଣ୍ଟେଣ୍ଡେଣ୍ଟ ରୂପେ କାର୍ଯ୍ୟ କରିଥିବା ଏବଂ ତା'ପରେ କଲିକତାର ଗୋଇନ୍ଦା ବିଭାଗକୁ ବଦଳି ହୋଇ ଯାଇଥିବା ଜେ.ବି. ଶୁଟର୍‌ଙ୍କୁ ଗୋଟିଏ ଶନିବାର (ଜାନୁଆରୀ 23) ଦିନ ସକାଳେ ୟୁନାଇଟେଡ୍ ସର୍ଭିସ୍ କ୍ଲବରେ ଥିବା ତାଙ୍କର ବାସକକ୍ଷରେ ମରି ପଡ଼ିଥିବାର ଦେଖାଯାଇଥିଲା । ତାଙ୍କର ମୁଣ୍ଡରେ ଗୁଳିର ଚୋଟ ବାଜିଥିଲା । ଖବର ପ୍ରକାଶ ପାଇଲା ଯେ, ତାଙ୍କ ପାଖରେ ଗୋଟିଏ ରିଭଲ୍‌ଭର୍ ମଧ୍ୟ ପଡ଼ିଥିଲା । ବିଶ୍ୱାସ କରାଯାଉଛି ଯେ ସେ ଆତ୍ମହତ୍ୟା କରିଥିଲେ ।

(ଅମୃତବଜାର ପତ୍ରିକା, ଜାନୁଆରୀ 14, 1932)

ଅଳ୍ପଦିନ ପରେ ଦେଖିବାକୁ ମିଳିଲା ଯେ, ଚିଟାଗଙ୍ଗର କଲେକ୍ଟର ଏ. ଏଚ. କେମ୍ ତାଙ୍କର ଜିଲ୍ଲାକୁ ଛାଡ଼ି ସ୍ୱଦେଶକୁ ଗଲେ । ମାତ୍ର ସେ କଲିକତା ବାଟେ ନ ଯାଇ ଆକ୍ୟାବ୍ ଓ ରେଙ୍ଗୁନ ହୋଇ ଗଲେ । ପ୍ରାୟ ସବୁଆଡ଼େ ଅନୁମାନ କରାଗଲା ଯେ କେମ୍‌ଙ୍କୁ ଚାକିରିରୁ ଇସ୍ତଫା ଦେବାଲାଗି ନିର୍ଦ୍ଦେଶ ଦିଆ ଯାଇଥିଲା । ତା'ପରେ ପରବର୍ତ୍ତୀ ଘଟଣାଗୁଡ଼ିକ ଘଟିଲା ।

ଏକଥା ମଧ୍ୟ ଦେଖାଗଲା ଯେ, ଅଳ୍ପଦିନ ପରେ ବିଭିନ୍ନ ପାହିଆର ଏକାଧିକ ପୋଲିସ୍ ଅଫିସରଙ୍କୁ ସସ୍‌ପେଣ୍ଡ କରାଗଲା ଅଥବା ଚିଟାଗଙ୍ଗରୁ ବଦଳି କରି ଅନ୍ୟତ୍ର ନେଇ ନିଆଯାଇଥିଲା ।

ପରେ ଜାଣିବାକୁ ମିଳିଥିଲା ଯେ, ବେସରକାରୀ ଏବଂ ସରକାରୀ ଉଭୟ ତଦନ୍ତର ପ୍ରାପ୍ତ ତଥ୍ୟଗୁଡ଼ିକ ବିଷୟରେ ସରକାର ଏକ ସମତୁଲ ନୀତି ଗ୍ରହଣ କରିଥିଲେ । ପ୍ରାପ୍ତ ତଥ୍ୟଗୁଡ଼ିକ ଅକାଟ୍ୟ ହୋଇଥିବାରୁ, ଚିଟାଗଙ୍ଗ ଅତ୍ୟାଚାର ସକାଶେ ପ୍ରଧାନତଃ ଦାୟୀ ବ୍ୟକ୍ତିମାନଙ୍କ ବିଷୟରେ ତାହା ଶାସ୍ତିମୂଳକ ଭାବରେ କେତେକ କାର୍ଯ୍ୟାନୁଷ୍ଠାନ ମଧ୍ୟ ଗ୍ରହଣ କରିଥିଲା । କେତେକଙ୍କୁ ଅବସର ନେବାକୁ ଅଥବା ଇସ୍ତଫା ଦେବାକୁ କୁହାଗଲା, ଆଉ କେତେକ ସ୍ଥଳରେ ବିଭାଗୀୟ ପଦକ୍ଷେପମାନ ନିଆ ଯାଇଥିଲା ।

### ହିଜଲି ହତ୍ୟାକାଣ୍ଡ ଓ ତା'ପରେ

1931 ମସିହା ସେପ୍ଟେମ୍ବର ମାସ ବ୍ରିଟିଶ୍ ରାଜତ୍ୱ ଉପରେ କଳାଦାଗ ହୋଇ ରହିଥିବା ଆହୁରି ଗୋଟିଏ ଦୃଷ୍ଟାନ୍ତର ମଧ୍ୟ ସାକ୍ଷୀ ହୋଇ ରହିଲା । ହିଜଲି ବନ୍ଦୀ ଶିବିରରେ ଦୁଇଜଣ ବଙ୍ଗଭାଷୀ ଅଟକବନ୍ଦୀଙ୍କୁ (ସେମାନଙ୍କୁ ଭୁଲ୍ କରି ସଂତ୍ରାସବାଦୀ ବୋଲି କୁହା ଯାଉଥିଲା) ଗୁଳି କରି ହତ୍ୟା କରା ଯାଇଥିଲା । ଏହି ଦୁଇଜଣ ସହିଦଙ୍କ ରକ୍ତ ସେହି ମାସରେ ପୂର୍ବରୁ ନିହତ ହୋଇଥିବା ଚିଟାଗଙ୍ଗର ସାଥୀମାନଙ୍କର ରକ୍ତରେ ଯାଇ ସମ୍ମିଳିତ ହୋଇଥିଲା । ତାହା କ୍ରମେ ଅଥଚ ସୁନିଶ୍ଚିତ ଭାବରେ ଭାରତବର୍ଷରେ ବ୍ରିଟିଶ ଶାସନକର୍ତ୍ତାମାନଙ୍କ ଉପରେ କଳଙ୍କ ଲଗାଇ ଦେଇଥିଲା । ବୃହତ୍ ନୃଶଂସତାର ଏହି ଦୁଇ ମୂଥର ଘଟଣା ଏକାଠି ହୋଇ ଦେଶପ୍ରିୟ ଯତୀନ୍ଦ୍ରମୋହନ ସେନଗୁପ୍ତଙ୍କର ଦେଶଭକ୍ତିପୂର୍ଣ୍ଣ ଅନ୍ତର ଭିତରେ ସତେଅବା ଏକ ଅସାଧାରଣ ଅଗ୍ନିମୋହରକୁ ନେଇ ବସାଇ ଦେଇଥିଲା । ଏହାର ପରିଣାମ ପରାଧୀନ ଭାରତବର୍ଷରେ ଆଇନ୍ ଓ ଶୃଙ୍ଖଳା ନାମରେ କେତେକେତେ କୁକର୍ମ ଆଚରଣ କରିଥିବା ବ୍ରିଟେନ୍‌ବାସୀଙ୍କର ଆପଣା ଭୂମିରେ ମଧ୍ୟ ଯାଇ ଅନୁଭୂତ ହୋଇଥିଲା ।

ଚିଟାଗଙ୍ଗ ଅତ୍ୟାଚାରର ପନ୍ଦରଦିନପରେ 1931 ସେପ୍ଟେମ୍ବର 16 ତାରିଖରେ ହିଜଲି (ମେଦିନପୁର) ଅଟକବନ୍ଦୀ ଶିବିରରେ ଘଟିଥିବା ଗୁଳିକାଣ୍ଡ କେତେକ ଅଟକବନ୍ଦୀଙ୍କ ଉପରୁ ଅବିଚ୍ଛିନ୍ନ ଭାବରେ କରାଯାଇ ଆସିଥିବା ଅଭିଯୋଗ-ପର୍ବରେ ଅତ୍ୟନ୍ତ ଦୁଃଖଦ ଭାବରେ ଅବସାନ ଘଟାଇଥିଲା । ସେମାନେ କୁଆଡ଼େ ବିପ୍ଳବୀ ରାଜନୀତି ସହିତ ସଂପୃକ୍ତ ଥିଲେ ବୋଲି ସେମାନଙ୍କୁ ଅଭିଯୁକ୍ତ କରା ଯାଇଥିଲା । ଏହା ଫଳରେ ଜେଲ୍‌ର ପ୍ରହରୀ ଏବଂ ଏମାନଙ୍କ ମଧ୍ୟରେ ସମ୍ବନ୍ଧ ମଧ୍ୟ କ୍ରମେ ଖରାପ ହେବାରେ ଲାଗିଥିଲା । ଶିବିରର କର୍ତ୍ତୃପକ୍ଷମାନେ ପ୍ରହରୀମାନଙ୍କର ପକ୍ଷ ନେଉଥିଲେ । ଅଟକବନ୍ଦୀମାନେ ସରକାରଙ୍କୁ ଏକଥା ଜଣାଇଲେ, ମାତ୍ର ତାହାର କୌଣସି ଫଳ ହେଲା ନାହିଁ । ଶେଷରେ ଦିନେ ଜଣେ ଅଟକବନ୍ଦୀ ଓ ଜଣେ ସଶସ୍ତ୍ର ପ୍ରହରୀ ଭିତରେ କୌଣସି କଥା କଟାକଟି ହେଲା ଓ ତାହା କ୍ରମେ ଏକ ତୁମୁଳ କଳହରେ ପରିଣତ ହେଲା । ପରେ କୁହାଯାଇଥିଲା ଯେ ଅଟକବନ୍ଦୀ ଜଣକ ଜଣେ ପ୍ରହରୀର ବନ୍ଧୁକରୁ ସଙ୍ଗୀନ କାଢ଼ିନେଇ ପଳାଇ ଯାଇଥିଲେ । ଅଳ୍ପ କେତେ ମୁହୂର୍ତ୍ତ ପରେ ଅବସ୍ଥା ଚରମ ଆକାର ଧାରଣ କଲା । ପୋଲିସ୍, ଶିବିର ପ୍ରହରୀ ଏବଂ ୱାର୍ଡ଼ର୍‌ମାନଙ୍କର ଏକ ବୃହତ୍ ଦଳ ବନ୍ଧୁକ ଓ ଲାଠି ଦ୍ୱାରା ବିଭିନ୍ନ ପ୍ରକାରେ ସଜ୍ଜିତ ହୋଇ ଅଟକବନ୍ଦୀ ମାନଙ୍କ ଉପରେ ଆସି ଚଢ଼ାଉ କରିଥିଲେ ଏବଂ ସଙ୍ଗେ ସଙ୍ଗେ ଏକାବେଳେକେ ପ୍ରାୟ ଶହେ ରାଉଣ୍ଡ ଗୁଳି ଚଳାଇଥିଲେ । ଫଳରେ ଦୁଇଜଣ ଅଟକବନ୍ଦୀ, ସନ୍ତୋଷ କୁମାର ମିତ୍ର ଓ ତାରକେଶ୍ୱର ସେନଗୁପ୍ତ ସେହିଠାରେ ହିଁ ନିହତ ହେଲେ । ସନ୍ତୋଷ କୁମାର ପୂର୍ବରୁ କେନ୍ଦ୍ର କଲିକତା କଂଗ୍ରେସ କମିଟିର ଉପସଭାପତି ଏବଂ କଲିକତା ସହର କଂଗ୍ରେସ ଲିଗ୍‌ର ସମ୍ପାଦକ ଥିଲେ, କଂଗ୍ରେସ ଆନ୍ଦୋଳନରେ ଯତୀନ୍ଦ୍ରମୋହନ ସେନଗୁପ୍ତଙ୍କର "ପ୍ରିୟତମ ଲେଫ୍‌ଟ୍‌ନାଣ୍ଟ" ମଧ୍ୟ ଥିଲେ । ବରିସାଲବାସୀ ତାରକେଶ୍ୱର ଜଣେ ପ୍ରମୁଖ କଂଗ୍ରେସକର୍ମୀ ଥିଲେ । ଅନ୍ତତଃ କୋଡ଼ିଏ ଜଣ ଅଟକବନ୍ଦୀ ଆହତ ହୋଇଥିଲେ, ସେମାନଙ୍କ ମଧ୍ୟରୁ ଚାରିଜଣ ସାଂଘାତିକ ଭାବରେ ଆହତ ହୋଇଥିଲେ । ଅଟକବନ୍ଦୀମାନଙ୍କର ଶିବିର ସତେଅବା ଗୋଟିଏ କଂସେଇଖାନାରେ ପରିଣତ ହୋଇ ଯାଇଥିଲା ।

ସେହି ସନ୍ଧ୍ୟାରେ ହିଁ ଯତୀନ୍ଦ୍ରମୋହନ ସେହି ଦୁଃଖଦ ଘଟଣାର ସମ୍ବାଦ ପାଇଥିଲେ । ଏହା ଶୁଣି ସେ ଅତ୍ୟନ୍ତ ବ୍ୟାକୁଳ ହୋଇପଡ଼ିଥିଲେ । କେବଳ ତହିଁ ଆରଦିନ ସକାଳେ ଯାଇ ହିଜଲି ଯିବା ସମ୍ଭବ ହେବ । ସେଠାରେ ପହଞ୍ଚି, ଯେତେ ଯାହା କାରଣ ଦର୍ଶାଇଲେ ମଧ୍ୟ ତାଙ୍କୁ ଅଟକବନ୍ଦୀ ମାନଙ୍କର ଶିବିର ଭିତରକୁ ପ୍ରବେଶ କରିବାର ଅନୁମତି ମିଳିଲା ନାହିଁ । ତେଣୁ ସେଠାରୁ ସେ ଖଡ଼ଗପୁର ଚାଲିଆସିଲେ ଓ ସ୍ଥାନୀୟ ଡାକ୍ତରଖାନାରେ ଭର୍ତ୍ତି ହୋଇଥିବା ଆହତ ବ୍ୟକ୍ତିମାନଙ୍କୁ ଯାଇ ଦେଖିଥିଲେ । ଯେଉଁ ଅଟକବନ୍ଦୀମାନେ ସେଠାରେ ଆହତତମାନଙ୍କର ଶୁଶ୍ରୂଷା କରୁଥିଲେ, ଯତୀନ୍ଦ୍ରମୋହନ ସେମାନଙ୍କଠାରୁ ଗୁଳିକାଣ୍ଡର ବିଶଦ ବିବରଣୀ ସଂଗ୍ରହ କରିଥିଲେ ।

ତା'ପରେ, ଖଡ଼ଗପୁରଠାରେ ମୃତ ଶରୀରଗୁଡ଼ିକୁ ତାଙ୍କର ଜିମା ଦେଇଦେବାକୁ ଯତୀନ୍ଦ୍ରମୋହନ ବନ୍ଦୀ-ଶିବିରର କର୍ତ୍ତୃପକ୍ଷଙ୍କୁ ଅନୁରୋଧ କରିଥିଲେ । ସେ ସେଗୁଡ଼ିକୁ କଲିକତା ନେଇ ଦାହ କରିବାକୁ ଇଚ୍ଛା କରୁଥିଲେ । ଶିବିରର ଭାରପ୍ରାପ୍ତ ହାକିମ ବର୍ତ୍ତମାନ ଏହି ଦାବିଟିକୁ ଆଉ ପ୍ରତ୍ୟାଖାନ କରି ପାରିଲେ ନାହିଁ ଏବଂ ମୃତ ଶରୀରଗୁଡ଼ିକୁ ଯତୀନ୍ଦ୍ରମୋହନଙ୍କର ପାଖରେ ଆଣି ପହଞ୍ଚାଇ ଦେଇଥିଲେ । ଯତୀନ୍ଦ୍ରମୋହନ ନିଜ ଉଦ୍ୟମରେ ଗୋଟିଏ ସ୍ୱତନ୍ତ୍ର ରେଳଗାଡ଼ିର ବ୍ୟବସ୍ଥା କଲେ ଏବଂ ସେଥିରେ ନିଜେ ଶବଗୁଡ଼ିକୁ ନେଇ ହାବଡ଼ା ଯାଇଥିଲେ । ସହିଦମାନଙ୍କୁ ସମ୍ମାନ ପ୍ରଦର୍ଶନ କରିବାଲାଗି କଲିକତାବାସୀଙ୍କର ଏକ ବୃହତ୍ ଭିଡ଼ ଷ୍ଟେସନରେ ଆସି ଜମା ହୋଇଥିଲା । ନାନା ଆଡୁ ଆସିଥିବା

ଫୁଲମାଳଗୁଡ଼ିକୁ ଶବମାନଙ୍କ ଉପରେ ଦିଆଗଲା । ଏକ ବିରାଟ ଶୋଭାଯାତ୍ରାରେ ସେଗୁଡ଼ିକୁ ସହରର ରାସ୍ତାଗୁଡ଼ିକରେ ବୁଲାଇ ତା'ପରେ କେଓରାତଲା ଶ୍ମଶାନକୁ ନିଆ ଯାଇଥିଲା ।

ସମଗ୍ର ଦେଶ ଏହି ଘଟଣାରେ ଶୋକାର୍ତ୍ତ ହୋଇ ପଡ଼ିଲା । ରବୀନ୍ଦ୍ରନାଥ ଠାକୁର ଅତ୍ୟନ୍ତ ଭୟବିସ୍ମିତ ହୋଇ ପଡ଼ିଥିଲେ । ଯତୀନ୍ଦ୍ରମୋହନଙ୍କ ଅନୁରୋଧରେ କବି ସେପ୍ଟେମ୍ବର ୨୬ ତାରିଖ ଦିନ କଲିକତା ଟାଉନ୍ ହଲ୍‌ରେ ହେଉଥିବା ଏକ ସଭାରେ ସଭାପତିତ୍ୱ କରିବାଲାଗି ଆସିବାକୁ ରାଜି ହୋଇଥିଲେ ।

### *ମାନବହତ୍ୟାକାଙ୍କ୍ଷୀ ନିର୍ମମତା*

"... ହିଜଲି ଗୁଳିକାଣ୍ଡ ଆପଣାକୁ ଏପରି ଏକ ଅତ୍ୟାଚାର ବୋଲି ପ୍ରମାଣିତ କରିଛି, ଯାହାର ନୃଶଂସତାକୁ ଏକ ଦୁଃଖଦ ଓ ଭୀରୁତାପୂର୍ଣ୍ଣ ଘଟଣା ବୋଲି କୁହାଯାଇ ପାରିବ । ସମ୍ପୂର୍ଣ୍ଣତଃ ନିପୀଡ଼ିତ ମାନବତା ଲାଗି ହିଁ ଆମର ଦୃଷ୍ଟିକୁ ତାହା ଅବଶ୍ୟ ଆକର୍ଷଣ କରିବା ଉଚିତ୍ । ଏକ ବୃହତ୍ ସାଧାରଣ ସଭାରେ ଅଂଶଗ୍ରହଣ କରିବା ଶାରୀରିକ ଦୃଷ୍ଟିରୁ ମୋ ପାଇଁ କ୍ଷତିକାରକ ଏବଂ ଏହା ମୋର ମନକୁ ମଧ୍ୟ ଅତ୍ୟନ୍ତ ବିଚଳିତ କରି ପକାଇଥାଏ । ମାତ୍ର, ନିଯୁକ୍ତି ରକ୍ଷକମାନଙ୍କର ମାନବହତ୍ୟାକାଙ୍କ୍ଷୀ ନିର୍ମମତା ଦ୍ୱାରା ଯେଉଁ ଦୁର୍ଭାଗ୍ୟ ବ୍ୟକ୍ତିମାନଙ୍କର କଣ୍ଠସ୍ୱରକୁ ନୀରବ କରି ଦିଆଯାଇଛି, ମୁଁ ସେମାନଙ୍କର ଆହ୍ୱାନକୁ ଆଦୌ ଏଡ଼ିଦେଇପାରିଲି ନାହିଁ .... । ମୋ' ଦେଶବାସୀଙ୍କ ତରଫରୁ ମୁଁ ଏଠାରେ କେବଳ ଏହି ସତର୍କବାଣୀ ଶୁଣାଇ ଦେବାକୁ ଆସିଛି ଯେ, ସ୍ୱାଧୀନତାକୁ ଦମନକରି ରଖିବାକୁ ତା'ପାଖରେ ରହିଥିବା ପ୍ରଚୁର ସାମଗ୍ରୀ ଓ ସାଧନ ବିଷୟରେ କୌଣସି ସରକାର ଯେତେ ଗର୍ବ ଅନୁଭବ କରୁଥିଲେ ମଧ୍ୟ ତାହା କଦାପି ଆପଣାର ସମ୍ମାନ ହରାଇ ତିଷ୍ଠି ରହିପାରିବ ନାହିଁ । ନ୍ୟାୟ ବିଷୟରେ, ଯେତେପ୍ରକାରେ ଉତ୍ତେଜିତ ହେବାର ପରିସ୍ଥିତି ମହଜୁଦ୍ ରହିଥିଲେ ମଧ୍ୟ ତଥାପି ନିଜର ସାଧୁତାରେ ଅବିଚଳିତ ହୋଇ ରହିବା ବିଷୟରେ ଯେଉଁ ସମ୍ମାନବୋଧ ଅବଶ୍ୟ ରହିଥିବା ଉଚିତ୍, ମୁଁ ଏଠାରେ ତାହାରି କଥା କହୁଛି । ଆମ ଦେଶବାସୀଙ୍କ ହାତରେ ହୁଏତ ଅନ୍ୟାୟର ପ୍ରତିରୋଧ କରିବାପାଇଁ ଆଦୌ କୌଣସି ବାହ୍ୟ ସାଧନ ନାହିଁ, ମାତ୍ର ଆପଣାର ନୈତିକ ରାୟ ଦେବାରୁ କୌଣସି ଶକ୍ତି ସେମାନଙ୍କୁ କଦାପି ବଞ୍ଚିତ କରି ରଖିପାରିବ ନାହିଁ । ଯେକୌଣସି ସରକାର, ତାହା ଯେତେ ବିଦେଶୀ ବା ବିଜାତୀୟ ହୋଇଥାଉ ପଛକେ, ଆପଣାର ତିଷ୍ଠି ରହିବା ସକାଶେ ସେହି ନୈତିକ ରାୟ ଉପରେ ନିର୍ଭର କରିବାକୁ ଅବଶ୍ୟ ବାଧ ହେବ । ....

ଉତ୍ତେଜନାପୂର୍ଣ୍ଣ ଭାଷାରେ ଆପଣା ଅନୁଭୂତିଗୁଡ଼ିକର ଏକ ବ୍ୟର୍ଥ ପ୍ରଦର୍ଶନ କରିବାକୁ ମୋର କୌଣସି ଆକାଙ୍କ୍ଷା ନାହିଁ ଏବଂ, ଏହି ସଭାର ଅନ୍ୟ ବକ୍ତାମାନଙ୍କୁ ମୁଁ ଅନୁରୋଧ କରୁଛି ଯେ, ଘଟିଥିବା ପ୍ରକୃତ ଘଟଣାଟି ହିଁ ଯେତେ ପରମାଣରେ ସେହି ଘଟଣାଟିକୁ ଭିଆଇଥିବା ପକ୍ଷଟିକୁ ନିନ୍ଦିତ କରୁଛି, କ୍ରୋଧଦ୍ୱାରା ପ୍ରଣୋଦିତ କୌଣସି ଶବ୍ଦ ଯେ କଦାପି ତା'ଠାରୁ ଅଧିକ ଉଚ୍ଚକୁ ଉଠି ପାରିବନାହିଁ, ସେମାନେ ସେହି କଥାଟିକୁ ଅବଶ୍ୟ ମନେ ରଖିବେ । ..."

— ରବୀନ୍ଦ୍ର ନାଥ ଠାକୁର

ରବୀନ୍ଦ୍ରନାଥ ଏହି ଘଟଣାଟିର ନିନ୍ଦାବାଦ କରିବାପରେ ସରକାର ଏ ବିଷୟରେ ଗୋଟିଏ ତଦନ୍ତ କମିଟି ବସାଇବାକୁ ବାଧ ହୋଇଥିଲେ । ସେଥିରେ ବିଚାରପତି ଏସ୍. ସି. ମଲ୍ଲିକ ଆଇ. ସି. ଏସ୍. ଏବଂ ଶ୍ରୀ ଜେ. ଜି. ଡ୍ରମଣ୍ଡ ସଭ୍ୟରୂପେ ରହିଥିଲେ । ଗୁଳିକାଣ୍ଡର ଯାବତୀୟ ତଥ୍ୟ ଆବିଷ୍କାର କରି ଗୁଳିକାଣ୍ଡ କରିବା ଉଚିତ୍ ଥିଲା କି ନାହିଁ, ସେକଥା ନିର୍ଣ୍ଣୟ କରିବା କମିଟିର କାର୍ଯ୍ୟ ଥିଲା, କମିଟି ଅନ୍ୟାନ୍ୟ ନାନା କଥା ମଧ୍ୟରେ ଏକଥା ମଧ୍ୟ ନିର୍ଣ୍ଣୟ କରିଥିଲା :

''... ମାତ୍ର ସିପାହୀମାନେ ସେହି ଅଟ୍ଟାଳିକାଟି ଉପରେ ଯେ ଆଖିବୁଜି ଏପରି ଗୁଳିବର୍ଷଣ (ପ୍ରାୟ 29 ରାଉଣ୍ଡ ଗୁଳି ଚାଳିଛି ବୋଲି ଜଣା ଯାଇଥିଲା) କଲେ, ଆମ ମତରେ ତାହାର ଆଦୌ କୌଣସି ଯୁକ୍ତିଯୁକ୍ତ କାରଣ ନଥିଲା । ସେହି ଗୁଳିମାଡ଼ ଦ୍ୱାରା ଦୁଇଜଣ ଅଟକବନ୍ଦୀ ପ୍ରାଣ ହରାଇଲେ ଏବଂ କେତେକ ସିପାହୀ ଅଟ୍ଟାଳିକା ଭିତରେ ପ୍ରବେଶକରି ଆହୁରି କେତେକ ଅଟକବନ୍ଦୀଙ୍କୁ ନାନା ଭାବରେ ଆହତ କରିଥିଲେ ....''

## କର୍ପୋରେସନ୍‌ରେ ନିନ୍ଦା

ସେପ୍ଟେମ୍ବର 28 ତାରିଖରେ ବସିଥିବା କଲିକତା କର୍ପୋରେସନ୍‌ର ଏକ ବୈଠକରେ ହିଜ୍‌ଲି ଗୁଳିକାଣ୍ଡ ଏବଂ ତାହାର ପରବର୍ତ୍ତୀ ଘଟଣାଗୁଡ଼ିକର ଘୋର ନିନ୍ଦାବାଦ କରାଯାଇଥିଲା । ସେଠାରେ ଶରତଚନ୍ଦ୍ର ବୋଷଙ୍କ ଦ୍ୱାରା ଆଗତ ତିନୋଟି ମୁଲତୁବୀ ପ୍ରସ୍ତାବ ମଧ୍ୟରୁ ଗୋଟିଏ ଏବଂ ଯତୀନ୍ଦ୍ରମୋହନ ସେନଗୁପ୍ତ ଆଣିଥିବା ଏକ ସଂଶୋଧନ ପ୍ରସ୍ତାବ 42 - 5 ଭୋଟରେ ଗୃହୀତ ହୋଇ ଯାଇଥିଲା । ଇଉରୋପୀୟ ସଦସ୍ୟ ଶ୍ରୀଯୁକ୍ତ ରସ୍ ବିରୋଧପକ୍ଷର ନେତୃତ୍ୱ ଦେଇଥିଲେ । ଶ୍ରୀ ସେନଗୁପ୍ତ ପୀଡ଼ିତ ଥିଲେ ମଧ୍ୟ ତାଙ୍କର ପ୍ରତି-ଜବାବ ଗୁଡ଼ିକର କଠୋର ଜବାବ ଦେବାଲାଗି ଅଲୋଚନାରେ ଭାଗ ନେଇଥିଲେ । ସେ କହିଥିଲେ :

''ଏହି କର୍ପୋରେସନ୍‌ର ମତ ଯେ, ସରକାରୀ ଇସ୍ତାହାରରେ ଯାହା କୁହାଯାଇଥାଉ ପଛକେ, ସେଦିନ ରାତିରେ ହିଜ୍‌ଲି ଠାରେ ହୋଇଥିବା ଗୁଳିକାଣ୍ଡର ଆଦୌ କୌଣସି ଯୁକ୍ତିଯୁକ୍ତତା ନଥିଲା'' - ବୋଲି ମୋ' ପ୍ରସ୍ତାବଟିର ଯେଉଁ ଅଂଶରେ ମୁଁ ମତ ଦେଇଥିଲି, ସେହି ବିଷୟରେ କୌଣସି ପ୍ରକାର ଟିପ୍ପଣୀ କରିବାରୁ ମୁଁ ଜାଣିଶୁଣି ଆପଣାକୁ ନିବୃତ୍ତ କରି ରଖିଥିଲି । କେତେଦିନ ହେଲା ମୁଁ ଆଦୌ ଖୁବ୍ ସୁସ୍ଥ ଅବସ୍ଥାରେ ନାହିଁ ଓ ତେଣୁ ମୁଁ ଉତ୍ତରରେ କିଛି କହିବା ସକାଶେ କୌଣସି ଇଚ୍ଛା କରି ନଥିଲି । ମାତ୍ର ଚିଟାଗଙ୍ଗ ଏବଂ ହିଜ୍‌ଲିର ଘଟଣାଗୁଡ଼ିକ ଘଟିବାପରେ ସରକାରରେ ଥିବା ଇଉରୋପୀୟ କର୍ମଚାରୀ ତଥା ବଙ୍ଗଳାରେ ବାସ କରୁଥିବା ବେସରକାରୀ ଇଉରୋପୀୟ ସଂପ୍ରଦାୟକୁ ପ୍ରହାର କରିବାଲାଗି ମୋତେ କୌଣସି ପରିମାଣରେ ଶକ୍ତିଯୁକ୍ତ କରିପାରିବାରେ ଶ୍ରୀଯୁକ୍ତ ରସ୍ ନିଶ୍ଚୟ ସଫଳ ହୋଇଛନ୍ତି । ମାତ୍ର ଏପର୍ଯ୍ୟନ୍ତ ମୁଁ କେବଳ ଅସଫଳ ହୋଇ ରହିଥିଲି ।

''ମୁଁ ଆଶା କରିଥିଲି ଯେ ଶ୍ରୀଯୁକ୍ତ ରସ୍ ମୋର ଆହ୍ୱାନଟିକୁ ନିଶ୍ଚୟ ଗ୍ରହଣ କରିବେ । ମାତ୍ର ସିଏ କେବଳ ଗୁଡ଼ାଏ କଥା ହିଁ କହିଲେ । ତାଙ୍କୁ ମୁଁ ପୁନର୍ବାର ପୂର୍ବପରି ଆହ୍ୱାନ କରୁଛି ଯେ, ଯଦି ଶ୍ରୀଯୁକ୍ତ ରସ୍ ଅଥବା ବଙ୍ଗ ସରକାରଙ୍କର କୌଣସି ଇଉରୋପୀୟ ଅଫିସର୍ ମୋ' କହିଥିବା କଥାଗୁଡ଼ିକ ଭୁଲ୍ ବୋଲି ଭାବୁଛନ୍ତି, ହିଜଲି ଜେଲ୍‌ର ଅଟକବନ୍ଦୀମାନଙ୍କ ଉପରେ ହୋଇଥିବା ଗୁଳିକାଣ୍ଡକୁ ଜାଣିଶୁଣି କରାଯାଇଛି ବୋଲି କହି ପ୍ରତ୍ୟେକ ବଙ୍ଗାଳୀ ଭୁଲ୍ କଥା କହୁଛି ବୋଲି ସେମାନେ ଯଦି ଭାବୁଥାନ୍ତି, ଏବଂ କେବଳ ସେତିକି ନୁହେଁ, ଏହାକୁ ମାନବ ବଧର ଏକ ଅପରାଧ ବୋଲି ମୁଁ ବା ପ୍ରତ୍ୟେକ ବଙ୍ଗାଳୀ ଯେତେବେଳେ କହୁଛି, ସେତେବେଳେ, ଚିଟାଗଙ୍ଗ୍‌ର ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କୁ ଆହ୍ୱାନ କରିଥିବାପରି ମୁଁ ତାଙ୍କୁ ମଧ୍ୟ ଆହ୍ୱାନ କରୁଛି ଯେ ସେ ମୋ' ନାମରେ ନ୍ୟାୟାଳୟରେ ଏକ ମୋକଦ୍ଦମା କରନ୍ତୁ । ମୁଁ କଲିକତାର ପବ୍ଲିକ୍ ପ୍ରୋସିକିଉଟିଭ୍‌ଙ୍କୁ ଆହ୍ୱାନ ଦେଇ କହୁଛି ଯେ, ଦୁଇଜଣ ଅପରାଧୀଙ୍କୁ ହତ୍ୟା କରି ସଂପୃକ୍ତ ବ୍ୟକ୍ତିମାନେ ଯେ ମଣିଷ ଖୁନ୍ କରିବାର ଏକ ଅପରାଧ କରିଛନ୍ତି ବୋଲି ମୁଁ ବା ଏହି ସଦନର ଅନ୍ୟ କୌଣସି ସଭ୍ୟ ଯେତେବେଳେ ଘୋଷଣା କରୁଛନ୍ତି, ସେତେବେଳେ ସିଏ ଆମ ନାମରେ ମୋକଦ୍ଦମା କରନ୍ତୁ ।

"ମୁଁ କାହିଁକି ଏକଥା କହୁଛି ? ମୁଁ ଏପରି କହୁଛି, କାରଣ ପ୍ରକାଶ୍ୟ କ୍ଷେତ୍ରରେ ଏହି ଦୁଇଜଣ ବ୍ୟକ୍ତି ଅଟକବନ୍ଦୀ ହୋଇ ରହିଥିଲେ ବୋଲି ପ୍ରମାଣ କରିବାକୁ ଆଦୌ କୌଣସି ମୌଖିକ ସାକ୍ଷ୍ୟର ପ୍ରୟୋଜନ ନାହିଁ । ଯଦି ଆପଣ ଚାହାନ୍ତି, ତେବେ ସେମାନଙ୍କୁ ଯୁଦ୍ଧବନ୍ଦୀ ବୋଲି ମଧ କହିପାରନ୍ତି । ସେମାନଙ୍କ ହାତରେ କୌଣସି ଅସ୍ତ୍ର ନଥିଲା ବୋଲି ପ୍ରମାଣ କରିବାକୁ କୌଣସି ସାକ୍ଷ୍ୟ ଦରକାର ନାହିଁ । ସେମାନେ ସେଠାରୁ ପଳାଇ ବାହାରିଯିବା ପାଇଁ କୌଣସି ଚେଷ୍ଟା କରୁ ନଥିଲେ ବୋଲି ପ୍ରମାଣ କରିବାକୁ କୌଣସି ସାକ୍ଷ୍ୟ - ମୌଖିକ ସାକ୍ଷ୍ୟର ଆବଶ୍ୟକତା ନାହିଁ । ସେମାନେ ଗୁଳିଦ୍ୱାରା ଆହତ ହୋଇଛନ୍ତି ବୋଲି ପ୍ରମାଣ କରିବାର କୌଣସି ପ୍ରୟୋଜନ ନାହିଁ । ରାତି ସାଢ଼େ ନଅଟା ସମୟରେ, ଯେତେବେଳେ ସେମାନେ ଶୋଇବାକୁ ଯାଉଥିଲେ, ସେତେବେଳେ ଏହି ଘଟଣାଟି ଘଟିଲା ବୋଲି ପ୍ରମାଣ କରିବାକୁ ମଧ କୌଣସି ସାକ୍ଷ୍ୟ - ମୌଖିକ ସାକ୍ଷ୍ୟର ଆବଶ୍ୟକତା ନାହିଁ ।"

"କୁହାଯାଉଛି ଯେ କେତେଜଣ ଅଟକବନ୍ଦୀ କେତେକ ପ୍ରହରୀଙ୍କ ଉପରେ ଆକ୍ରମଣ କରିଥିଲେ ଏବଂ ଦଳେ ବନ୍ଦୀ ଗୋଟିଏ ବାୟୋନେଟ୍ ଛଡ଼ାଇ ନେଇ ଯାଇଥିଲେ ଓ ତେଣୁ ଗୁଳି ଚଳାଇବା ପ୍ରକୃତରେ ଦରକାର ପଡ଼ିଲା । ଏଠାରେ ମୁଁ ଶ୍ରୀଯୁକ୍ତ ରସ୍ ଏବଂ ଅନ୍ୟ ବନ୍ଧୁମାନଙ୍କୁ ସ୍ମରଣ କରାଇ ଦେଇପାରେ ଯେ, ସରକାରଙ୍କ ପକ୍ଷରୁ ଦିଆ ଯାଇଥିବା ଏହି କୈଫିୟତ୍ ଭିତରେ ସିଏ ଏହି ବିବୃତିଟିକୁ ମଧ୍ୟ ଦେଖିବାକୁ ପାଇବେ ଯେ, ବନ୍ଧୁକ ଭିତରେ ପୁନର୍ବାର ଗୁଳି ଭର୍ତ୍ତି କରିବାଲାଗି ଉକ୍ତ ପ୍ରହରୀ ପାଖରେ ସମୟ ଥିଲା, ଅବସର ଓ ସୁବିଧା ମଧ ରହିଥିଲା ? ଏଥିରୁ କ'ଣ ପ୍ରମାଣ ମିଳୁଛି ? ଏହିସବୁ ଧରଣ ପରିସ୍ଥିତି ସତ୍ୟକୁ କଦାପି ଲୁଚାଇ ରଖିପାରିବେ ନାହିଁ । ଯଦି ଜଣେ ପ୍ରହରୀ କାହାଦ୍ୱାରା କାବୁ ହୋଇଯିବ, ତେବେ ତା'ର ବନ୍ଧୁକ ଭିତରେ ପୁନର୍ବାର ଗୁଳି ଭର୍ତ୍ତି କରିବାଲାଗି ଉକ୍ତ ବନ୍ଦୀ ତାକୁ ପ୍ରକୃତରେ କୌଣସି ସୁଯୋଗ, ଅବସର ଅଥବା ବିଶେଷ ସୁବିଧା ପ୍ରଦାନ କରିବ କି ?"

## ଲଣ୍ଡନ - ଯାତ୍ରା

ଚିଟାଗଙ୍ଗ ଅତ୍ୟାଚାର ଏବଂ ହିଜଲି ହତ୍ୟାକାଣ୍ଡ ଯତୀନ୍ଦ୍ରମୋହନଙ୍କୁ ଅତ୍ୟନ୍ତ ବିବ୍ରତ କରି ପକାଇଥିଲା । ବିଚାର ନହୋଇ ବନ୍ଦୀ ହୋଇ ରହିଥିବା ରାଜନୀତିକ ବନ୍ଦୀମାନଙ୍କୁ ଖଲାସ କରିବାର ସମସ୍ୟାଟି ମଧ ସମାହିତ ହୋଇ ନଥିଲା । ଏହି ସବୁକିଛି ଯତୀନ୍ଦ୍ରମୋହନଙ୍କୁ ବ୍ୟାକୁଳ କରି ପକାଇଲା । ଏଗୁଡ଼ିକ ତାଙ୍କର ଅନ୍ତର ଭିତରେ ସତେଅବା ଘାଆ ପରି ହୋଇ ରହିଥିଲା ଏବଂ ତାଙ୍କର ମସ୍ତିଷ୍କକୁ ଭାରାକ୍ରାନ୍ତ କରି ରଖିଥିଲା । ସେତିକିବେଳେ ପରବର୍ତ୍ତୀ ମାସରେ ସେ ଲଣ୍ଡନ ଯିବାକୁ ପ୍ରସ୍ତୁତ ହେଲେ । ନିଜ ସ୍ୱାସ୍ଥ୍ୟରେ କିଞ୍ଚିତ୍ ଉନ୍ନତି ଘଟାଇବା ଲାଗି ଯେ ଏହି ଯାତ୍ରାର କଳ୍ପନା କରିଥିଲେ । ଗୁରୁ ରକ୍ତଚାପ ରୋଗରେ କ୍ରମାଗତ ଭାବରେ ପୀଡ଼ିତ ରହି ସେ ଅଧିକରୁ ଅଧିକ ଅସୁସ୍ଥ ହେବାରେ ଲାଗିଥିଲେ ଏବଂ ଡାକ୍ତରମାନେ ତାଙ୍କୁ ଦୂରକୁ ଏକ ଜଳଯାତ୍ରାରେ ଯିବାଲାଗି ପରାମର୍ଶ ଦେଲେ । ହୁଏତ ତଦ୍ୱାରା ତାଙ୍କର ଭଗ୍ନ ସ୍ୱାସ୍ଥ୍ୟରେ କିଞ୍ଚିତ୍ ପରିବର୍ତ୍ତନ ହେବ । ମାତ୍ର ତାଙ୍କପରି ଜଣେ ବ୍ୟକ୍ତିର ଜୀବନରେ ପ୍ରକୃତରେ ବିଶ୍ରାମ ନେବା ବା ନିଶ୍ଚିନ୍ତ ରହିବାଲାଗି କୌଣସି ସ୍ଥାନ ଥିଲା କି ?

ସେତିକିବେଳେ ଅଧାଦେଶ ବଳରେ କେତେକେତେ ଲୋକ ଗିରଫ ହୋଇ ଜେଲ୍‌କୁ ଗଲେ । ପୁନଶ୍ଚ, ସାତଜଣ କଂଗ୍ରେସ ଲୋକ ସଂଶୋଧିତ ଫୌଜଦାରୀ ଆଇନ୍‌ର ଶିକାର ମଧ ହୋଇଥିଲେ । ପ୍ରାୟ ନିଜର ରୋଗଶଯ୍ୟାରୁ ହିଁ ସେନଗୁପ୍ତ ମଇମନସିଂହ ଜିଲ୍ଲା କଂଗ୍ରେସ କମିଟିର ସଭାପତି

ଜ୍ଞାନେନ୍ଦ୍ର ଚନ୍ଦ୍ର ମଜୁମଦାର ଏବଂ କଲିକତାର ଅନ୍ୟ ଛଅଜଣ କଂଗ୍ରେସ ଲୋକଙ୍କୁ ଗିରଫ କରିନେବାର ପ୍ରତିବାଦରେ କଠୋର ଭାଷାରେ ଗୋଟିଏ ବିବୃତି ଦେଇଥିଲେ : "ସରକାର ପ୍ରକୃତରେ ଏକ ଖଳତାପୂର୍ଣ୍ଣ ନୀତି ଅନୁସରଣ କରୁଛନ୍ତି ଏବଂ ପ୍ରତିଶ୍ରୁତି ହୋଇ ରହିଥିବା ଆପଣାର ଏକ ଚୁକ୍ତିରେ ଖିଲାପ ମଧ କରୁଛନ୍ତି । କଂଗ୍ରେସ ପକ୍ଷରୁ ପ୍ରଦର୍ଶିତ ହୋଇଥିବା ସଦିଚ୍ଛାର ସେମାନେ ଏହିପରି ଭାବରେ ଜବାବ ଦେବାକୁ ଯାଉଛନ୍ତି କି ? ଆଉ କେତେଦିନ ପର୍ଯ୍ୟନ୍ତ ସଂଶୋଧିତ ବଙ୍ଗଳା ଫୌଜଦାରୀ ଆଇନ୍ ଏହିପରି ଭାବରେ ଆପଣାର ଶିକାର ଧରିବାରେ ଲାଗିଥିବ ? ଯଦି ଆଜି ବଙ୍ଗଳାରେ କୌଣସି ଶାନ୍ତି ନାହିଁ, ତେବେ କେବଳ ସରକାର ହିଁ ସେଥିଲାଗି ସଂପୂର୍ଣ୍ଣ ଭାବରେ ଦାୟୀ । ସେମାନଙ୍କୁ ମୁଁ କହି ରଖୁଛି ଯେ, ଯଦି ସେମାନେ ନିଜର ଏହି ନୀତିରେ ପରିବର୍ତ୍ତନ ନ କରନ୍ତି, ତେବେ ସେମାନେ ନିଜ ଉପରକୁ ବିପର୍ଯ୍ୟୟକୁ ହିଁ ଡାକି ଆଣିବେ । ବଙ୍ଗଳା ଏହିପରି ଏକ ପରିସ୍ଥିତିକୁ କଦାପି ସହ୍ୟ କରିବ ନାହିଁ ।

ସେନଗୁପ୍ତଙ୍କର ଇଉରୋପ - ଯାତ୍ରା ନିମନ୍ତେ ଯାବତୀୟ ପ୍ରସ୍ତୁତି ହୋଇସାରିବା ପରେ ସେ ଉପଲବ୍ଧ କରିଥିଲେ ଯେ, ତାଙ୍କର ଆର୍ଥିକ ଅର୍ଜନ ସମର୍ଥତା ଉପରେ ଇତିମଧ୍ୟରେ ଅତିରିକ୍ତ ଚାପ ଆସି ପଡ଼ିବାକୁ ଆରମ୍ଭ କରିଥିଲା । ଚିଟାଗଙ୍ଗ ଆନ୍ଦୋଳନ (1921 - 22) ସମୟରେ ଅତିବେଶୀ ପରିମାଣର କରଜ କରିବା ଫଳରେ ଆର୍ଥିକ କ୍ଷେତ୍ରରେ ତାଙ୍କୁ ଯେଉଁ ଅସୁବିଧାଗୁଡ଼ିକର ସମ୍ମୁଖୀନ ହେବାକୁ ପଡ଼ିଥିଲା, ତାହା ଏପର୍ଯ୍ୟନ୍ତ ତାଙ୍କ ଉପରେ ଏକ ବୃହତ୍ ବୋଝ ହୋଇ ରହିଥିଲା । ବିଶେଷକରି, ରାଜନୀତିକ କାରଣଗୁଡ଼ିକ ହେତୁ ତାଙ୍କୁ ବାରବାର ଆପଣାର ଆଇନ୍ ବ୍ୟବସାୟକୁ ସ୍ଥଗିତ ରଖିବା ଫଳରେ ହିଁ ଏପରି ହୋଇଥିଲା । ଇଚ୍ଛୁକ ବନ୍ଧୁମାନଙ୍କ ଠାରୁ ଅର୍ଥଗ୍ରହଣ କରିବାକୁ ସେ ସର୍ବଦା କୁଣ୍ଠିତ ହେଉଥିଲେ । ପରିଶେଷରେ ଆପଣାର ଜୀବନବୀମା ପଲିସିକୁ ପଣ ରଖି ସେ କିଛି ଟଙ୍କା କରଜ କରିଥିଲେ ।

ବମ୍ବେରେ ପହଞ୍ଚିବା ପରେ ଯତୀନ୍ଦ୍ରମୋହନ ଏବଂ ନେଲୀଙ୍କୁ କହ୍ନାଇୟାଲାଲ ମୁନ୍‌ସୀ, କେ. ଏଫ୍. ନରିମାନ୍ ଏବଂ ଅନ୍ୟମାନଙ୍କର ନେତୃତ୍ୱରେ ମୁଖ୍ୟ ନାଗରିକମାନଙ୍କ ତରଫରୁ ହାର୍ଦ୍ଦିକ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ଦୁଇଦିନ ପାଇଁ ସେନଗୁପ୍ତ ତାଙ୍କର ସାଧାରଣ କାର୍ଯ୍ୟକ୍ରମ ଗୁଡ଼ିକରେ ଯୋଗ ଦେଇଥିଲେ । ଏକ ସ୍ୱଦେଶୀ ବଜାର (ପ୍ରଦର୍ଶନୀ) ଉଦ୍‌ଘାଟନ କରି ଦେଶରେ ତିଆରି ହେଉଥିବା ଦ୍ରବ୍ୟମାନ କିଣିବାର ଅପ୍ରତିରୋଧ୍ୟ ଆବଶ୍ୟକତା ବିଷୟରେ ଲୋକମାନଙ୍କର ହୃଦ୍‌ବୋଧ କରାଇଥିଲେ ଓ ତାହା ବ୍ୟତୀତ ଦେଶର ସ୍ୱାଧୀନତା ଅପୂର୍ଣ୍ଣ ହୋଇ ରହିଯିବ ବୋଲି କହିଥିଲେ ।

ତହିଁ ଆରଦିନ ସମୁଦ୍ରବେଳାରେ ଏକ ଜନସଭା ଅନୁଷ୍ଠିତ ହୋଇଥିଲା । ସ୍ୱାଧୀନତା ସଂଗ୍ରାମକୁ ଚାଲୁ ରଖିବାଲାଗି ସେଠାରେ ସେ ଲୋକମାନଙ୍କୁ ଏକ ଉଦ୍‌ପ୍ରେରଣାକାରୀ ଆହ୍ୱାନ ଦେଇଥିଲେ । ବିରାଟ ଶ୍ରୋତୃମଣ୍ଡଳୀ ସେଥିରେ ସୁସ୍ପଷ୍ଟ ଭାବରେ ଅନୁପ୍ରେରିତ ହୋଇଥିଲା ।

ଯତୀନ୍ଦ୍ରମୋହନ ଓ ନେଲୀ ଶ୍ରୀ ଓ ଶ୍ରୀମତୀ ମୁନ୍‌ସୀଙ୍କ ଘରେ ରହୁଥିଲେ । ଅକ୍ଟୋବର ୨୦ ତାରିଖ ଦିନ ସେମାନେ ଲଏଡ୍ ଟ୍ରିଷ୍ଟିନୋ କମ୍ପାନୀର 'କ୍ରାକୋଭିଆ' ଜାହାଜରେ ୟୁରୋପ ଅଭିମୁଖେ ଯାତ୍ରା କରିଥିଲେ । ସେମାନେ ଦୁଇମାସ ସକାଶେ ଲଣ୍ଡନ ଯାଉଥିଲେ । ନରିମାନ୍ ମୁନ୍‌ସୀ ଓ ଶ୍ରୀମତୀ ଲୀଳାବତୀ ମୁନ୍‌ସୀ ତଥା ଅନ୍ୟ ପ୍ରମୁଖ କଂଗ୍ରେସ ଲୋକ ଏବଂ ବମ୍ବେର ବହୁସଂଖ୍ୟକ ନାଗରିକ ସେମାନଙ୍କୁ ବିଦାୟ ଦେବାକୁ ଆସିଥିଲେ ।

**ଲଣ୍ଡନ - ଆଗମନ**

ଦୁଇ ତିନି ସପ୍ତାହର ଏହି ସମୁଦ୍ରଯାତ୍ରା ସେନଗୁପ୍ତଙ୍କର କ୍ରମାଗତ ରହି ଆସିଥିବା ଉଚ୍ଚ -ରକ୍ତଚାପରେ ସୁସ୍ପଷ୍ଟ ଉପଶମ ଘଟାଇଥିଲା । ତାଙ୍କର ମନ ଓ ଶରୀର ପୂର୍ବାପେକ୍ଷା ଅଧିକ ଭଲ ଲାଗୁଥିଲା । ଲଣ୍ଡନରେ ପହଞ୍ଚିବାପରେ ନେଲୀ ଏବଂ ଶ୍ରୀଯୁକ୍ତ ସେନଗୁପ୍ତ ପ୍ରଥମେ ରହିବାଲାଗି ଗୋଟିଏ ଘର ଠିକ୍ କରି ସିଧା ନେଲୀଙ୍କ ମାଆ ଶ୍ରୀମତୀ ଗ୍ରେ'ଙ୍କୁ ଦେଖିବାପାଇଁ ଯାଇଥିଲେ । ଏହି ବୃଦ୍ଧାବସ୍ଥାରେ ଶ୍ରୀମତୀ ଗ୍ରେ' ଅତ୍ୟନ୍ତ ଉତ୍ସୁକ ଭାବରେ ନିଜର ପ୍ରିୟତମା କନ୍ୟା ଏବଂ ଜାମାତା ଯତୀନ୍ଦ୍ରମୋହନଙ୍କୁ ଦେଖିବା ଲାଗି ଅପେକ୍ଷା କରି ରହିଥିଲେ । ଯତୀନ୍ଦ୍ରମୋହନ ଦୀର୍ଘ ଦୁଇ ଦଶକ ପରେ ତାଙ୍କୁ ସାକ୍ଷାତ କରିବାକୁ ଯାଇଥିଲେ । ଯତୀନ୍ଦ୍ରମୋହନ ଯେ ଇତିମଧ୍ୟରେ ଭାରତବର୍ଷରେ ଜଣେ ସର୍ବୋଚ୍ଚସ୍ଥାନୀୟ ସ୍ୱାଧୀନତା-ସଂଗ୍ରାମୀ ରୂପେ ଅବତୀର୍ଣ୍ଣ ହୋଇପାରିଥିଲେ, ଏଥିରେ ସେ ଅତ୍ୟନ୍ତ ଗର୍ବ ଅନୁଭବ କରୁଥିଲେ । ଏହି ପୁନର୍ମିଳନ ପ୍ରକୃତରେ ଆନନ୍ଦଦାୟକ ଥିଲା । ଅବଶ୍ୟ, ମାତ୍ର ଅଳ୍ପ କେତେବର୍ଷ ପୂର୍ବରୁ ନେଲୀ ଦୁଇ ପୁଅଙ୍କ ସହିତ ମାଆଙ୍କୁ ଦେଖିବାକୁ ଥରେ ବିଲାତ ଆସି ସାରିଥିଲେ । ସେ ପନ୍ଦର ଦିନରେ ଥରେ ଲେଖାଏଁ ନିୟମିତ ଭାବରେ ସମସ୍ତଙ୍କର ଖବର ଲେଖି ମାଆଙ୍କୁ ଚିଠି ଦେଉଥିଲେ ।

କିଛିଦିନ ବିଶ୍ରାମ ନେଇ ଓ ଲଣ୍ଡନରେ ନିଜର ପୁରାତନ ବନ୍ଧୁମାନଙ୍କ ସହିତ ଦେଖା କରିସାରି ସେନଗୁପ୍ତ ମହାତ୍ମା ଗାନ୍ଧିଙ୍କ ସହିତ ଦେଖା କରିବାକୁ ଯାଇଥିଲେ । ମହାତ୍ମା ଗାନ୍ଧି ସେତେବେଳକୁ ଦ୍ୱିତୀୟ ଗୋଲ୍‌ଟେବୁଲ ବୈଠକ ପାଇଁ ସେଠାକୁ ଆସିଥାନ୍ତି । ସର୍ଦ୍ଦାର ପଟେଲଙ୍କର ବିବରଣୀ ଅନୁସାରେ ସେ ମହାତ୍ମାଜୀଙ୍କୁ ଭାରତର ପରିସ୍ଥିତି ବିଷୟରେ ଅବଗତ କରାଇଥିଲେ । ସେ ବଙ୍ଗଳାର ଘଟଣାବଳୀ, ବିଶେଷତଃ ଚିଟାଗଙ୍ଗର ବୀଭତ୍ସ ଲୀଳା ଏବଂ ହିଜଲି ଗୁଳିକାଣ୍ଡ ସମ୍ବନ୍ଧରେ ତାଙ୍କୁ ସମ୍ବାଦମାନ ଦେଇଥିଲେ । ଇଂଲଣ୍ଡକୁ ପ୍ରେରିତ ହେବାଲାଗି ଅନୁପଯୁକ୍ତ ବୋଲି ବିବେଚନା କରାଯାଉଥିବା ସଂବାଦଗୁଡ଼ିକ ଉପରେ କଟକଣା ରହିଥିବାରୁ ସେଠାରେ ସେହି ଘଟଣାଗୁଡ଼ିକୁ ପୂର୍ବରୁ କେହି ଜାଣି ନଥିଲେ । କ୍ରମଶଃ, ଯତୀନ୍ଦ୍ରମୋହନ ନିଜର ଉପଯୁକ୍ତ ମଞ୍ଚଗୁଡ଼ିକୁ ମଧ୍ୟ ଠାବ କରି ନେଇଥିଲେ, ଯେଉଁଠାରେ କି ନିର୍ବାଚିତ ବିଶେଷ ଗୋଷ୍ଠୀମାନଙ୍କ ଆଗରେ ସେ ଭାରତର ପରିସ୍ଥିତି ସମ୍ବନ୍ଧରେ ଭାଷଣ ଦେଇ ଅବଗତ କରାଇଥିଲେ ।

**ଲଣ୍ଡନ ସଭାମାନଙ୍କରେ ଭାଷଣ**

କମନ୍‌ଓ୍ୱେଲଥ ଅଫ୍ ଇଣ୍ଡିଆ ଲିଗ୍‌ର ସଂସଦ କମିଟି ଦ୍ୱାରା ନିମନ୍ତ୍ରିତ ହୋଇ ସେନଗୁପ୍ତ ଯେଉଁ ସଭାରେ ଭାଷଣ ଦେବାକୁ ଯାଇଥିଲେ, ସେଠାରେ ଅନ୍ୟ ପ୍ରମୁଖ ଓ ପ୍ରଭାବଶାଳୀ ବ୍ୟକ୍ତିଙ୍କ ବ୍ୟତୀତ କନ୍‌ଜରଭେଟିଭ ଦଳର କୋଡ଼ିଏ ଜଣ ପାର୍ଲିଆମେଣ୍ଟ ସଭ୍ୟ ମଧ୍ୟ ଉପସ୍ଥିତ ରହିଥିଲେ । ଏହି ସଭ୍ୟମାନଙ୍କ ମଧ୍ୟରୁ ଏକାଧିକଙ୍କର ଭାରତୀୟ ମାମଲାଗୁଡ଼ିକ ବିଷୟରେ ଦୀର୍ଘ ଅଭିଜ୍ଞତା ରହିଥିଲା । ଶ୍ରୀଯୁକ୍ତ ଗ୍ରେନ୍‌ଫେଲ୍ ସେନଗୁପ୍ତଙ୍କୁ କଲିକତା ସହରର ପୂର୍ବତନ ମେୟର୍, ଭାରତୀୟ ଜାତୀୟ କଂଗ୍ରେସର କାର୍ଯ୍ୟକାରୀ କମିଟିର ଜଣେ ସଭ୍ୟ, ବଙ୍ଗଳାର ଜଣେ ଲୋକପ୍ରିୟ ନେତା ତଥା ଜଣେ ପ୍ରବୀଣ ବାରିଷ୍ଟର ବୋଲି ପରିଚୟ କରାଇ ଦେଇଥିଲେ ।

ଚିଟାଗଙ୍ଗ ଓ ହିଜଲିରେ ଘଟିଥିବା ଘଟଣାଗୁଡ଼ିକୁ ସେନଗୁପ୍ତ ବିଶଦ ଭାବରେ ବର୍ଣ୍ଣନା କରିଥିଲେ ଏବଂ ଚିଟାଗଙ୍ଗରେ ଆଚରିତ ହୋଇଥିବା ଲଗାମଛଡ଼ା ନୃଶଂସତାର କେତୋଟି ଉଦାହରଣ

ଦେଇଥିଲେ । ବେସରକାରୀ ଅନୁସନ୍ଧାନ କମିଟିର ରିପୋର୍ଟକୁ ସେ ନିଜ ସହିତ ରଖିଥିଲେ ଓ ସେଥିରୁ ପ୍ରାସଙ୍ଗିକ ତଥ୍ୟ ଓ ଚିତ୍ରମାନ ଦେଇ ଆପଣାର ଭାଷଣଟିକୁ ପୁଷ୍ଟ କରିଥିଲେ ।

ହିଜଲି ସମ୍ବନ୍ଧରେ ସେ ସରକାରୀ ତଦନ୍ତ କମିଟି କିପରି ଗୁଳିକାଣ୍ଡ ଓ ଆକ୍ରମଣକୁ 'ଅନୁଚିତ ଏବଂ ଅବିବେକି' ବୋଲି ବର୍ଣ୍ଣନା କରିଥିଲେ, ସେ ତାହାର ବର୍ଣ୍ଣନା କରିଥିଲେ । ବଙ୍ଗଳାରେ ଯେଉଁ ବନ୍ଦୀମାନେ ଅଟକ ହୋଇ ରହିଛନ୍ତି, କଂଗ୍ରେସର ସଭ୍ୟରୂପେ ଯେଉଁମାନଙ୍କର ଅଧିକାଂଶଙ୍କୁ ସେ ବ୍ୟକ୍ତିଗତ ଭାବରେ ଜାଣିଛନ୍ତି ଓ ଯେଉଁମାନେ ହିଂସା ସହିତ ଆଦୌ ସଂପୃକ୍ତ ନୁହନ୍ତି, ଯତୀନ୍ଦ୍ର ମୋହନ ସେମାନଙ୍କ ବିଷୟରେ ଆବେଗର ସହିତ ସବୁକଥା କହିଥିଲେ । କେବଳ ଏକ 'ସତର୍କତାମୂଳକ ବ୍ୟବସ୍ଥା' ରୂପେ ହିଁ ସେମାନଙ୍କୁ ଅଟକ କରି ରଖାଯାଇଥିଲା ।

ସେନଗୁପ୍ତ କହିଥିଲେ, ୬000 ମାଇଲ୍ ଦୂରରେ ଥିବା ଲଣ୍ଡନରୁ କଦାପି ଭାରତର ଶାସନ କରାଯାଇପାରିବ ନାହିଁ । ବ୍ରିଟେନ୍‌ବାସୀ ଏବଂ ଭାରତୀୟ ପୋଲିସ୍‌ବାହିନୀ ଭାରତୀୟମାନଙ୍କୁ ସେମାନଙ୍କର ସ୍ୱାଧୀନତା ଏବଂ ଧନସମ୍ପତ୍ତିରୁ ବଞ୍ଚିତ କରି ରଖିଛନ୍ତି ଏବଂ ସେମାନଙ୍କର ପ୍ରାଣ ନେବା ପର୍ଯ୍ୟନ୍ତ ବି ସେମାନଙ୍କ ଉପରେ ନାନା ଅତ୍ୟାଚାର କରିବାରେ ଲାଗିଛନ୍ତି ।

## ପ୍ରଶ୍ନବାଣର ବର୍ଷଣ

ଅଧଘଣ୍ଟାକ ପାଇଁ ଭାଷଣ ଦେବାପରେ ସେନଗୁପ୍ତଙ୍କ ଉପରେ ନାନା ପ୍ରଶ୍ନବାଣର ବର୍ଷଣ ହୋଇଥିଲା । ସେଗୁଡ଼ିକର ଉତ୍ତର ଦେବାକୁ ଯାଇ ସେ ଦୃଢ଼ତାର ସହିତ କଂଗ୍ରେସର ହିଂସାତ୍ମକ କାର୍ଯ୍ୟକଳାପ ସହିତ ଆଦୌ କୌଣସି ସଂପର୍କ ରହିଥିବାର ଅନୁମାନକୁ ଖଣ୍ଡନ କରିଥିଲେ ଏବଂ ଏକଥା ମଧ୍ୟ କହିଥିଲେ ଯେ, କଂଗ୍ରେସ କେବେହେଲେ ହତ୍ୟାକାରୀମାନଙ୍କୁ କ୍ଷମା ଦେଇନାହିଁ । ଭଗତ ସିଂହ ଏବଂ ତାଙ୍କର ସାଥୀମାନଙ୍କୁ କଂଗ୍ରେସ କେବଳ ଦୟା ପ୍ରଦର୍ଶନ କରାଯାଉ ବୋଲି ପ୍ରାର୍ଥନା କରିଥିଲା । ସେ ଯୁକ୍ତି ଦେଖାଇ କହିଥିଲେ ଯେ, ଯଦି ସରକାର ସେହି ପ୍ରାର୍ଥନାକୁ ସ୍ୱୀକାର କରିଥାନ୍ତେ, ତେବେ ବଙ୍ଗଳାର ବିପ୍ଳବ - ସ୍ଥିତି ଉପରେ ତାହାର ଏକ ପ୍ରଶମନକାରୀ ପ୍ରଭାବ ନିଶ୍ଚୟ ପଡ଼ିଥାନ୍ତା । କାପ୍ଟେନ୍ କର୍ଟିସ୍ ଏବଂ ତାଙ୍କ ପରିବାରବର୍ଗଙ୍କର ହତ୍ୟାଲାଗି କଂଗ୍ରେସ କଦାପି ଦାୟୀ ହେବ ନାହିଁ କିମ୍ବା ସେହି ହତ୍ୟା ପ୍ରତି ତାହା କେବେହେଲେ ସମର୍ଥନ ଜଣାଇ ନାହିଁ । ଅନ୍ୟ ପକ୍ଷରେ ଏପରି ମଧ୍ୟ କୁହାଯାଇପାରିବ ଯେ, ପୋଲିସ୍ ଏବଂ ସରକାରୀ କର୍ମଚାରୀମାନେ ସରକାର ବାହାରେ ଥିବା ଇଉରୋପୀୟମାନଙ୍କ ସହିତ ମିଶି ଚିଟାଗଙ୍ଗ ପ୍ରଭୃତି ସ୍ଥାନରେ ନାନା ଅକଥନୀୟ ଅତ୍ୟାଚାରର କାରଣ ହୋଇଛନ୍ତି । ବିଦେଶୀ ରାଜତ୍ୱ ଅପସରି ନଗଲା ପର୍ଯ୍ୟନ୍ତ ବଙ୍ଗଳା ଅଥବା ଭାରତବର୍ଷରେ କଦାପି ଶାନ୍ତିର ପ୍ରତିଷ୍ଠା ହେବ ନାହିଁ । ଦୃଢ଼ ଶାସନ ଦ୍ୱାରା ଆଦୌ କୌଣସି ଫଳ ଫଳିବ ନାହିଁ, ତାହା ଖାଲି ଉତ୍ତେଜନା ବୃଦ୍ଧି କରିବାରେ ହିଁ ସାହାଯ୍ୟ କରୁଥିବ । ଭାୟୋଲେନ୍ସ୍ ପାର୍ଟି ଏବଂ କଂଗ୍ରେସ ମଧ୍ୟରେ ଏକ ସମାଧାନ ସମ୍ଭବ କରାଇବାର ଏକାନ୍ତ ଆବଶ୍ୟକତା ରହିଛି । ସ୍ୱାଧୀନତାର ପ୍ରତିଷ୍ଠା ହିଁ ଏହିସବୁର ଏକମାତ୍ର ପ୍ରତିକାର ବୋଲି ସେ ସୂଚିତ କରି ଦେଇଥିଲେ ।

## ଗାନ୍ଧିଜୀ ଚିଟାଗଙ୍ଗ ଅତ୍ୟାଚାରର ନିନ୍ଦା କଲେ

ନଭେମ୍ବର 24 ତାରିଖ ଦିନ ଲଣ୍ଡନ ଠାରେ ଫେଡ଼େରାଲ୍ ଷ୍ଟ୍ରାକ୍‌ଚର୍ ସବ୍‌କମିଟିର ବୈଠକରେ ଭାଷଣ ଦେଇ ଗାନ୍ଧିଜୀ ଭାରତରେ ହେଉଥିବା ସନ୍ତ୍ରାସବାଦର ବିଶେଷ ଭାବରେ ଉଲ୍ଲେଖ କରିଥିଲେ ।

ସେ କହିଥିଲେ, ''ଚିଟାଗଙ୍ଗ ଓ ହିଜଳି ଠାରେ ଘଟିଥିବା ଘଟଣାଗୁଡ଼ିକର ବିଶଦ ବିବରଣୀ ସହିତ ଶ୍ରୀଯୁକ୍ତ ସେନଗୁପ୍ତ ଏହି ଦେଶକୁ ଆସିଛନ୍ତି । ଶ୍ରୀ ସେନଗୁପ୍ତଙ୍କର ଯୁକ୍ତି ହେଉଛି ଯେ, ଦିଲ୍ଲୀ - ଚୁକ୍ତି ସ୍ୱାକ୍ଷରିତ ହେବା ପରଠାରୁ ବଙ୍ଗଳାକୁ ଶାନ୍ତିଚୁକ୍ତିର ପରିସର ବାହାରେ ରଖି ଦିଆଯାଇଛି ଏବଂ ଅହିଂସ କଂଗ୍ରେସ କର୍ମୀମାନଙ୍କୁ ସନ୍ତ୍ରାସବାଦର ଦମନ କରାଯାଉଥିବା ଆଳରେ ନାନା ଶାସ୍ତିବିଧାନ କରାଯାଉଛି । ବଙ୍ଗଳାର ସବୁ ପାର୍ଟିର ସଭ୍ୟମାନଙ୍କ ଦ୍ୱାରା ସ୍ୱାକ୍ଷରିତ ହୋଇଥିବା ଚିଟାଗଙ୍ଗ ରିପୋର୍ଟର ଅସଲ କଥା ହେଉଛି ଯେ, ଚିଟାଗଙ୍ଗରେ ଖାକିପିନ୍ଧା ସୈନ୍ୟବାହିନୀର ଯାବତୀୟ ଉପାୟକୁ ଅବଲମ୍ବନ କରାଯାଇଛି ।''

ମହାତ୍ମାଜୀ ପୁଣି କହିଲେ ଯେ, ଏହିସବୁ ଉପାୟକୁ କାମରେ ଲଗାଇ ସରକାର କଦାପି ସଂତ୍ରାସବାଦର ଦମନ କରିବାକୁ ସମର୍ଥ ହେବେ ନାହିଁ । କଲିକତାର ରାସ୍ତାମାନଙ୍କରେ ସାମରିକ କ୍ଷମତାର ଯେତେ ପ୍ରଦର୍ଶନ କରାଗଲେ ମଧ୍ୟ ତାହା ସଂତ୍ରାସବାଦୀମାନଙ୍କୁ କୌଣସି ଭୟ ଦେଖାଇ ପାରିବ ନାହିଁ ଏବଂ କଂଗ୍ରେସ ଲୋକଙ୍କୁ ମଧ୍ୟ ଆଇନ୍ ଅମାନ୍ୟରୁ କଦାପି ନିରସ୍ତ କରିପାରିବ ନାହିଁ ।

ଗାନ୍ଧିଜୀ ଦୃଢ଼ତାର ସହିତ ଅସ୍ୱୀକାର କରିଥିଲେ ଯେ, କଂଗ୍ରେସ ''ପ୍ରକୃତରେ କୌଣସି ସଂତ୍ରାସବାଦୀ ଅପରାଧ ଲାଗି ଆଦୌ ଦାୟୀ ହୋଇପାରିବ ।''

### ସେନଗୁପ୍ତଙ୍କର ପରବର୍ତ୍ତୀ ସଭା

ଭାରତୀୟମାନଙ୍କର ଆଉଗୋଟିଏ ବିରାଟ ସଭା ଭିକ୍ଟୋରିଆ ହଲ୍‌ରେ ଅନୁଷ୍ଠିତ ହୋଇଥିଲା । ଏକ ଦୀର୍ଘ ଭାଷଣରେ ଯତୀନ୍ଦ୍ରମୋହନ ସେନଗୁପ୍ତ ସେଠାରେ ଚିଟାଗଙ୍ଗ ଓ ହିଜଳି ଠାରେ ଘଟିଥିବା ଘଟଣାଗୁଡ଼ିକ ବିଷୟରେ କଂଗ୍ରେସ ତଦନ୍ତ କମିଟିର ତଥ୍ୟଗୁଡ଼ିକୁ ଶ୍ରୋତାମାନଙ୍କ ଆଗରେ ଉପସ୍ଥାପିତ କରିଥିଲେ । କଂଗ୍ରେସ ନେତୃତ୍ୱର ଯେଉଁ ସମାଲୋଚକମାନେ ଅଜାଣତରେ ଭାରତବର୍ଷରେ ନିଅାଁଗିଳା ଶାସକମାନଙ୍କର କାର୍ଯ୍ୟକୁ ସମର୍ଥନ କରୁଛନ୍ତି, ସେ ଅତ୍ୟନ୍ତ ଶକ୍ତିଶାଳୀ ଭାବରେ ସେମାନଙ୍କୁ ଆହ୍ୱାନ ଜଣାଇଥିଲେ । ସଭା ଶେଷରେ ହିଜଳି ଏବଂ ଚିଟାଗଙ୍ଗ ଠାରେ ନିହତ ହୋଇଥିବା ଭାରତୀୟମାନଙ୍କର ସମ୍ମାନାର୍ଥେ ଶ୍ରୋତୃମଣ୍ଡଳୀ ନୀରବରେ କିଛି ସମୟ ଠିଆ ହୋଇଥିଲା ।

ସେନଗୁପ୍ତ ଏହି ମତବ୍ୟକ୍ତ କରିଥିଲେ ଯେ, ଅହିଂସ ଅସହଯୋଗ ଆନ୍ଦୋଳନ ବିଫଳ ହୋଇଛି ବୋଲି ଯଦି କେହି ପ୍ରମାଣ କରିଦେଇପାରିବ, ତେବେ ସେ ଆଉ ଯେ କୌଣସି ପନ୍ଥା ଗ୍ରହଣ କରିବାଲାଗି ନିଶ୍ଚୟ ସମ୍ମତ ହେବେ । ସେତେବେଳେ ଲଣ୍ଡନରେ ଥିବା ପଣ୍ଡିତ ମଦନମୋହନ ମାଲବ୍ୟ ତା'ପରେ ଉପସ୍ଥିତ ସମସ୍ତଙ୍କୁ ନିବେଦନ କରିଥିଲେ ଯେ, ଏକ ସମ୍ମିଳିତ ଏକତାବଦ୍ଧ ଆଭିମୁଖ୍ୟ ଉପସ୍ଥାପିତ କରିପାରିବାଲାଗି ଭାରତୀୟମାନଙ୍କ ମଧ୍ୟରେ ରହିଥିବା ଯାବତୀୟ ପାର୍ଥକ୍ୟର ସାଧାରଣ ସଭାରେ ନୁହେଁ, ମାତ୍ର ଘରୋଇ ଭାବରେ ସମାଧାନ ହୋଇଯିବା ଉଚିତ ।

ଭାରତ ବିଷୟରେ ଆଗ୍ରହ ପ୍ରକାଶ କରୁଥିବା କେତେକ ପାର୍ଲିଆମେଣ୍ଟ ସଦସ୍ୟଙ୍କ ସହିତ ଅନୌପଚାରିକ କଥାବାର୍ତ୍ତା ବେଳେ ସେନଗୁପ୍ତ ସେମାନଙ୍କୁ କହିଥିଲେ ଯେ, ସେମାନଙ୍କ ମଧ୍ୟରୁ କାହାରି ପକ୍ଷରେ ଭାରତକୁ ଯାଇ ଏଠି ବିଲାତରେ ଘଟିଥିବା କୌଣସି ଘଟଣା ବିଷୟରେ କହିବା ଯେତିକି ଅସମ୍ଭବ, ହଜାର ହଜାର ମାଇଲ୍ ସମୁଦ୍ରପଥ ଅତିକ୍ରମ କରି ବଙ୍ଗଳାର ବହୁ ଦୂରବର୍ତ୍ତୀ ସ୍ଥାନମାନଙ୍କରେ କ'ଣସବୁ ଘଟୁଛି, ଏଠାକୁ ଆସି ସେହିସବୁ ବିଷୟରେ କହିବା ତାଙ୍କ ପକ୍ଷରେ ମଧ୍ୟ ଠିକ୍ ସେତିକି ଅସମ୍ଭବ ଓ ଅବାନ୍ତର । ତେଣୁ, ଭାରତବର୍ଷକୁ ତା'ର ସ୍ୱାଧୀନତା ଦେଇଦେଲେ ହିଁ

ତା'ର ପ୍ରତିକାର ସମ୍ଭବ ହେବ । ସେ ପୁଣି କହିଥିଲେ ଯେ, ଭାରତବର୍ଷରେ ଘଟୁଥିବା ଘଟଣାଗୁଡ଼ିକ ବିଷୟରେ ଇଂଲଣ୍ଡରେ ଲୋକମାନଙ୍କର ଆଦୌ ଠିକ୍ ଠିକ୍ ଧାରଣା ନାହିଁ । ଗାନ୍ଧିଜୀଙ୍କ ସହିତ ଏକ ମୀମାଂସା ନ ହୋଇଥିବା ପର୍ଯ୍ୟନ୍ତ ଭାରତବର୍ଷରେ ଶାନ୍ତିପ୍ରତିଷ୍ଠା ହୋଇପାରିବ ନାହିଁ ।

ଷ୍ଟ୍ରାଣ୍ଡର ଏସେକ୍ସ ହଲ୍‌ଠାରେ ଯତୀନ୍ଦ୍ରମୋହନ ଆଉଗୋଟିଏ ସଭାରେ ଭାଷଣ ଦେଇଥିଲେ । ସେଠାରେ ପଣ୍ଡିତ ମାଲବ୍ୟ ଏବଂ ସରୋଜିନୀ ନାଇଡୁ ମଧ୍ୟ ଅଂଶଗ୍ରହଣ କରିଥିଲେ ।

## ଲଣ୍ଡନରେ ସାଂବାଦିକମାନଙ୍କ ସହିତ ସାକ୍ଷାତକାର

ସେନଗୁପ୍ତ ଇଂଲଣ୍ଡ, ଆମେରିକା ଓ ଭାରତର ସଂବାଦ ପ୍ରତିନିଧିମାନଙ୍କୁ ଏକ ସାକ୍ଷାତକାରରେ ଭେଟିଥିଲେ ।

'ଫ୍ରି ପ୍ରେସ' ସହିତ ଏକ ସାକ୍ଷାତକାରରେ ଶ୍ରୀ ସେନଗୁପ୍ତ ଲଣ୍ଡନରେ କହିଥିଲେ,

''ମହାମାନ୍ୟ ବଡ଼ଲାଟ୍ ଏବଂ ଇଂରେଜ ସରକାର କଂଗ୍ରେସ ବିରୋଧରେ ଯୁଦ୍ଧଘୋଷଣା କରି ସାରିଛନ୍ତି । ପ୍ରଧାନମନ୍ତ୍ରୀଙ୍କ ପରି ବଡ଼ଲାଟ ମଧ୍ୟ ତାଙ୍କ ବିବୃତିରେ ଏକ ଭୁଲ୍ ଧାରଣା ଦେଇଛନ୍ତି ଯେ ଇଂଲଣ୍ଡ ଭାରତବର୍ଷକୁ ପୂର୍ଣ୍ଣ ସ୍ୱାଧୀନତା ଦେବାଲାଗି ପୂର୍ବରୁ ହିଁ ରାଜି ହୋଇସାରିଛି ଏବଂ ତା'ପରେ ସେ ଜାତୀୟତାବାଦୀ ଭାରତ ବଡ଼ ଅବୁଝା ହେଉଛି ଓ ନ୍ୟାୟଯୁକ୍ତିକୁ ଶୁଣୁ ନାହିଁ ବୋଲି ତା'ଉପରେ ଆକ୍ରମଣ କରିଛନ୍ତି । ପ୍ରକୃତ କଥା ହେଉଛି ଯେ ଇଂଲଣ୍ଡ ଭାରତବର୍ଷକୁ ସ୍ୱାଧୀନତା ଦେବାକୁ ନାହିଁ ବୋଲି କହିଛି । ଏକ ପକ୍ଷରେ, ଭାରତବର୍ଷ ତା'ର ନିଜର ଭାଗ୍ୟକୁ ନିଷ୍ପତ୍ତି କରିବାର ଅଧିକାର ଲାଭ କରିବାକୁ ଯାଉଛି ଏବଂ ଅପରପକ୍ଷରେ ଭାରତୀୟମାନଙ୍କୁ ବ୍ରିଟିଶ ମାଲ୍ ବୟକଟ୍ କରିବାକୁ ଅନୁମତି ଦିଆଯିବ ନାହିଁ, ଗୋଟାଏ ନିଃଶ୍ୱାସରେ ଦୁଇଟିଯାକ କଥା କହି ବଡ଼ଲାଟ ପ୍ରକୃତରେ ପିଲାଙ୍କ ପରି ଆଚରଣ ଦେଖାଇଛନ୍ତି । ଭାରତୀୟମାନଙ୍କ ଲାଗି ଗ୍ରହଣୀୟ ହୋଇଥାଉ ବା ନ ହୋଇଥାଉ ପଛକେ, ତେଣେ ବଡ଼ଲାଟ ଯେତେବେଳେ ସୁରକ୍ଷାମୂଳକ ବ୍ୟବସ୍ଥାଗୁଡ଼ିକ ଉପରେ ଜୋର୍‌ଦେଇ କହୁଥିଲେ, ଭାରତରେ ବ୍ୟବସାୟ କରୁଥିବା ଜଣେ ବ୍ରିଟେନ୍‌ବାସୀ ମିଷ୍ଟର ଭିଲିଅର୍ସ କେନ୍ଦ୍ରରେ ଆଦୌ କୌଣସି ଦାୟିତ୍ୱ ନ୍ୟସ୍ତ ନଥାଇ ତଥାକଥିତ ପ୍ରାଦେଶିକ ସ୍ୱତନ୍ତ୍ରତାର ପ୍ରସ୍ତାବ ବାଢ଼ିବାରେ ଲାଗିଥିଲେ । ପ୍ରକୃତରେ କେଉଁ ପ୍ରଦେଶ ଏହି ସ୍ୱତନ୍ତ୍ରତା ଲାଗି ଯୋଗ୍ୟ ହେଲାଣି କି ନାହିଁ ଆପାତତଃ ମିଷ୍ଟର ଭିଲିଅର୍ସ ଏବଂ ଭାରତରେ ତାଙ୍କର ଦେଶବାସୀମାନେ ହିଁ ନିରଙ୍କୁଶ ଭାବରେ ସେ କଥା ବିଚାର କରି ଠିକ୍ କରିବେ ବୋଲି ଆପାତତଃ ମନେ ହେଉଥିଲା । ଏହି ସ୍ଥିତିରେ ଅବାନ୍ତରତା ଅବଶ୍ୟ ଅତ୍ୟନ୍ତ ସ୍ପଷ୍ଟ ହୋଇଯାଉଛି ।''

—('ଅମୃତ ବଜାର ପତ୍ରିକା,' ଜାନୁଆରୀ 3, 1931)

## ଲଣ୍ଡନ ଛାଡ଼ିବା ଅବଶ୍ୟମ୍ଭାବୀ ହେଲା

ଇତିମଧ୍ୟରେ ଦ୍ୱିତୀୟ ଗୋଲ୍‌ଟେବୁଲ୍ ବୈଠକ ବିଫଳ ହୋଇଗଲା ବୋଲି ପ୍ରତୀତ ହେଲା ଏବଂ ଭାରତୀୟ ଜାତୀୟ କଂଗ୍ରେସର ଏକକ ପ୍ରତିନିଧି ଗାନ୍ଧିଜୀ 'ଖାଲି ହାତରେ' ଲଣ୍ଡନ ଛାଡ଼ିବା ଲାଗି ସଜ ହେଉଥିଲେ ।

ଭାରତୀୟ ରାଜନୀତି କ୍ଷେତ୍ରରେ ଅନେକ ଗମ୍ଭୀର ଘଟଣା ଘଟୁଥିବାର ଖବର ଯତୀନ୍ଦ୍ରମୋହନଙ୍କ ପାଖରେ ଯାଇ ପହଞ୍ଚୁଥିଲା । ତେଣୁ, ତାଙ୍କର ସ୍ୱାସ୍ଥ୍ୟ ତଥାପି ସନ୍ତୋଷଜନକ ଭାବରେ ଭଲ ଆଡ଼କୁ

ନ ଆସିଥିଲେ ମଧ୍ୟ, ଇଉରୋପରେ ତାଙ୍କର ରହଣିକାଳକୁ ସେ ଏତିକିରେ ଶେଷ କରିବାଲାଗି ବାଧ୍ୟ ହୋଇଥିଲେ । ଦେଶସାରା କଂଗ୍ରେସ ନେତା ଓ କର୍ମୀମାନେ ଗିରଫ ହେଉଥିଲେ । ସେନଗୁପ୍ତ ସସ୍ତ୍ରୀକ ଜାନୁଆରୀ 3 ତାରିଖରେ ଲଣ୍ଡନ ଛାଡ଼ିଲେ । ସେମାନେ ଜାନୁଆରୀ 20 ତାରିଖରେ ଯାଇ ଭାରତରେ ପହଞ୍ଚିବେ ବୋଲି ଆଶା କରାଯାଉଥିଲା ।

ସେମାନେ ଲଣ୍ଡନରୁ ପାରିସ୍ ଆସିଲେ । ସେଠାରେ ଭାରତୀୟ ଛାତ୍ରମାନେ ସେମାନଙ୍କୁ ହାର୍ଦ୍ଦିକ ସମ୍ବର୍ଦ୍ଧନା କରିଥିଲେ । ଯତୀନ୍ଦ୍ରମୋହନ ଭାରତୀୟ ଛାତ୍ରମାନଙ୍କର ଗୋଟିଏ ବଡ଼ ସଭାରେ ଭାଷଣ ଦେଇଥିଲେ । ସେଥିରେ ଅନ୍ୟ ଭାରତୀୟମାନେ ମଧ୍ୟ ଥିଲେ, କେତେଜଣ ପାରିସ୍‌ବାସୀ ଥିଲେ । ସେ ଭାରତର ବିସ୍ଫୋରକ ରାଜନୀତିକ ପରିସ୍ଥିତିର ଚର୍ଚ୍ଚା କରିଥିଲେ ଓ ସେଇଥିଲାଗି ସେ ଇଉରୋପରେ ତାଙ୍କର ଛୁଟିକୁ କମାଇ ଦେଇ ଭାରତ ଯିବାକୁ ବାଧ୍ୟ ହେଲେ ବୋଲି ପ୍ରକାଶ କରିଥିଲେ ।

ଦୁଇଦିନ ପରେ ଏକ ଇଟାଲୀୟ ଜାହାଜରେ ସେମାନେ ଜେନୋଆ ଠାରୁ ଭାରତ ଯାତ୍ରା କରିଥିଲେ ।

### ଲଣ୍ଡନରୁ ଫେରି ସଙ୍ଗେ ସଙ୍ଗେ ଗିରଫ

ଇଉରୋପରୁ ଫେରି ଭାରତରେ ପହଞ୍ଚିବା ମାତ୍ରକେ 1932 ମସିହା ଜାନୁଆରୀ 20 ତାରିଖ ଦିନ କୌଣସି କାରଣାଦି ନ ଦର୍ଶାଇ ବମ୍ବେଠାରେ ହଠାତ୍ ତାଙ୍କୁ ଗିରଫ କରି ନିଆଗଲା । ଏହି କାପୁରୁଷୋଚିତ ଘଟଣା କ୍ରମଶଃ ଅଥଚ ଅତ୍ୟନ୍ତ ସୁନିଶ୍ଚିତ ଭାବରେ ତାଙ୍କର ଜୀବନାବସାନକୁ ତ୍ୱରାନ୍ୱିତ କରି ନେଇଥିଲା । ସେତେବେଳେ ତାଙ୍କୁ ମୋଟେ 48 ବର୍ଷ ବୟସ ।

ଇଟାଲୀୟ ଜାହାଜ 'ଗାଙ୍ଗେ' ବମ୍ବେ ପୋତାଶ୍ରୟରେ ଲଙ୍ଗର ପକାଇବା ପୂର୍ବରୁ ସି.ଆଇ.ଡ଼ି ବିଭାଗର ମୁଖ୍ୟ ପେଟିଗାରା ତାଙ୍କୁ ଗିରଫ କରିଥିଲେ ।

ଶ୍ରୀମତୀ ସେନ୍‌ଗୁପ୍ତଙ୍କ ଭାଷାରେ କହିବାକୁ ଗଲେ, "ଆଜି ଭୋର ଚାରିଟା ସମୟରେ ଗାଙ୍ଗେ ଜାହାଜ ଯେମିତି ଜେଟି ପାଖରେ ଆସି ଲାଗିଛି, ଗୋଟିଏ ଦଳ ପୋଲିସ୍ ଶ୍ରୀ ସେନଗୁପ୍ତଙ୍କୁ ଗିରଫ କରିବା ପାଇଁ ସେମିତି ଜାହାଜ ଉପରକୁ ଚାଲି ଆସିଲେ । ମାତ୍ର ଇଟାଲୀୟ ପତାକାର ସୁରକ୍ଷା ମଧ୍ୟରେ ରହିଥିବା ଜଣେ ବ୍ୟକ୍ତିଙ୍କୁ ପୋଲିସ୍ ଯେପରି ଭାବରେ ଗିରଫ କରିବାକୁ ଚେଷ୍ଟା କରୁଥିଲେ, ଜାହାଜର କାପ୍ଟେନ୍ ତାହା ବିରୋଧରେ ପ୍ରତିବାଦ କରିଥିଲେ । ଫଳରେ ପୋଲିସ୍ ଦଳ ଚାଲି ଯାଇଥିଲେ । ଜଣାଯାଉଛି, ଜାହାଜରେ ଥିବା ଶ୍ରୀ ସେନଗୁପ୍ତଙ୍କୁ ଗିରଫ କରିବା ସକାଶେ ଆବଶ୍ୟକ ଅନୁମତି ଲାଭ କରିବାକୁ ଇଟାଲୀୟ ଦୂତାବାସକୁ ଯାଇଥିଲେ । ସେଠାରୁ ସାଢ଼େ ସାତଟା ବେଳକୁ ଫେରିଆସି ସେମାନେ ଶ୍ରୀ ସେନଗୁପ୍ତଙ୍କୁ ଗିରଫ କଲେ ।

"ଅବଶ୍ୟ ଜାଣିବାକୁ ମିଳିଲା ଯେ, ବଙ୍ଗ ସରକାରଙ୍କର ଆଦେଶକ୍ରମେ ଏହି ଗିରଫ କରାଯାଇଥିଲା । ବଙ୍ଗ ସରକାରଙ୍କର ପରବର୍ତ୍ତୀ ଆଦେଶକୁ ଅପେକ୍ଷାକରି ଶ୍ରୀଯୁକ୍ତ ସେନଗୁପ୍ତଙ୍କୁ ଯେରୱାଡ଼ା ଜେଲକୁ ପଠାଇ ଦିଆଯାଇଥିଲା ।

"ଗିରଫ ପରେ ଶ୍ରୀ ସେନଗୁପ୍ତଙ୍କୁ ପୋଲିସ୍ କମିଶନରଙ୍କ ପାଖକୁ ନିଆଗଲା । ସେଠାରେ ତାଙ୍କୁ କଲିକତାରୁ ଆସି ପହଞ୍ଚିଥିବା ତାଙ୍କର ପୁଅ ଏବଂ ଦୁଇଜଣ ସେକ୍ରେଟାରୀଙ୍କ ସହିତ ଦେଖା କରିବାକୁ

ଅନୁମତି ଦିଆଗଲା । ଜଣେ ସେକ୍ରେଟାରୀ ସେନଗୁପ୍ତଙ୍କ ସହିତ ପୁନାଯାଏ ଯାଇଥିଲେ । ତାଙ୍କ ପୁଅ, ଝିଆରୀ, ଶ୍ରୀମତୀ ସେନଗୁପ୍ତ ଓ ଅନ୍ୟ ସେକ୍ରେଟାରୀ ଜଣକ ଥାଜି କଲିକତା ଉଦ୍ଦେଶ୍ୟରେ ଯାତ୍ରା କରିବେ ।''

— (''ଅମୃତ ବଜାର ପତ୍ରିକା'', ଜାନୁଆରୀ 21, 1932)

ସେନଗୁପ୍ତ ଗିରଫ ହେବାପରେ ସାଧାରଣଙ୍କ ତରଫରୁ ପ୍ରତିବାଦ ଜ୍ଞାପନ କରାଯାଇଥିଲା ଏବଂ ବମ୍ବେ ସହରରେ ହରତାଳ ପାଳିତ ହୋଇଥିଲା । ସବୁ ମାର୍କେଟ୍‌ରେ ଦୋକାନସବୁ ବନ୍ଦ ରହିଥିଲା ।

ତାଙ୍କୁ ଗୋପନରେ ବମ୍ବେରୁ ଅନ୍ୟତ୍ର ନିଆଯିବା ସମୟରେ ପୋଲିସ୍‌ମାନଙ୍କ ଗହଣରେ ତାଙ୍କୁ ଠିକ୍ କେଉଁ ସ୍ଥାନକୁ ନିଆଗଲା, ସେକଥା ପ୍ରଥମେ କେହି ଜାଣିପାରି ନଥିଲେ । ସରକାରୀ କର୍ତ୍ତାମାନଙ୍କ ମଧ୍ୟରୁ କେହିହେଲେ ତାଙ୍କର ଭଗ୍ନ ସ୍ୱାସ୍ଥ୍ୟ ବିଷୟରେ କୌଣସି ବିଚାର କରି ନଥିଲେ । ହଠାତ୍ ଏକ ସଂବାଦପତ୍ରର ବିବରଣୀରୁ (''ଅମୃତ ବଜାର ପତ୍ରିକା'', 24.1.32) ଜଣାପଡ଼ିଲା ଯେ, ଯତୀନ୍ଦ୍ର ମୋହନ ସେନଗୁପ୍ତଙ୍କୁ ରାଣାଘାଟ ଷ୍ଟେସନ ଠାରେ ଦେଖିବାକୁ ମିଳିଥିଲା । ସେଠାରେ ସେ ପୋଲିସ୍ ଅଫିସରମାନଙ୍କର ଜିମାରେ ରହିଥିଲେ ଏବଂ ସେମାନଙ୍କ ଠାରୁ ସଂପୃକ୍ତ ସାମ୍ବାଦିକ ଜାଣିବାକୁ ପାଇଲେ ଯେ, ସେତେବେଳେ ତାଙ୍କୁ ଦାର୍ଜିଲିଂ ନିଆଯାଉଛି । ତା'ପରେ ଏକଥା ମଧ୍ୟ ଜଣାପଡ଼ିଲା ଯେ, ସେନଗୁପ୍ତ ଦାର୍ଜିଲିଂ ଜେଲ୍‌ରେ ରହିଲେ ।

ସରକାରଙ୍କ (ଜେଲ୍ ଏବଂ ପୋଲିସ୍ କର୍ତ୍ତୃପକ୍ଷ) ପକ୍ଷରେ ଏହା ଏକ ନୃଶଂସ କାର୍ଯ୍ୟ ଥିଲା ଯେ, ସେନଗୁପ୍ତଙ୍କ ପାହିଆର ଜଣେ ବ୍ୟକ୍ତିଙ୍କୁ ସେ କ୍ରମଶଃ ଅଧିକ ଅଧିକ ଅସୁସ୍ଥ ହୋଇ ପଡୁଥିବା ସମୟରେ ଦାର୍ଜିଲିଂରେ ପ୍ରବଳ ଶୀତ ଓ ତୁଷାରପାତ ହେଉଥିବା ବେଳେ ଜାନୁଆରୀ ମାସର ଶେଷ ସପ୍ତାହରେ ସେଠାକୁ ନିଆ ଯାଇଥିଲା । ସେନଗୁପ୍ତଙ୍କ ପାଖରେ ଶୀତବସ୍ତ୍ର କୁହାଯିବା ଭଳି କିଛି ନଥିଲା । ସଂବାଦ ପାଇବା ମାତ୍ରକେ ଶ୍ରୀମତୀ ନେଲୀ ସେନଗୁପ୍ତ ସେନଗୁପ୍ତଙ୍କର ଘରୋଇ ସେକ୍ରେଟାରୀ ଏସ୍.ବି. ସେନଗୁପ୍ତଙ୍କୁ ସାଙ୍ଗରେ ନେଇ ଦାର୍ଜିଲିଂ ଯାଇଥିଲେ । ଏହି ସେକ୍ରେଟାରୀ ହିଁ ଜାନୁଆରୀ 27 ତାରିଖରେ ତାଙ୍କୁ ତାଙ୍କ ନିଜର ଗରମ ବସ୍ତ୍ରାଦି ଆଣି ଦେଇଥିଲେ ।

ଶ୍ରୀମତୀ ସେନଗୁପ୍ତ ଜେଲ୍ ସୁପରିଣ୍ଟେଣ୍ଡେଣ୍ଟ୍ ଏବଂ ଜିଲ୍ଲା କର୍ତ୍ତୃପକ୍ଷଙ୍କ ପାଖରେ ଆବେଦନ କରିଥିଲେ ଯେ, ତାଙ୍କର ସ୍ୱାମୀଙ୍କୁ ଅନ୍ୟ କୌଣସି ସ୍ଥାନକୁ ବଦଳି କରି ନିଆଯାଉ, କାରଣ ଏତେ ଅଧିକ ଉଚ୍ଚତାରେ ଏବଂ ପ୍ରବଳ ଶୀତରେ ରହିଲେ ତାଙ୍କର ରକ୍ତଚାପ ବୃଦ୍ଧି ପାଇଯିବ । ତିନିଦିନ ଭିତରେ ସେନଗୁପ୍ତଙ୍କୁ ଜଲପାଇଗୁଡ଼ି ଜେଲ୍‌କୁ ବଦଳି କରାଯାଇଥିଲା ।

ଅବଶ୍ୟ ଅଳ୍ପ କେତେଦିନ ପରେ ତାଙ୍କୁ କଲିକତା ଅଣାଗଲା । ପ୍ରଥମ ଅଳ୍ପ କେତେଦିନ ପାଇଁ ସେ ଆଲିପୁର ଜେଲ୍‌ରେ ରହିଲେ ।

## ଆଲିପୁର ଜେଲ୍‌ରେ ଅନୁଭୂତି

''ଆଲିପୁର ଜେଲ୍‌ରେ ଜଣେ ବନ୍ଦୀ (ରାଜଦ୍ରୋହ ଅପରାଧରେ ଦଣ୍ଡିତ) ହିସାବରେ ମୋର ରହଣି କାଳରେ ମୁଁ ଏବଂ ମୋର ସହବନ୍ଦୀମାନେ ଦେଶପ୍ରିୟ ଯତୀନ୍ଦ୍ରମୋହନଙ୍କ ମୂଲ୍ୟବାନ୍ ସାନ୍ନିଧ୍ୟରେ ରହିବାର ସୌଭାଗ୍ୟ ଲାଭ କରିଥିଲୁ । ଏଥିରେ ଆମେ ଯେତିକି ବିସ୍ମିତ ହେଲୁ, ସେତିକି ଖୁସି ମଧ୍ୟ ହେଲୁ । ଜଣେ ଅସୁସ୍ଥ ବନ୍ଦୀରୂପେ ତାଙ୍କୁ ଜଲପାଇଗୁଡ଼ି ଜେଲ୍‌ରୁ ଏଠାକୁ ଅଣାଯାଇଥିଲା ।'' - ଏକ ସଂସ୍କରଣରେ ଚିତ୍ତରଞ୍ଜନ ରାୟ ଚୌଧୁରୀ ଏହିପରି ଲେଖିଛନ୍ତି ।

(''ଆନନ୍ଦ ବଜାର ପତ୍ରିକା'' ଜୁଲାଇ 25, 1933) ।

''ଶ୍ରୀଯୁକ୍ତ ସେନଗୁପ୍ତଙ୍କ ପାଇଁ ଆମେ କୋଠରିଗୁଡ଼ିକୁ ଖାଲିକରି ଦେଇଥିଲୁ । ସେ ମଧ୍ୟ ସେହିଠାରେ ରହିବାକୁ ଅଧିକ ପସନ୍ଦ କରିଥିଲେ । ତାଙ୍କୁ ଏକ ଇନ୍‌ଭାଲିଡ୍ ଚେୟାର୍‌ରେ ଭିତରକୁ ଅଣାଯାଇଥିଲା । ଆମେ ସମସ୍ତେ ତାଙ୍କୁ ଘେରି ଏକତ୍ର ହୋଇଥିଲୁ ଏବଂ ଆମର ଶ୍ରେଷ୍ଠ ସମ୍ମାନ ପ୍ରଦର୍ଶନ ସହିତ ତାଙ୍କର ସ୍ୱାଗତ କଲୁ । ବନ୍ଦୀଶାଳାରେ ଆମ୍ଭମାନଙ୍କୁ ଭେଟି ସିଏ ମଧ୍ୟ ଭାରି ଖୁସି ହୋଇଥିଲେ । କିଛି ସମୟ ବିଶ୍ରାମ କରିବାପରେ ସେ ଆମକୁ ବିଭିନ୍ନ ବିଷୟରେ କେତେ କଥା କହିଥିଲେ, ଅଧିକାଂଶଟି ଅରାଜନୀତିକ ବିଷୟଗୁଡ଼ିକ ସମ୍ବନ୍ଧରେ କହିଥିଲେ । ସେ କହିଥିଲେ ଯେ, ଦେଶରେ ବିଭିନ୍ନ ଜେଲ୍‌ରେ ତାଙ୍କର ଯେତେଯେତେ ଅନୁଭୂତି ହୋଇଛି, ସେହି ଦୃଷ୍ଟିରୁ ସେ ଅବଶ୍ୟ କହିବେ ଯେ ଏଗୁଡ଼ିକୁ ଆଦୌ ଗୋଟିଏ ଗୋଟିଏ ସଂଶୋଧନ ଗୃହ ବୋଲି କୁହାଯାଇପାରିବ ନାହିଁ । ଉଦାହରଣ ଦେଇ ସେ କହିଥିଲେ ଯେ, ଏଠାରେ ନୂଆଶିଖାଳି ଚୋରମାନେ ଚତୁରତାର ଅପରାଧୀରେ ପରିଣତ ହୁଅନ୍ତି, କାରଣ ଏକ ଅଧିକ ଭଲ ଜୀବନଯାପନ ଲାଗି ଏଠାରେ ସେମାନଙ୍କୁ ଆଦୌ କୌଣସି ଶିକ୍ଷା କିମ୍ବା ପ୍ରଶିକ୍ଷଣ ପ୍ରଦାନ କରାଯାଏ ନାହିଁ । ଆଧୁନିକ ଯୁଗରେ ଏହି ଜେଲ୍‌ଗୁଡ଼ିକର ଅବଶ୍ୟ ସଂସ୍କାର କରାଯିବା ଉଚିତ । କିଛିଦିନ ପରେ ତାଙ୍କୁ ଉପର ମହଲାରେ ଥିବା ଗୋଟିଏ ବଖରାକୁ ନେଇ ନିଆ ଯାଇଥିଲା, ମାତ୍ର ତଥାପି ସିଏ ଆମକୁ ଏକୁଟିଆ ରହିବାକୁ ଆଦୌ ଛାଡ଼ିଦେଇ ନଥିଲେ । ପ୍ରତିଦିନ ଦି'ପହରେ ସେ ଆମକୁ ଲୋଡୁଥିଲେ ଏବଂ ଆମ ସହିତ ତାଆସ ଖେଳୁଥିଲେ । ଖେଳରେ ମୁଁ ତାଙ୍କର ଯୋଡ଼ି ହୋଇ ବସୁଥିଲି । ଅନ୍ୟ ପକ୍ଷରେ ବସନ୍ତ ଭଟ୍ଟାଚାର୍ଯ୍ୟ ଓ ଜବାହର ବକ୍ସି ବସୁଥିଲେ । ଆମେ ବୟସରେ ତାଙ୍କଠାରୁ ଅନେକ ସାନ ଥିଲୁ, ପ୍ରାୟ ତାଙ୍କ ପୁଅପରି ଥିଲୁ । ସେ ମୋତେ 'ଚୌଧୁରୀ' ବୋଲି ଡାକିବାରୁ ମୁଁ ସେଥିରେ ଆପତ୍ତି କରିଥିଲି । ମୁରୁକି ହସି ଶ୍ରୀ ସେନଗୁପ୍ତ ଉତ୍ତର ଦେଲେ, 'ମୁଁ ତୁମର ଆଦୌ କୌଣସି ଉପଦେଶ ଶୁଣିବାକୁ ପ୍ରସ୍ତୁତ ନୁହେଁ ।'

''ବର୍ତ୍ତମାନ ସମାଜରେ ରହିଥିବା ରୀତିନୀତି ବିଷୟରେ ନିଜର ବିରୋଧ ପ୍ରକାଶ କରି ସେ ଅନ୍ୟ କେଉଁଦିନ ଆମକୁ କେତେ କଥା କହୁଥିଲେ । ସମାଜରେ ପରିବାର ମାନଙ୍କରେ ଜଣେ ରୋଜଗାର କରେ ଓ ତା'ଉପରେ ଅନେକଜଣ ନିର୍ଭର କରି ରହିଥାନ୍ତି । ଆମ ଲୋକେ ଆଦୌ ଆତ୍ମ-ନିର୍ଭର ନୁହଁନ୍ତି । ଆମେ ଖାଉ, ପିଉ, ଭିକାରିମାନଙ୍କର ସଂଖ୍ୟା ବଢ଼ାଉ ଏବଂ ବ୍ୟସ୍ତ ହେବାରେ ଲାଗିଥାଉ । ପୁଣି କେତେକ ବାଧ୍ୟତାମୂଳକ କର୍ତ୍ତବ୍ୟ ମଧ୍ୟ ରହିଥାଏ ଯଥା - ନିଜର ସମ୍ପତ୍ତି ବିକ୍ରୟ କରି ମଧ୍ୟ ବାପାଙ୍କର ଶ୍ରାଦ୍ଧୋତ୍ସବ କରିବାକୁ ହୁଏ । ଏଗୁଡ଼ାକ ବଦଳିଯିବା ଉଚିତ । ବିବାହ ସମ୍ବନ୍ଧୀୟ ଚଳଣିଗୁଡ଼ିକ ବିଷୟରେ ସେ କହୁଥିଲେ, ପରସ୍ପରକୁ ଆଦୌ ଜାଣି ନଥିଲେ ମଧ୍ୟ ଗୋଟିଏ ପୁଅ ଓ ଗୋଟିଏ ଝିଅ ଭିତରେ ବିବାହ ସ୍ଥିର ହୋଇଯାଏ । ସେମାନେ ପରସ୍ପରର ରୁଚି ଅଭିରୁଚି, ବିଷୟରେ କିଛି ଜାଣି ନଥାନ୍ତି । ସେ ଦୃଢ଼ଭାବରେ କହୁଥିଲେ, 'ଆମ ଯୁବକମାନେ ନିଜେ ବାଛି ଠିକ୍ କରିବା ଉଚିତ ଏବଂ ଏଥିପାଇଁ ସେମାନଙ୍କ ଉପରେ ଆଦୌ କୌଣସି କଟକଣା ରହିବା ଉଚିତ ନୁହେଁ ।'

''ରାଜନୀତିକ ବ୍ୟାପାରଗୁଡ଼ିକ ବିଷୟରେ ଶ୍ରୀଯୁକ୍ତ ସେନଗୁପ୍ତ ତାଙ୍କର ତରୁଣ ବନ୍ଧୁମାନଙ୍କୁ କହୁଥିଲେ, 'ସବୁ ରାଜନୀତିକ ବନ୍ଦୀଙ୍କୁ (ବିପ୍ଳବୀମାନଙ୍କୁ) ଖଲାସ କରି ଦେବାପାଇଁ ମୁଁ ବଙ୍ଗଳାର ଗଭର୍ଣ୍ଣରଙ୍କୁ ଏକାଧିକବାର ଦାବି କରି କହିଛି । ଏ ବିଷୟରେ ସେମାନଙ୍କ ସହିତ ଏକ ଆପୋଷ ମୀମାଂସା କରିବାକୁ ପଡ଼ିବ ।''

''ଏହାପରେ ଶ୍ରୀ ସେନଗୁପ୍ତ ଅଧିକ ଅସୁସ୍ଥ ହୋଇ ପଡ଼ିଲେ । ଜେଲ୍‌ର ସୁପରିଣ୍ଟେଣ୍ଡେଣ୍ଟ୍ ଆମ ଭିତରୁ ଦୁଇଜଣଙ୍କୁ, ମୋତେ ଏବଂ ମୋର ଆଉଜଣେ ବନ୍ଧୁଙ୍କୁ, ତାଙ୍କ ପାଖରେ ରହିବାପାଇଁ ଅନୁମତି ଦେଲେ । ଆମେ ରାତିସାରା ତାଙ୍କ ପାଖରେ ବସି ରହୁଥିଲୁ, ଔଷଧପତ୍ର ଦେଉଥିଲୁ, ମାତ୍ର ତାଙ୍କର ଅସୁସ୍ଥତାର ଉପଶମ ହେଲା ନାହିଁ । ପ୍ରାୟ ରାତିସାରା ସେ ଅସ୍ଥିର ହେଉଥିଲେ ଏବଂ ଆମକୁ କହୁଥିଲେ, 'ମୋର ଆଉ ମୋଟେ ବେଶୀଦିନ ନୁହେଁ । ଏହି ବନ୍ଦୀଶାଳା ମଧ୍ୟରେ ହିଁ ମୋର ମୃତ୍ୟୁ ହେବ ।' ଅବଶ୍ୟ ଅଳ୍ପଦିନପରେ ତାଙ୍କର ଦେହ କିଛିଟା ଭଲ ହୋଇ ଆସିଲା । ଦିନେ ଦି'ପହରେ ସେ ତାଙ୍କ ପୁଅ ଶିଶିର ପାଇଁ ଅପେକ୍ଷା କରୁଥିଲେ ଏବଂ ଆମକୁ କହିଲେ, ଶିଶିର ମୋତେ ଭାରି ଭଲପାଏ । ମୋର ପରମ ଭାଗ୍ୟ ଯେ ମୋର ନେଲୀ ପରି ଜଣେ ପତ୍ନୀ ରହିଛି ।' ପରିଶେଷରେ ମୋତେ ସେ ଅତ୍ୟନ୍ତ କୋମଳ ଓ ସ୍ନେହାର୍ଦ୍ର ଭାବରେ କହିଥିଲେ, 'ଚୌଧୁରୀ ବାବୁ, ତୁମେ ନିଜ ଜୀବନର ସବୁମତେ ଉପଭୋଗ କରିବ । ଉପଭୋଗ କରିବାର ଅର୍ଥ ହେଉଛି ଆଦେଶ ପାଳନ କରିବା ।'

'ଅଳ୍ପ କିଛିଦିନ ପରେ ଶ୍ରୀଯୁକ୍ତ ସେନଗୁପ୍ତଙ୍କୁ ମେଡ଼ିକାଲ୍ କଲେଜ୍ ଡାକ୍ତରଖାନାକୁ ନିଆଗଲା । ଯିବାର ପୂର୍ବଦିନ ମୋତେ ସେ କହିଥିଲେ, 'ଆମର ପରିଚିତ ବ୍ୟକ୍ତିମାନେ ଆଖର ପାସୋର ଯାଆନ୍ତି ଏବଂ ବିସ୍ମରଣ ମଧ୍ୟରେ ରହିଯାଆନ୍ତି । ମାତ୍ର, ଏହି ସଂସାରରୁ ଯିବାପୂର୍ବରୁ ଆମକୁ ନିଜ ପଛରେ ଏପରି ଏକ ଧାରଣା ରଖିଯିବାକୁ ହେବ ଯେପରିକି ସଂସାର ଆମକୁ କେବେହେଲେ ଭୁଲି ଯିବ ନାହିଁ । ତୁମେ ମନେକରୁଥିବ ଯେ ବାଟୋଇଟିକୁ ପ୍ରକୃତରେ କେତେ ଖରା ଓ କେତେ ବର୍ଷାର ସମ୍ମୁଖୀନ ହେବାକୁ ହୋଇଥିଲା ।''

## ମେଡ଼ିକାଲ୍ କଲେଜ୍ ଡାକ୍ତରଖାନାରେ

ଶ୍ରୀ ସେନଗୁପ୍ତଙ୍କୁ ଶୀଘ୍ର ମେଡ଼ିକାଲ୍ କଲେଜର ଡାକ୍ତରଖାନାକୁ ସ୍ଥାନାନ୍ତରିତ କରାଯାଇଥିଲା । ସେଠାରେ ଜଣେ ପୀଡ଼ିତ ରାଜନୀତିକ ବନ୍ଦୀରୂପେ ତାଙ୍କର ରହିବାଲାଗି ବିଶେଷ ବନ୍ଦୋବସ୍ତ ହୋଇଥିଲା । ପୋଲିସ୍ ପହରାରେ ତାଙ୍କୁ ହତା ଭିତରେ ଏକ ନିର୍ଦ୍ଦିଷ୍ଟ ଅଞ୍ଚଳ ଭିତରେ ଚାଲିବାପାଇଁ ଅନୁମତି ଦିଆ ଯାଇଥିଲା । ଅପରାହ୍ନ ମାନଙ୍କରେ ନେଲୀ ସେନ୍‌ଗୁପ୍ତ ଏବଂ ତାଙ୍କର ପିଲାମାନେ ତାଙ୍କୁ ଦେଖି ଆସିବାକୁ ମଧ୍ୟ ଅନୁମତି ପାଇଥିଲେ । ଏହି ଡାକ୍ତରଖାନାରେ ବନ୍ଦୀ ହୋଇ ରହିଥିବା ସମୟରେ ହିଁ କଲିକତାରେ ଅନୁଷ୍ଠିତ ହେଉଥିବା ବାର୍ଷିକ କଂଗ୍ରେସ ଅଧିବେଶନରେ (ଏପ୍ରିଲ୍, 1933) ଶ୍ରୀମତୀ ସେନଗୁପ୍ତଙ୍କୁ ସଭାପତିତ୍ୱ କରିବାଲାଗି ସଙ୍ଗେ ସଙ୍ଗେ ଅନୁମତି ଦେଇଥିଲେ, ସେତେବେଳେ ସହର ତମାମ ପୋଲିସ୍‌ର ଅତ୍ୟାଚାରର ଲୀଳା ଚାଲିଥାଏ ।

କର୍ତ୍ତୃପକ୍ଷଙ୍କ ଠାରୁ ବିଶେଷ ଅନୁମତି ଆଣି ସେଠାରେ ଯେଉଁମାନେ ତାଙ୍କୁ ଦେଖିବାକୁ ଆସୁଥିଲେ, ସେମାନଙ୍କ ମଧ୍ୟରେ ନଳିନୀ ରଞ୍ଜନ ସରକାର (ପରେ ସେ କଲିକତାର ମେୟର୍ ହେଲେ, ଜଣେ ମୁଖ୍ୟ ବୃହଦ୍ ବ୍ୟବସାୟୀ ଥିଲେ) ଥିଲେ, ଶ୍ରୀ କିରଣ ଶଙ୍କର ରାୟ ମଧ୍ୟ ଥିଲେ । ଏକଦା ଉଭୟେ ରାଜନୀତି କ୍ଷେତ୍ରରେ ଦେଶପ୍ରିୟଙ୍କର ବିପକ୍ଷରେ ରହିଥିଲେ । ମନେହୁଏ, ସେମାନେ ପରେ ଅନୁତାପ କରିଥିଲେ, ନାନା ଦୁଃଶୋଚନାର ପୁରାତନ ମନ୍ଦ ଦିନଗୁଡ଼ିକୁ ଭୁଲି ଯାଇଥିଲେ ଏବଂ ସେନଗୁପ୍ତଙ୍କୁ ଅତ୍ୟନ୍ତ ସମ୍ମାନ ଦେଖାଇବାକୁ ଆରମ୍ଭ କରିଥିଲେ । ତାଙ୍କୁ ସେମାନେ ଅକୁଣ୍ଠିତ ଭାବରେ ସେମାନଙ୍କର ନେତା ବୋଲି ସ୍ୱୀକାର କରି ନେଇଥିଲେ ।

ଡାକ୍ତରଖାନାରେ ରହିବାର ସେହି ସଂକ୍ଷିପ୍ତ ଅବଧିଟି ମଧ୍ୟରେ କଲିକତା କର୍ପୋରେସନ୍‌ର 1933 ମସିହା ନିର୍ବାଚନ ହୋଇଥିଲା । ରାଜନୀତି ସହିତ ସମ୍ପର୍କ ରଖିବା ତାଙ୍କ ପକ୍ଷରେ ଆଦୌ ସମ୍ଭବ ହୋଇପାରି ନଥାନ୍ତା ସତ, ମାତ୍ର କଲିକତାରେ ତାଙ୍କର ଉପସ୍ଥିତି ହିଁ ପୌରସଭା ନିର୍ବାଚନ ଉପରେ ଏକ ପରୋକ୍ଷ ପ୍ରଭାବ ଅବଶ୍ୟ ପକାଇଥିଲା । ସମସ୍ତେ ବିଶ୍ୱାସ କଲେ ଯେ, ତାଙ୍କରି ଇଚ୍ଛା ମୁତାବକ ହିଁ ଶ୍ରୀଯୁକ୍ତ ସନ୍ତୋଷ କୁମାର ବସୁ ମେୟର୍ ରୂପେ ନିର୍ବାଚିତ ହୋଇଥିଲେ ତଥା ନେଲୀ ସେନଗୁପ୍ତ ଓ ଜେ. ସି. ଗୁପ୍ତ ପୌରମୁଖ୍ୟ ହେଲେ ।

ତାଙ୍କର ଅସୁସ୍ଥତା (ରକ୍ତଚାପ)ରେ ଆଦୌ କୌଣସି ଉନ୍ନତି ହେଉଥିବାର ସଙ୍କେତ ଦେଖା ଗଲା ନାହିଁ । ତେଣୁ ସରକାର ତାଙ୍କୁ ଏକ ଶୈଳନିବାସ (ରାଞ୍ଚି)କୁ ସ୍ଥାନାନ୍ତରିତ କରାଇବାର (ଜୁନ୍ 4, 1933) ବ୍ୟବସ୍ଥା କରାଇଥିଲେ ।

## ରାଞ୍ଚି - ଶେଷ ରହଣିସ୍ଥାନ ଓ ଜୀବନାବସାନ

'ନଗେନ୍ଦ୍ର ଲଜ୍' ବୋଲି ଗୋଟିଏ ଗୃହରେ ତାଙ୍କୁ ଅଟକବନ୍ଦୀ ରୂପେ ରଖା ଯାଇଥିଲା । ଏକ ବିଶେଷ ବ୍ୟବସ୍ଥା ଫଳରେ ଶ୍ରୀମତୀ ସେନଗୁପ୍ତ ଏବଂ ଯତୀନ୍ଦ୍ରମୋହନଙ୍କ ଝିଆରୀ ଏଇଲେନ୍ ତାଙ୍କ ସହିତ ସେଠାରେ ରହିବା ଲାଗି ଅନୁମତି ପାଇଥିଲେ । ଆଗରୁ କର୍ତ୍ତୃପକ୍ଷଙ୍କ ଠାରୁ ଅନୁମତି ନନେଇ ଅବଶ୍ୟ ଆଉକାହା ପକ୍ଷରେ ତାଙ୍କ ସହିତ ସାକ୍ଷାତ କରିବାରେ ପ୍ରତିବନ୍ଧକ ରହିଥିଲା ।

## ଗାଢ଼ତମ ଅନ୍ଧକାରର ରାତ୍ରି

ଯତୀନ୍ଦ୍ରମୋହନଙ୍କର ରାଞ୍ଚିରେ ଏକ ଅଟକବନ୍ଦୀର ଜୀବନ କ୍ରମଶଃ ପୀଡ଼ିତ ନେତାଙ୍କୁ ଅସହ୍ୟ ମନେହେଲା ଏବଂ ଏକ ବୋଝ ପରି ଲାଗିଲା । ନେଲୀ ଏବଂ ଏଇଲେନ୍‌ଙ୍କ ବ୍ୟତୀତ ସେ ଆଉ କାହା ସହିତ କଥାବାର୍ତ୍ତା ହୋଇପାରୁ ନଥିଲେ । ତାଙ୍କ ଉପରେ ରହିଥିବା ପ୍ରତିବନ୍ଧକମାନ ଏତେ ଅଧିକ ପରିମାଣରେ ଗୁରୁ ଏବଂ ବିରକ୍ତିପୂର୍ଣ୍ଣ ଥିଲା ଯେ, ତାଙ୍କର ଜଣେ ପୁରାତନ ବନ୍ଧୁ, ରାଞ୍ଚିର ଜଣେ ଘରୋଇ ଚିକିତ୍ସା କରୁଥିବା ଡାକ୍ତର ଯଦୁ ଗୋପାଳ ମୁଖର୍ଜୀ ତାଙ୍କୁ କେତେକ ଚିକିତ୍ସା ସମ୍ବନ୍ଧୀୟ ପରାମର୍ଶ ଦେବାଲାଗି ମଧ ତାଙ୍କ ସହିତ ସାକ୍ଷାତ କରିବାର ଅନୁମତି ପାଇଲେ ନାହିଁ । ସ୍ପଷ୍ଟତଃ, ତାହାର ଏକମାତ୍ର କାରଣ ଥିଲା ଯେ ଡାକ୍ତର ମୁଖର୍ଜୀ ଏକଦା ଜଣେ ବିପ୍ଳବୀ ରୂପେ ସୁବିଦିତ ଥିଲେ । 1933 ଜୁଲାଇ 22 ତାରିଖ ଦିନ ସେହି ନିଦାରୁଣ ଦିବସଟି ଆସି ପହଞ୍ଚିଲା । ନିଜର ପତ୍ନୀ ଏବଂ ଝିଆରୀଙ୍କ ସହିତ ଯତୀନ୍ଦ୍ରମୋହନ ଗାଡ଼ିରେ ଟିକିଏ ବୁଲିବାକୁ ଯାଇଥିଲେ । ସବୁଦିନ ପରି ସାଙ୍ଗରେ ପୋଲିସ୍ ପହରା ରହିଥିଲା । ଏପରି କରିବା ରାଞ୍ଚିରେ ତାଙ୍କ ଏକ ନିୟମିତ ଅଭ୍ୟାସରେ ପରିଣତ ହୋଇ ଯାଇଥିଲା । ଗଲ୍‌ଫ୍ କୋର୍ସ୍ ପର୍ଯ୍ୟନ୍ତ ଯାଇ ସେ ସେଠାରେ ଅଟକିଲେ ଏବଂ ଟାଉନସା ରୋଡ଼ରେ ହେଉଥିବା ଗୋଟିଏ ହକି ମ୍ୟାଚ୍ ଦେଖିବାଲାଗି କେତେ ପହଣ୍ଡ ଚାଲିକରି ଯାଇଥିଲେ । ମାତ୍ର, ଦୁର୍ବଳ ଲାଗୁଥିଲା ବୋଲି ସେ ସେଠାରେ ବେଶୀ ସମୟ ରହିପାରି ନଥିଲେ । ଲଜ୍‌କୁ ଫେରିଆସି ଶୀଘ୍ର ଶୀଘ୍ର ରାତ୍ରିଭୋଜନ ସାରିନେଲେ । ଶୋଇବାକୁ ଯିବାର ଅଳ୍ପସମୟ ପରେ ସେ ଭାରି ମୁଣ୍ଡବ୍ୟଥା ହେଉଛି ବୋଲି କହିଲେ, ଅତ୍ୟନ୍ତ ଅସ୍ଥିର ଅନୁଭବ କଲେ ଏବଂ ପ୍ରାୟ ମୋଟେ କଥା କହିପାରିଲେ ନାହିଁ । ରାତ୍ରିର ନୀରବତା ଗାଢ଼ତର ହୋଇ ଆସିବା ସଙ୍ଗେ ସଙ୍ଗେ ସେ ହଠାତ୍ ଚିତ୍କାର କରି କିଛି କହିବାକୁ ଚେଷ୍ଟା କଲେ । ନେଲୀ ଓ ଏଇଲେନ୍ ତତ୍‌କ୍ଷଣାତ୍ ତାଙ୍କ ପାଖକୁ ଧାଇଁଗଲେ, ମାତ୍ର

ସେମାନେ ଯାଇ ପହଞ୍ଚିଲାବେଳକୁ ସେ ବେହୋସ୍ ହୋଇ ଯାଇଥିଲେ । ସିଭିଲ୍ ସର୍ଜନ ମେଜର ହ୍ୱାଇଟ୍‌ଙ୍କ ପାଖକୁ ଏକ ଜରୁରୀ ବାର୍ତ୍ତା ପଠାଯାଇଥିଲା, ସେ ସଙ୍ଗେ ସଙ୍ଗେ ଆସି ରୋଗୀଙ୍କୁ ପରୀକ୍ଷା କଲେ । ରୋଗୀର ରକ୍ତଚାପ କମାଇବା ଲାଗି ସେ ତା'ଦେହର ଗୋଟିଏ ଧମନିକୁ କାଟି ଦେଇଥିଲେ । ଯତୀନ୍ଦ୍ରମୋହନ ପ୍ରାୟ ନିଶ୍ଚଳ ହୋଇ ପଡ଼ିଥାନ୍ତି, ହାତର ବାହୁକୁ ଉଠାଇପାରୁ ନଥାନ୍ତି କିମ୍ବା ପଦେ କଥା ବି କହିପାରୁ ନଥାନ୍ତି । ଏହା ସ୍ପଷ୍ଟତଃ ହୃଦ୍‌ଯନ୍ତ୍ର କ୍ରିୟାରେ ବ୍ୟାଘାତ ହେବାର ଏକ ଦୃଷ୍ଟାନ୍ତ ଥିଲା, ପରେ ତାହାକୁ ରକ୍ତାଘାତଜନିତ ଏକ ବ୍ୟାଘାତ ବୋଲି ନିର୍ଣ୍ଣୟ କରାଯାଇଥିଲା । ଉଚ୍ଚ ରକ୍ତଚାପ ହିଁ ତାହାର କାରଣ ଥିଲା । ତା'ପରେ ଅନ୍ୟ ଡାକ୍ତର ଓ ନର୍ସମାନେ ଆସି ତାଙ୍କର ଚେତା ଫେରାଇ ଆଣିବାକୁ ଯଥାଶକ୍ତି ଚେଷ୍ଟା କଲେ । ମାତ୍ର ସବୁ ଚେଷ୍ଟା ବ୍ୟର୍ଥ ହେଲା । 22-23 ଜୁଲାଇ (1933) ମଧ୍ୟରାତ୍ରିର ଅବ୍ୟବହିତ ପରେ ତାଙ୍କର ପ୍ରାଣବାୟୁ ଉଡ଼ି ଯାଇଥିଲା ଠିକ୍ ଭାବରେ କହିଲେ ଗୋଟାଏ ବାଜି 45 ମିନିଟ୍ ସମୟରେ । ଶେଷ ମୁହୂର୍ତ୍ତଟି ଆସି ପହଞ୍ଚିବାର ଠିକ୍ ପୂର୍ବରୁ ଯତୀନ୍ଦ୍ରମୋହନ ତାଙ୍କର ପ୍ରିୟତମା ପତ୍ନୀଙ୍କ ଠାରୁ ବିଦାୟ ନେବାପାଇଁ ସତେ ଅବା ପଦେ କ'ଣ କହୁଥିବା ପରି ମନେହେଲା, ମାତ୍ର ତାହା ମଧ୍ୟ ସଫଳ ହୋଇପାରିଲା ନାହିଁ । ତାଙ୍କ ଆଖିରୁ ବିନ୍ଦୁଏ ଲୁହ ଗଡ଼ି ଆସୁଥାଏ । ବିଦେଶୀ ଶାସକମାନେ ତାଙ୍କର ସନ୍ଦୀପ୍ତ ଆତ୍ମାକୁ ଆଦୌ ଶୃଙ୍ଖଳରେ ବାନ୍ଧିରଖି ପାରିଲେ ନାହିଁ ।

### ଦେଶପ୍ରିୟ ଅମରମାନଙ୍କ ଧାଡ଼ିରେ ଯାଇ ରହିଲେ

ତାଙ୍କର ନିକଟତମ କେତେଜଣ ବ୍ୟକ୍ତି, ଦୁଇ ପୁଅ ଓ ସାନ ଭାଇ ରଣେନ୍ଦ୍ରମୋହନ ତାଙ୍କର ମୃତ୍ୟୁ ସମୟରେ ସେଠାରେ ଉପସ୍ଥିତ ନଥିଲେ । ଭୋର ଦୁଇଟା ସମୟରେ କଲିକତାରେ ଗୋଟିଏ ଟ୍ରଙ୍କ୍ ଟେଲିଫୋନ୍ ବାର୍ତ୍ତା ଯାଇ ପହଞ୍ଚିଲା ଏବଂ ଯତୀନ୍ଦ୍ରମୋହନ ଆଉ ଇହଜଗତରେ ନାହାନ୍ତି ବୋଲି ଖବର ଦେଲା । ରଣେନ୍ଦ୍ରମୋହନ ଏହି ଦୁଃସମ୍ବାଦକୁ ଯାଇ ଡାକ୍ତର ବି. ସି. ରାୟ, ଜେ. ସି. ଗୁପ୍ତ, ଏନ୍. ଆର୍. ସରକାର ଓ ଅନ୍ୟମାନଙ୍କ ଆଗରେ ପ୍ରକାଶ କରିଥିଲେ, ଯେପରିକି ସେମାନେ କଲିକତାଠାରେ ମୃତଦେହକୁ ଗ୍ରହଣ କରିବା ସକାଶେ ଆବଶ୍ୟକ ବ୍ୟବସ୍ଥା କରିପାରିବେ । ସମ୍ବାଦଟି କଲିକତା ସଂବାଦପତ୍ର ଗୁଡ଼ିକର ଅଫିସ୍‌ରେ ମଧ୍ୟ ପହଞ୍ଚିଥିଲା । ଗୋଟିଏ ସମ୍ବାଦପତ୍ର ସବାଉପର ଧାଡ଼ିରେ ଲେଖିଥିଲା: ''ବଙ୍ଗଳାର ସିଂହ ଚିର ନିଦ୍ରାରେ'' । ଆଉ ଗୋଟିଏ କାଗଜରେ ଏଡ଼େ ଏଡ଼େ ଅକ୍ଷରରେ ''ଦେଶ ଉପରେ ନିଦାରୁଣ ଆଘାତ'' ବୋଲି ଲେଖିଥିଲା ।

ରାଞ୍ଚିଠାରେ ସମଗ୍ର ସହର ଦୁଃଖାଭିଭୂତ ହୋଇ ପଡ଼ିଥିଲା ଏବଂ ମୃତଦେହଟି ତାହାର ଅନ୍ତିମ ଯାତ୍ରାରେ ବାହାରିବା ସମୟରେ ଦେଶପ୍ରିୟଙ୍କୁ ଆପଣାର ସମ୍ମାନ ପ୍ରଦର୍ଶନ କରିବାପାଇଁ ଧାଇଁ ଯାଇଥିଲା । ଏପରିକି ସ୍ଥାନୀୟ ଇଉରୋପୀୟମାନେ ମଧ୍ୟ ଏହାକୁ ଏକ କ୍ଷତି ବୋଲି ଅନୁଭବ କରିଥିଲେ । ଅତ୍ୟନ୍ତ ଦୟାଶୀଳ ସ୍ୱଭାବର ଜଣେ ବ୍ୟକ୍ତି ପୋଲିସ୍ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀଯୁକ୍ତ ବିଅନ୍ ନେଲୀ ସେନ୍‌ଗୁପ୍ତ ଏବଂ ଏଭଲେନ୍‌ଙ୍କ ପାଖରେ ଆପଣାର ଗଭୀର ଦୁଃଖ ପ୍ରକାଶ କରିଥିଲେ । ଡି.ଏସ୍.ପି. ଖାଁ ବାହାଦୁର ଅଶାନଙ୍କ ସହିତ ମିଶି ମୃତ ଦେହଟି ଯିବା ସକାଶେ ରାଞ୍ଚି ଏକ୍ସପ୍ରେସ୍ ଗାଡ଼ିରେ ଗୋଟିଏ ବିଶେଷ ବଗି ସୁରକ୍ଷିତ ରହିବ ବୋଲି ଯାବତୀୟ ବ୍ୟବସ୍ଥା କରି ଦେଇଥିଲେ । ଜୁଲାଇ 23 ତାରିଖ ଉପରବେଳା ସେହି ଗାଡ଼ି ରାଞ୍ଚିରୁ କଲିକତା ଉଦ୍ଦେଶ୍ୟରେ ଯାତ୍ରା କରିଥିଲା ।

# ଯତୀନ୍ଦ୍ରମୋହନଙ୍କ ଜୀବନର ଅନେକ ଦିଗ

**କ୍ରୀଡ଼ାବିତ୍ ରାଜନୀତିଜ୍ଞ**

"ଫୌଜଦାରୀ ମୋକଦ୍ଦମାର ଜଣେ ଓକିଲ ହିସାବରେ ଶ୍ରୀଯୁକ୍ତ ଯତୀନ୍ଦ୍ରମୋହନ ସେନଗୁପ୍ତ ଅତ୍ୟନ୍ତ ଲାଭଜନକ ଭାବରେ ଓକିଲାତି କରିପାରୁଥିଲେ; ଜଣେ ରାଜନୀତିଜ୍ଞ ହିସାବରେ ସେ ଭାରତବର୍ଷର ସର୍ବୋତ୍ତମ ରାଜନୀତିଜ୍ଞମାନଙ୍କ ଭିତରେ ଜଣେ ଥିଲେ। ଜଣେ ଦେଶଭକ୍ତ ହିସାବରେ ତାଙ୍କର ପରମ ନିଷ୍ଠା ରହିଥିଲା, ଜଣେ ମଣିଷ ହିସାବରେ ସେ ଅତ୍ୟନ୍ତ ଭଦ୍ର ଥିଲେ, ଏବଂ ଜଣେ କ୍ରୀଡ଼ାବିତ୍ ହିସାବରେ ସେ ଜୀବନସାରା କ୍ରିକେଟ ଖେଳୁଥିଲେ। ରାଜନୀତିର କ୍ଷେତ୍ରରେ ମିତ୍ର ଓ ଶତ୍ରୁ ନିର୍ବିଶେଷରେ ତାଙ୍କୁ ସମସ୍ତେ ଭଲ ପାଉଥିଲେ, ସମ୍ମାନ ମଧ୍ୟ କରୁଥିଲେ। କ୍ରୀଡ଼ାର ମଞ୍ଚରେ ତାଙ୍କର ଉପସ୍ଥିତି ସମସ୍ତଙ୍କୁ ପ୍ରେରଣା ଦେଉଥିଲା।*

ସାନ ପିଲାର ବୟସରେ ସ୍କୁଲରେ ପାଠ ପଢୁଥିବା ଦିନଠାରୁ ବିଭିନ୍ନ ପ୍ରକାରର କ୍ରୀଡ଼ା ଓ କସରତରେ ତାଙ୍କର ସକ୍ରିୟ ଆଗ୍ରହ ରହିଥିଲା। କଲିକତାର ପ୍ରେସିଡ଼େନ୍ସି କଲେଜରେ ଅଧ୍ୟୟନ କରୁଥିବା ସମୟରେ କ୍ରିକେଟ୍, ଫୁଟ୍‌ବଲ୍ ଓ ହକିରେ ପ୍ରଥମ ଏଗାର ଜଣଙ୍କ ମଧ୍ୟରେ ତାଙ୍କର ସ୍ଥାନ ଥିଲା ଏବଂ ଟେନିସ୍ ଖେଳରେ ମଧ୍ୟ ସେ ଜଣେ ଅଗ୍ରଗାମୀ ପ୍ରତିନିଧି ହୋଇ ରହିଥିଲେ। 1905 ମସିହାରେ କଲେଜ ଛାଡ଼ିବା ପୂର୍ବରୁ ସେ ସ୍ପୋର୍ଟିଙ୍ଗ୍ ଇଉନିଅନ୍ କ୍ଲବ୍ ପାଇଁ ମଧ୍ୟ ଖେଳିଥିଲେ। କେମ୍ବ୍ରିଜ୍‌ଠାରେ ଅଧ୍ୟୟନ କରୁଥିବା ସମୟରେ ସେ ଏହି କ୍ଷେତ୍ରରେ ସମାନ ବିଚକ୍ଷଣତା ଦେଖାଉଥିଲେ ଏବଂ କ୍ରିକେଟ୍ ଓ ଟେନିସ୍ ଖେଳରେ ଡାଉନିଙ୍ଗ୍ ଠାରେ ଅନେକ ପୁରସ୍କାର ପାଇଥିଲେ। ନୌକାଚାଳନାରେ ମଧ୍ୟ ତାଙ୍କର ଆଗ୍ରହ ବହୁଦିନ ପର୍ଯ୍ୟନ୍ତ ଏପରି ଭାବରେ ସକ୍ରିୟ ହୋଇ ରହିଥିଲା ଯେ 1930 ମସିହାରେ ଯେତେବେଳେ ସେ ନୌକା-ଚାଳନା ପ୍ରତିଯୋଗିତା ଦିବସରେ ଗିରଫ ହୋଇ ଜେଲ୍ ଭିତରେ ରହିଥିଲେ, ସେତେବେଳେ ସେ ଅକ୍ସଫୋର୍ଡ଼ ଏବଂ କେମ୍ବ୍ରିଜର ପ୍ରତିଯୋଗିତାର ଫଳାଫଳ ବିଷୟରେ ପଚାରି ବୁଝିଥିଲେ।

କଲିକତା ହାଇକୋର୍ଟରେ ଯୋଗଦେଇ ସେ ଅତ୍ୟନ୍ତ ସ୍ୱାଭାବିକ ଭାବରେ ହାଇକୋର୍ଟ କ୍ଲବର ଜଣେ ଚାମ୍ପିଅନ୍ ହେଲେ, ବିଶେଷତଃ ଲନ୍ ଟେନିସ୍ ଖେଳର ପ୍ରତିଯୋଗିତାମାନଙ୍କରେ ସେ ସର୍ବଦା ଚାମ୍ପିଅନ୍ ପଦରେ ଜଣେ ପ୍ରବୀଣ ଆହ୍ୱାନକାରୀ ପ୍ରାର୍ଥୀ ହୋଇ ରହିଥିଲେ। ଗୋଟିଏ ଅନ୍ତର୍ଜାତୀୟ ଲନ୍ ଟେନିସ୍ କ୍ଲବ୍ ଗଠନ କରିବା ତାଙ୍କ ଜୀବନର ଏକ ସ୍ୱପ୍ନ ଥିଲା। କଲିକତାର ମେୟର୍ ହୋଇ ରହିଥିବାବେଳେ ମଧ୍ୟ କ୍ରୀଡ଼ା ଦିଗରେ ତାଙ୍କର ଆଗ୍ରହ ଅବ୍ୟାହତ ରହିଥିଲା। ତାହା ତାଙ୍କ ଜୀବନରେ ପ୍ରାୟ ଏକ ପ୍ରଧାନ ଉତ୍ସାହ ହୋଇ ରହିଥିଲା। ତାଙ୍କୁ ସମସ୍ତେ ଯଥାର୍ଥରେ "କ୍ରୀଡ଼ାକାରୀ ମେୟର" ବୋଲି ଅଭିହିତ କରୁଥିଲେ।

---

* 'ଦି କାଲ୍‌କାଟା ମ୍ୟୁନିସିପାଲ ଗେଜେଟ୍' (ଯତୀନ୍ଦ୍ର ମୋହନ ସ୍ମୃତି ସଂଖ୍ୟା)

## ସାଉଥ୍ କ୍ଳବର ନିର୍ମାତା

ଉଡ୍‌ବର୍ଣ୍ଣ ପାର୍କ୍‌ରେ ଥିବା ସାଉଥ୍ କ୍ଳବ୍‌ର ଉନ୍ନତିବିଧାନ ଲାଗି ତାଙ୍କ ସାହାଯ୍ୟ ଏବଂ କାର୍ଯ୍ୟ ଉଲ୍ଲେଖଯୋଗ୍ୟ ଥିଲା । କର୍ପୋରେସନ୍‌ର ଚିଫ୍ ଏକ୍‌ଜିକିଉଟିଭ୍ ଅଫିସର ଜେ. ସି. ମୁଖର୍ଜୀଙ୍କ ସମେତ ସେ ଏହି କାର୍ଯ୍ୟରେ ପୌରସଭାର ଅନ୍ୟାନ୍ୟ କ୍ରୀଡ଼ାପ୍ରେମୀମାନଙ୍କର ପୂର୍ଣ୍ଣ ସହଯୋଗ ଲାଭ କରିଥିଲେ । ଉଡ଼ବର୍ଣ୍ଣ ପାର୍କର ସାଉଥ୍ କ୍ଳବର କ୍ରୀଡ଼ାକ୍ଳବ୍‌ର ବର୍ତ୍ତମାନ ଯେ କୋଡ଼ିଏଟି କୋର୍ଟ ବିଶିଷ୍ଟ ଏକ ପକ୍କା ମଣ୍ଡପ ରହିଛି, ତାହା ପ୍ରଧାନତଃ କେବଳ ଯତୀନ୍ଦ୍ରମୋହନଙ୍କର ଏଥିପାଇଁ ରହିଥିବା ଅବ୍ୟାହତ ଆଗ୍ରହ ସକାଶେ ହିଁ ସମ୍ଭବ ହୋଇପାରିଛି । ଏହା ଫଳରେ କଲିକତାର ସାଉଥ୍ କ୍ଳବ୍ ଅଚିରେ ଏସିଆର ଏକ ଆନ୍ତର୍ଜାତିକ ଟେନିସ୍ କ୍ଳବ୍‌ରେ ପରିଣତ ହୋଇପାରିଥିଲା । ଏହି ସହରର ମେୟର୍ ହିସାବରେ ସେ ଫରାସୀ ଟେନିସ୍ ଦଳ ଏବଂ ପରବର୍ତ୍ତୀ ବର୍ଷମାନଙ୍କରେ ସେହିପରି ଆହୁରି ଅନେକ ବିଦେଶୀ ଦଳଙ୍କୁ ଏହି କ୍ଳବ୍‌କୁ ସ୍ୱାଗତ କରିପାରିଥିଲେ । ସାଉଥ୍ କ୍ଳବ୍‌ରେ ସେନଗୁପ୍ତଙ୍କର କାଂସ୍ୟ ପ୍ରତିମୂର୍ତ୍ତି ଏବେମଧ୍ୟ ଏକ ଭବ୍ୟ ଦର୍ଶନୀୟ ବସ୍ତୁ ହୋଇ ଶୋଭା ପାଉଅଛି । ଦୀର୍ଘ ଅନେକ ବର୍ଷଧରି ସେ ସେହି କ୍ଳବ୍‌ର ଉପସଭାପତି ଥିଲେ ।

"ତାଙ୍କର କ୍ରୀଡ଼ା ମନୋଭାବ ଜାତି, ବର୍ଣ୍ଣ ବା ଧର୍ମ ମଧ୍ୟରେ ଆଦୌ କୌଣସି ତାରତମ୍ୟ ଦେଖୁନଥିଲା ଓ ତେଣୁ ତାହା ହିଁ କ୍ଳବ୍‌କୁ ପ୍ରକୃତରେ ଏକ ଅନନ୍ୟ ଆନ୍ତର୍ଜାତିକ ଅନୁଷ୍ଠାନ ରୂପେ ବିକଶିତ ହେବାରେ ପ୍ରଭୂତ ସାହାଯ୍ୟ କରିଥିଲା ।" ("ଅମୃତ ବଜାର ପତ୍ରିକା", ଜୁଲାଇ 25,1933)

କଲିକତାର ମେୟର୍ ଏବଂ ଜଣେ ସକ୍ରିୟ ରାଜନୀତଜ୍ଞ ହିସାବରେ ଏକ କର୍ମବ୍ୟସ୍ତତାମୟ ଜୀବନ ଯାପନ କରୁଥିଲେ ମଧ୍ୟ ସେନଗୁପ୍ତ କଲିକତାର କୌଣସି ଉଲ୍ଲେଖଯୋଗ୍ୟ ଫୁଟ୍‌ବଲ୍, କ୍ରିକେଟ୍, ବା ହକି ମ୍ୟାଚ୍ ଦେଖିବାର ସୁଯୋଗକୁ କ୍ୱଚିତ୍ ହରାଉଥିଲେ । ଆପଣାର ଉଚ୍ଚ ଦେହ ଏବଂ ଶୁଭ୍ରବର୍ଣ୍ଣ ଖଦଡ଼ ପୋଷାକ ଖେଳ ପଡ଼ିଆରେ ତାଙ୍କୁ ଅତ୍ୟନ୍ତ ଭବ୍ୟ ଦେଖା ଯାଉଥିଲା ।

ଧାକୁରିଆ ହ୍ରଦପୁଞ୍ଜରେ ଗୋଟିଏ ନୌକାଚାଳନା କ୍ଳବ୍ ଆରମ୍ଭ କରିବା ବିଷୟରେ ମେୟର୍ ଯତୀନ୍ଦ୍ରମୋହନ ଅତ୍ୟନ୍ତ ଗମ୍ଭୀର ଭାବରେ ଚିନ୍ତା କରିଥିଲେ । ସେଥିଲାଗି ଗୋଟିଏ କମିଟି ଗଢ଼ା ହେଲା, ଯେଉଁଥିରେ କି ସେ ନିଜେ ଅଧ୍ୟକ୍ଷ ରହିଲେ ଏବଂ ସାର୍ ବୀରେନ୍ ମୁଖର୍ଜୀ, କେ. ସି. ମହୀନ୍ଦ୍ର ଓ ଅନ୍ୟ ପ୍ରଧାନ ପ୍ରଧାନ କ୍ରୀଡ଼ା ଉତ୍ସାହୀମାନେ ସଦସ୍ୟ ହୋଇ ରହିଲେ । ଏହି କ୍ଳବ୍‌ଟି ପ୍ରକୃତରେ ସକ୍ରିୟ ହେବାକୁ ଆରମ୍ଭ କଲାବେଳକୁ ଯତୀନ୍ଦ୍ରମୋହନ ଆଉ ଇହଧାମରେ ନଥିଲେ । ଲେକ୍ କ୍ଳବ୍‌ରେ ତାଙ୍କର ଏତେ ଅଧିକ ଉତ୍ସାହ ରହିଥିଲା ଯେ, ଯେତେବେଳେ ଜଣେ ବନ୍ଦୀ ହିସାବରେ ତାଙ୍କୁ ରାଞ୍ଚିକୁ ସ୍ଥାନାନ୍ତରିତ କରା ଯାଉଥିଲା, ସେ ତାଙ୍କର ରକ୍ଷୀରୂପେ ଯାଉଥିବା ପୋଲିସ୍ ଅଫିସରଙ୍କୁ ତାଙ୍କୁ ଦ୍ୱୀପପୁଞ୍ଜର ଚାରିପାଖ ବାଟେ ନେବା ସକାଶେ ଇଚ୍ଛାପ୍ରକାଶ କରିଥିଲେ, ଯେପରିକି ଦୂରରୁ ସେ ଲେକ୍ କ୍ଳବ୍ ଉପରେ ଥରେ ଦୃଷ୍ଟି ପକାଇ ନେଇପାରିବେ । ପୋଲିସ୍ ଅଫିସର ତାଙ୍କର ଅନୁରୋଧ ରକ୍ଷା କରିଥିଲେ ଓ ଏଥିରେ ସେ ଅତ୍ୟନ୍ତ ହୃଷ୍ଟ ଅନୁଭବ କରିଥିଲେ ।

କଲିକତାର ମେୟର୍ ରୂପେ ସହରର ବିଭିନ୍ନ ପାର୍କରେ ପିଲାମାନଙ୍କ ଲାଗି ଖେଳ କସରତର ସୁବିଧାମାନ ଯୋଗାଇ ଦେବାରେ ସେ ସକ୍ରିୟ ଆଗ୍ରହ ଦେଖାଇଥିଲେ ଏବଂ ବୟସ୍କମାନଙ୍କ ପାଇଁ ବ୍ୟାୟାମଶାଳା ମଧ୍ୟ ଖୋଲାଇଥିଲେ । ୱେଲିଙ୍ଗଟନ୍ ସ୍କୋୟାର୍ (ବର୍ତ୍ତମାନ ସୁବୋଧ ମଲ୍ଲିକ ସ୍କୋୟାର୍)ରେ ଥିବା ବ୍ୟାୟାମଶାଳା ତାହାର ଏକ ଦୃଷ୍ଟାନ୍ତ । ପୁନଶ୍ଚ, ପ୍ରସିଦ୍ଧ କ୍ରୀଡ଼ାବିତ୍ ବିଷ୍ଣୁ ଘୋଷ ଆରମ୍ଭ କରିଥିବା ଜିମ୍‌ନାଷ୍ଟିକ୍ ଅନୁଷ୍ଠାନଟିର ମଧ୍ୟ ସେ ପୃଷ୍ଠପୋଷକତା କରିଥିଲେ । କ୍ରୀଡ଼ା

ଉଦ୍ଦେଶ୍ୟରେ ଗୋଟିଏ ଷ୍ଟାଡ଼ିଅମ୍ ନିର୍ମାଣ କରିବାକୁ ମଇଦାନ ଉପଲବ୍ଧ ନ ହେବାରୁ ସେ ହ୍ରଦ ଅଞ୍ଚଳରେ ତାହାକୁ ନିର୍ମାଣ କରିବାର ଯୋଜନା ମଧ୍ୟ କରିଥିଲେ ।

ବହୁ ସଂଖ୍ୟକ ଉଦ୍ୟମଶୀଳ ତରୁଣ ଯୁବକ ଯତୀନ୍ଦ୍ରମୋହନଙ୍କର ପୃଷ୍ଠପୋଷକତା ଲୋଡ଼ୁଥିଲେ ଏବଂ ସେ ମଧ୍ୟ ସବୁ କ୍ଷେତ୍ରରେ ସକ୍ରିୟ ସହାନୁଭୂତି ଏବଂ ପ୍ରୋତ୍ସାହନ ପ୍ରଦର୍ଶନ କରିବାଲାଗି ପ୍ରସ୍ତୁତ ରହିଥିଲେ । ଥରେ ସାଇକେଲ୍‌ରେ ଚଢ଼ି ପୃଥିବୀ ପରିକ୍ରମା କରିବାକୁ ବାହାରିଥିବା ଚାରିଜଣ ବଂଗାଳୀ ଯୁବକଙ୍କୁ ଏକ ଭବ୍ୟ ବିଦାୟ-ସମ୍ବର୍ଦ୍ଧନା ଦେବା ସକାଶେ ଗଢ଼ା ହୋଇଥିବା ଗୋଟିଏ କମିଟିରେ ସ୍ୱୟଂ ମେୟର୍ ଯତୀନ୍ଦ୍ରମୋହନ ଅଧ୍ୟକ୍ଷ ହୋଇ ରହିଥିଲେ । ପ୍ରତିନିଧିମୂଳକ ସେହି କମିଟିରେ କଲିକତା ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ଡକ୍ଟର ସର୍ବାଧିକାରୀଙ୍କ ପରି ସୁବିଖ୍ୟାତ ଲୋକମାନେ ସଭ୍ୟ ହୋଇ ରହିଥିଲେ । ସାର୍ ଆର୍. ଏନ୍. ମୁଖର୍ଜୀ ତାହାର ପୃଷ୍ଠପୋଷକ ଥିଲେ । ସେହି ଚାରିଜଣ ଯୁବକ ହେଉଛନ୍ତି ଅଶୋକ କୁମାର ମୁଖର୍ଜୀ (ଅଧିନାୟକ), ଆନନ୍ଦ ମୁଖର୍ଜୀ, ବିମଳ ମୁଖର୍ଜୀ ଓ ମହୀନ୍ଦ୍ର ବୋଷ ।★

ଯେପରି ପୂର୍ବରୁ କୁହାଯାଇଛି, ରାଞ୍ଚିରେ ଅନ୍ତେବନ୍ଦୀ ହୋଇ ରହିଥିବା ସମୟରେ ତାଙ୍କ ଜୀବନର ଶେଷ ସନ୍ଧ୍ୟାରେ (ଜୁଲାଇ 22,1933) ଯତୀନ୍ଦ୍ରମୋହନ ଗାଡ଼ିରେ ବସି ବାହାରକୁ ଟିକିଏ ବୁଲି ଯାଇଥିଲେ ; ସେତେବେଳେ ମଧ୍ୟ ସେ ଗଲ୍‌ଫ କୋର୍ସ ପାଖରେ ଗାଡ଼ି ଅଟକାଇ ଡାଇବସା ରୋଡ୍‌ରେ ହେଉଥିବା କେବଳ ଗୋଟିଏ ହକି ମ୍ୟାଚ୍ ଦେଖିବା ଲାଗି କିଛି ବାଟ ଚାଲି ଚାଲି ଯାଇଥିଲେ ।

### ଜଣେ ଓକିଲ ଭାବରେ ଅସାଧାରଣ ନୈପୁଣ୍ୟ

ଜଣେ ବାରିଷ୍ଟର ହିସାବରେ ଯତୀନ୍ଦ୍ରମୋହନଙ୍କର ସମଗ୍ର ଦେଶରେ ସୁଖ୍ୟାତି ରହିଥିଲା ଏବଂ ଫୌଜଦାରୀ ମୋକଦ୍ଦମାରେ ସେ ଏହି ବ୍ୟବସାୟରେ ବ୍ୟାପକ ସଫଳତା ଲାଭ କରିଥିଲେ । ତତ୍କାଳୀନ ଭାରତରେ ଆଇନ୍ ଜୀବିକାରୂପୀ ଗଗନର ଜ୍ୟୋତିଷମାନଙ୍କ ମଧ୍ୟରେ ଯତୀନ୍ଦ୍ରମୋହନଙ୍କର ନାମ ଚିତ୍ତରଞ୍ଜନ ଦାଶ, ଏମ୍. ଏ. ଜିନ୍ନା, ଏମ୍. ଆର୍. ଜୟକାର, ଚିମନ୍‌ଲାଲ୍ ସେତଲବାଦ ଓ ଅନ୍ୟମାନଙ୍କ ମଧ୍ୟରେ ପ୍ରମୁଖ ଭାବରେ ଲିପିବଦ୍ଧ ହୋଇ ରହିଛି । ଅବଶ୍ୟ ଏକଥା ସତ ଯେ, ରାଜନୀତିକ ଜୀବନର ବହୁ ସଂଖ୍ୟକ କାର୍ଯ୍ୟରେ ବ୍ୟସ୍ତ ରହିବାକୁ ପଡ଼ିଥିବାରୁ ଏବଂ ତାଙ୍କର ସଂକ୍ଷିପ୍ତ ଜୀବନର ସର୍ବୋତ୍ତମ ବର୍ଷଗୁଡ଼ିକର ଅବଧି ମଧ୍ୟରେ ତାଙ୍କୁ ବାରମ୍ବାର ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ କାରାବରଣ କରିବାକୁ ହୋଇଥିବାରୁ ସେନଗୁପ୍ତଙ୍କର ଆଇନ୍‌ଜୀବୀ-ଜୀବନ ଅତ୍ୟନ୍ତ ବାଧାପ୍ରାପ୍ତ ହୋଇରହିଥିଲା । ତଥାପି ଆପଣାଲାଗି ସେ ଅନେକ ନାମ ଅର୍ଜନ କରିପାରିଥିଲେ । କଲିକତା ଏବଂ ଅନ୍ୟତ୍ର ସେ ଯେଉଁ ସବୁ ମକଦ୍ଦମାରେ ଲଢ଼ିବାପାଇଁ ଠିଆ ହୋଇଥିଲେ, ସେଥିରେ ଆପଣାର ନୈପୁଣ୍ୟ ପ୍ରଦର୍ଶନ କରିଥିଲେ । ଦେଶବନ୍ଧୁ ଚିତ୍ତରଞ୍ଜନଙ୍କ ପରି ସେ ମଧ୍ୟ ଜଣେ ଦୁର୍ଜେୟ ଏବଂ ଲୋକପ୍ରିୟ ଓକିଲ ଥିଲେ । ବହୁସଂଖ୍ୟକ ଜଟିଳ ରାଜନୀତିକ ମୋକଦ୍ଦମା ମାନଙ୍କରେ, ଯେଉଁଥିରେ ଅଭିଯୁକ୍ତ ହୋଇଥିବା ଯୁବକମାନେ (ବିପ୍ଳବୀ ଦେଶଭକ୍ତମାନେ) ନରହତ୍ୟା, ଷଡ଼ଯନ୍ତ୍ର, ପାଖରେ ଅସ୍ତ୍ରଶସ୍ତ୍ର ରଖିବା, ରାଜଦ୍ରୋହ, ଏବଂ ଡକାୟତି ପ୍ରଭୃତି ଗୁରୁତର ଦଫା ମାନଙ୍କରେ ପଡ଼ିଥିଲେ, ସେଥିରେ ଯେପରି ଶକ୍ତିଶାଳୀ ଭାବରେ ସେମାନଙ୍କ ପକ୍ଷରୁ ଲଢ଼ିଥିଲେ, ତାହାକୁ ଏବେ ମଧ୍ୟ ପ୍ରଶଂସାର ସହିତ ସ୍ମରଣ କରାଯାଉଛି ।

---

★ ନିର୍ମଳ ଚୌଧୁରୀଙ୍କର ଲିଖିତ ପ୍ରବନ୍ଧ An Exile Back Home - ହିନ୍ଦୁସ୍ତାନ ଷ୍ଟାଣ୍ଡାର୍ଡ୍, ମାଗାଜିନ୍, ଡିସେମ୍ବର 17, 1972

ଚିଟାଗଙ୍ଗରେ ଏକ ବିଶେଷ ବିଚାରାଳୟ ଆଗରେ କୁଷ୍ଟିଆ ମକଦ୍ଦମାରେ (1918) ଅଭିଯୁକ୍ତ 17 ଜଣ ଅଟକବନ୍ଦୀଙ୍କର ପକ୍ଷରୁ ସେ ଚିତ୍ତରଞ୍ଜନଙ୍କର ଜଣେ ଅତ୍ୟନ୍ତ ସକ୍ରିୟ ସହକାରୀ ଭାବରେ କାର୍ଯ୍ୟ କରିଥିଲେ । ସେଠାରେ ବେଳେବେଳେ ସେ ଯେଉଁ ବିଚକ୍ଷଣ ମନ୍ତବ୍ୟମାନ ଦେଉଥିଲେ, ତାହା ଏହି ଯୁବକ ବାରିଷ୍ଟରଙ୍କ ଲାଗି ଅତ୍ୟନ୍ତ ସୁନାମ ଅର୍ଜନ କରାଇଥିଲା । ଦ୍ୱିତୀୟ ଦଶକରେ ଏକାଦିକ୍ରମେ ଅନେକ ଉତ୍ତେଜନାପୂର୍ଣ୍ଣ ରାଜନୀତିକ ମକଦ୍ଦମାରେ ସେ ବିପ୍ଳବୀ ଯୁବକମାନଙ୍କୁ ଅଭିଯୋଗ ଠାରୁ ମୁକ୍ତ କରି ଆଣିପାରିଥିଲେ । ବିଭିନ୍ନ ଫୌଜଦାରୀ ମକଦ୍ଦମାରେ ମଧ୍ୟ ବାରିଷ୍ଟର ସେନଗୁପ୍ତ ଦୃଢ଼ଭାବରେ ଏକାଧିକ ବିପ୍ଳବୀ ତରୁଣଙ୍କର ପକ୍ଷ ଲଢ଼ି ଆପଣାର ଆଇନ୍‌ବିଦ୍ୟାର ଜ୍ଞାନ ଏବଂ ତାହାକୁ ବିଚକ୍ଷଣ ଭାବରେ ପ୍ରୟୋଗ କରିବାର ଶକ୍ତିର ପ୍ରୟୋଗ କରି ସେମାନଙ୍କୁ ସମସ୍ତଙ୍କୁ ଖଲାସ କରାଇ ଦେଇଥିଲେ । ଚିଟାଗଙ୍ଗରେ ହୋଇଥିବା ଏ. ବି. ରେଲ୍‌ବାଇର ଡକାୟତି ଏବଂ ତାହାର ଆନୁଷଙ୍ଗିକ ଘଟଣାଗୁଡ଼ିକୁ (1923-24) କେନ୍ଦ୍ର କରି କରାଯାଇଥିବା ଉତ୍ତେଜନାପୂର୍ଣ୍ଣ ମକଦ୍ଦମାରୁ ସୂର୍ଯ୍ୟସେନ, ଅମ୍ବିକା ଚକ୍ରବର୍ତ୍ତୀ ଏବଂ ଅନନ୍ତ ସିଂହଙ୍କୁ ଖଲାସ କରାଇ ଆଣିବାର ଘଟଣାଟି ଏଠାରେ ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ । ଚିଟାଗଙ୍ଗର ଜଣେ ଗୋଇନ୍ଦା ସବ୍-ଇନିସ୍‌ପେକ୍ଟରଙ୍କୁ ହତ୍ୟା କରିଥିବାର ମକଦ୍ଦମାରେ ଲିପ୍ତ (1924) ପ୍ରେମାନନ୍ଦ ଦତ୍ତଙ୍କର ଖଲାସ ହେବା ମଧ ସେହିପରି ଆଉ ଗୋଟିଏ ଘଟଣା । ତାହାପୂର୍ବରୁ ଉଲ୍‌ଟାଡାଙ୍ଗ୍ ଡାକଘର ଡକାୟତିର ପରବର୍ତ୍ତୀ ଘଟଣା ରୂପେ ଆଲିପୁର ଷଡ଼ଯନ୍ତ୍ର ମକଦ୍ଦମା (ନୂତନ) ନାମରେ ବିଦିତ ରାଜନୀତିକ ମକଦ୍ଦମାର ବିଚାରରେ ସନ୍ତୋଷ ମିତ୍ର (ଅନନ୍ତଙ୍କର ସଙ୍ଗୀ) ଏବଂ ଅନ୍ୟମାନଙ୍କର ପକ୍ଷ ମଧରେ ସେ ଅତ୍ୟନ୍ତ ସଫଳ ଭାବରେ ଲଢ଼ିଥିଲେ ।

**ବାଉଲା ହତ୍ୟା ମକଦ୍ଦମା**

ବାଉଲା ହତ୍ୟା ମକଦ୍ଦମା ନାମରେ ବିଦିତ ଗୋଟିଏ ବିଚାରରେ ମୁଦାଲାର ପକ୍ଷ ଲଢ଼ି ସେନଗୁପ୍ତ ଅଖିଳ ଭାରତୀୟ ଖ୍ୟାତି ଅର୍ଜନ କରିଥିଲେ । ଇନ୍ଦୋରର ନର୍ତ୍ତକୀ ପରମାସୁନ୍ଦରୀ ମମ୍‌ତାଜ ବେଗମ୍ କାହାର ଜିମା ହୋଇ ରହିବ, ତାହାକୁ କେନ୍ଦ୍ରକରି ଲାଗିଥିବା ଗଣ୍ଡଗୋଳରୁ ଏହି ଖୁନୀ ମକଦ୍ଦମାର ସୂତ୍ରପାତ ହୋଇଥିଲା । ଦୁଇ ପକ୍ଷରେ ଦୁଇଜଣ ଧନାଢ଼୍ୟ ବ୍ୟକ୍ତି ରହିଥିଲେ । ଜଣେ ହେଉଛନ୍ତି ଭାରି ଶକ୍ତିଶାଳୀ ସ୍ଥାନୀୟ ରାଜା ଏବଂ ଆଉଜଣେ ବମ୍ବେ ସହରର ଜଣେ ଧନୀ ବାସିନ୍ଦା ଓ ମ୍ୟୁନିସିପାଲ୍ କର୍ପୋରେସନ୍‌ର ସଭ୍ୟ । ପ୍ରଥମ ବ୍ୟକ୍ତିଟି ପାଖରୁ ବେଗମ୍ କୌଣସି ପ୍ରକାରେ ପଳାଇଯିବା ପରେ ଶୁଣାଗଲା ଯେ ବମ୍ବେର ଲକ୍ଷପତି ବାଉଲା ତାଙ୍କର ପ୍ରଣୟୀ ହୋଇଥିଲେ । ବେଗମ୍‌ଙ୍କୁ ପୁନରଧିକାର କରିବା ସକାଶେ ଅଥବା ତାଙ୍କର ଶାରୀରିକ ସୌନ୍ଦର୍ଯ୍ୟକୁ ନଷ୍ଟ କରିଦେବା ସକାଶେ ବେଗମ୍‌ଙ୍କର ପ୍ରଥମ ପ୍ରେମିକ ଆପଣାର ଯାବତୀୟ କୌଶଳ ପ୍ରୟୋଗ କରିଥିଲେ ଏବଂ ସେହି ଅଭିପ୍ରାୟରେ ଦଳେ ସଶସ୍ତ୍ର ଲୋକଙ୍କୁ ପଛରେ ଲଗାଇଥିଲେ । ବାଉଲା ଓ ମମତାଜ ମାଲବାର ହିଲ୍‌ର ଉପକଣ୍ଠରେ ଏକ ବିଳାସ ଭ୍ରମଣରେ ବ୍ୟସ୍ତ ରହିଥିବା ସମୟରେ ଆକ୍ରମଣକାରୀମାନେ ବାଉଲାଙ୍କୁ ଗୁଳିକରି ମାରିଦେଇଥିଲେ । ଏକ ଆମେରିକାନ୍ ଟୁରିଷ୍ଟ୍ ଦଳ ଦ୍ୱାରା ମୁଖ୍ୟ ଆକ୍ରମଣକାରୀ ସେହିଠାରେ ଧରା ପଡ଼ି ଯାଇଥିଲା । ପ୍ରଥମ ଅଭିଯୁକ୍ତ ବ୍ୟକ୍ତି ସଫି ଅହମ୍ମଦ ପକ୍ଷରୁ ମକଦ୍ଦମା ଲଢ଼ିବା ପାଇଁ ଇକ୍ଷେଟଙ୍କାର ଚୁକ୍ତିରେ ଓକିଲରୂପେ ସେନଗୁପ୍ତ ନିଯୁକ୍ତ ହୋଇଥିଲେ । ଏଥିରୁ ତାଙ୍କୁ ଆଗତୁରା ପଚିଶି ହଜାର ଟଙ୍କା ମିଳିଯାଇଥିଲା । ବମ୍ବେର ଦୁଇଜଣ ପ୍ରସିଦ୍ଧ ବାରିଷ୍ଟର ମିଷ୍ଟର ଜିନ୍ନା ଏବଂ ଶ୍ରୀ ଭେଲ୍‌ଣିକର୍

ଅନ୍ୟ ଅଭିଯୁକ୍ତ ବ୍ୟକ୍ତି ପକ୍ଷରୁ ଓକିଲ ନିଯୁକ୍ତ ହୋଇଥିଲେ । ଏହି ମକଦ୍ଦମାରେ ସେନଗୁପ୍ତ ତାଙ୍କର ଯାବତୀୟ ନୈପୁଣ୍ୟ କୌଶଳକୁ କାମରେ ଲଗାଇଥିଲେ । ସରକାରୀ ସାକ୍ଷୀମାନଙ୍କୁ ଲଗାଏତ ଅନେକ ଦିନ ପାଇଁ ଜେରା କରିବାରେ ସେ ଅଦ୍ଭୁତ ବିଚକ୍ଷଣତା ପ୍ରଦର୍ଶନ କରିଥିଲେ ଏବଂ ଚାରିଆଡ଼େ ସମସ୍ତେ ତାହାର ଭୂରିଭୂରି ପ୍ରଶଂସା କରିଥିଲେ । ମୁଖ୍ୟ ଅଭିଯୁକ୍ତ ବ୍ୟକ୍ତି ଓ ଅନ୍ୟମାନଙ୍କୁ ରକ୍ଷା କରିବା ସମ୍ଭବ ହୋଇ ନ ପାରିଥିଲେ ମଧ୍ୟ ପ୍ରିଭି କାଉନ୍‌ସିଲ୍‌ରେ ଅପିଲ୍ କରିବା ସକାଶେ ସକଳ ବ୍ୟବସ୍ଥା ହୋଇଥିଲା ଏବଂ ସେଥିରେ ସେନଗୁପ୍ତ ମୁଖ୍ୟ ଓକିଲରୂପେ ନିଯୁକ୍ତ ହୋଇଥିଲେ । ଦୁର୍ଭାଗ୍ୟବଶତଃ ସେତିକିବେଳେ ଚିତ୍ତରଞ୍ଜନଙ୍କର ମୃତ୍ୟୁ ଘଟିଲା ଏବଂ ସେନଗୁପ୍ତଙ୍କ ପକ୍ଷରେ ବିଲାତ ଯିବା ଆଉ ସମ୍ଭବ ହୋଇ ପାରିଲା ନାହିଁ ।

## ଗାନ୍ଧିଜୀଙ୍କର ବିଚାର ଓ ଯତୀନ୍ଦ୍ରମୋହନ

1929 ମସିହା ମାର୍ଚ୍ଚ 3 ତାରିଖରେ ଅତୀବ ହର୍ଷୋଲ୍ଲାସ ମଧ୍ୟରେ ମିର୍ଜାପୁର ପାର୍କ (ବର୍ତ୍ତମାନ ଶ୍ରଦ୍ଧାନନ୍ଦ ପାର୍କ)ରେ ବିଦେଶୀ ବସ୍ତ୍ର ପୋଡ଼ିବାର ଏକ ଅନୁଷ୍ଠାନ ହୋଇଥିଲା ଯେଉଁଥିରେ କି ସ୍ୱୟଂ ଗାନ୍ଧିଜୀ ଯତୀନ୍ଦ୍ରମୋହନ ସେନଗୁପ୍ତ, ସୁଭାଷଚନ୍ଦ୍ର ବୋଷ, କିରଣ ଶଙ୍କର ରାୟ, ଜ୍ଞାନାଞ୍ଜନ ନିୟୋଗୀ ଓ ବଙ୍ଗ ପ୍ରାଦେଶିକ କଂଗ୍ରେସ କମିଟିର ଅନ୍ୟ ନେତାମାନଙ୍କ ସହିତ ଯୋଗ ଦେଇଥିଲେ । ଗାନ୍ଧିଜୀଙ୍କର ଉପସ୍ଥିତି ଯୋଗୁଁ ସେଠାରେ ବୃହତ୍ ଜନସମାଗମ ହୋଇଥିଲା ଏବଂ ସେହି ଘଟଣାଟିର ତାତ୍ପର୍ଯ୍ୟ ବୃଦ୍ଧି ପାଇଥିଲା । ଏହି ବିରାଟ ପ୍ରଦର୍ଶନ ଫଳରେ ପୋଲିସ୍‌କୁ ମଧ ହସ୍ତକ୍ଷେପ କରିବାଲାଗି ସୁଯୋଗ ମିଳିଗଲା ଏବଂ ସେମାନଙ୍କ ପକ୍ଷରୁ ଲାଠିଚାଳନା ହେଲା । ସେଥିରେ ବହୁ ଲୋକ ହତାହତ ହୋଇଥିଲେ । ଗାନ୍ଧିଜୀ ଏବଂ ଆହୁରି କେତେଜଣ ବ୍ୟକ୍ତିଙ୍କୁ ଗିରଫ କରି ନିଆଯାଇଥିଲା । କଲିକତା ପୋଲିସ୍ ଆକ୍ଟ ଅନୁସାରେ ସହରର ଗୋଟିଏ ସର୍ବସାଧାରଣ ସ୍ଥାନରେ ଏକ ବିରାଟ ଜନସମାଗମର ଆୟୋଜନ କରାଇବା ଦ୍ୱାରା ସାଧାରଣ ଶାନ୍ତିକୁ ଭଙ୍ଗ କରିଥିବାର ଅପରାଧରେ ସେମାନଙ୍କୁ ବିଚାର ଲାଗି ଚିଫ୍ ପ୍ରେସିଡ଼େନ୍ସି ମାଜିଷ୍ଟ୍ରେଟଙ୍କ ଆଗରେ ନେଇ ହାଜର କରାଗଲା । ଗାନ୍ଧିଜୀ ଏବଂ ଅନ୍ୟ ଅଭିଯୁକ୍ତମାନଙ୍କ ପକ୍ଷରୁ ଯତୀନ୍ଦ୍ରମୋହନ ଓ ଅନ୍ୟ ବାରିଷ୍ଟରମାନେ ମକଦ୍ଦମା ଲଢ଼ିଥିଲେ । କିରଣ ଶଙ୍କର ରାୟ ମଧ ଅଭିଯୁକ୍ତମାନଙ୍କ ମଧ୍ୟରୁ ଜଣେ ଥିଲେ । ସେନଗୁପ୍ତ ଯୁକ୍ତି ଦର୍ଶାଇ କହିଥିଲେ ଯେ, ବିଦେଶୀ ବସ୍ତ୍ରଦାହ ସେହି ବିରାଟ ପାର୍କର ମଝିରେ ହେଉଥିଲା, ତେଣୁ ତଦ୍ୱାରା ବାହାରର ଲୋକମାନଙ୍କ ଲାଗି ତାହା କୌଣସି ବ୍ୟାଘାତ ସୃଷ୍ଟି କରୁ ନଥିଲା ଏବଂ ସେଥିଲାଗି ଘଟଣାଟିକୁ କଲିକତା ପୋଲିସ୍ ଆକ୍ଟ ଅନୁସାରେ ଏକ ଅପରାଧ ବୋଲି ଆଦୌ କୁହାଯାଇପାରିବ ନାହିଁ ।

ତହିଁ ଆରଦିନ ଚିଫ୍ ପ୍ରେସିଡେନ୍ସି ମାଜିଷ୍ଟ୍ରେଟ ରକ୍ସବର୍ଗ ଗାନ୍ଧିଜୀ ଓ କିରଣ ଶଙ୍କରଙ୍କୁ ଗୋଟିଏ ଟଙ୍କା ଜୋରିମାନା ଦେବାର ଦଣ୍ଡବିଧାନ କରିଥିଲେ କିମ୍ବା, ଜୋରିମାନା ନଦେଲେ ଗୋଟିଏ ସପ୍ତାହ ଅଶ୍ରମ କାରାଦଣ୍ଡ ଭୋଗ କରିବେ ବୋଲି ଆଦେଶ ଦେଇଥିଲେ । ଶ୍ରୀଯୁକ୍ତ ଜ୍ଞାନଶଙ୍କର ସେନଗୁପ୍ତ ସଙ୍ଗେ ସଙ୍ଗେ ଜୋରିମାନା ଦାଖଲ କରି ଦେଇଥିଲେ; ସେ ନିଜକୁ ଜଣେ 'ବନ୍ଧୁ' ବୋଲି କହି ନିଜର ନାମକୁ ଗୋପନ ରଖିଥିଲେ । ଯତୀନ୍ଦ୍ରମୋହନଙ୍କର ପରାମର୍ଶକ୍ରମେ ତାହା କରାଯାଇଥିଲା ।

ରାୟ ଦିଆଯିବା ଦିନ ଗାନ୍ଧିଜୀ ପ୍ରକୃତରେ କଲିକତା ବାହାରେ ଥିଲେ ଏବଂ, ଜୋରିମାନା ଦିଆ ସରିଛି ବୋଲି ଶୁଣି ସେ ଅତ୍ୟନ୍ତ ବିରକ୍ତ ଏବଂ କ୍ଷୁବ୍ଧ ହୋଇ ପଡ଼ିଲେ । ଜଣେ ସତ୍ୟାଗ୍ରହୀ ହିସାବରେ ସେ ଜେଲ୍ ଯିବାକୁ ହିଁ ଅଧିକ ପସନ୍ଦ କରିଥାନ୍ତେ । କଲିକତାର କେତେକ ସମ୍ବାଦପତ୍ର ମଧ ଏହି ବିଷୟରେ ପ୍ରତିକୂଳ ମନ୍ତବ୍ୟମାନ ପ୍ରକାଶ କରିଥିଲେ । ବସ୍ତୁତଃ, ଗାନ୍ଧିଜୀ ତାଙ୍କର ସାପ୍ତାହିକ ''ୟଙ୍ଗ୍ ଇଣ୍ଡିଆ''ରେ ଏହି ବିଷୟରେ ଲେଖାଟିଏ ଲେଖିଥିଲେ । ସେନଗୁପ୍ତ ସଙ୍ଗେ ସଙ୍ଗେ ଟେଲିଫୋନ୍ ଯୋଗେ ଗାନ୍ଧିଜୀଙ୍କ ସହିତ କଥାବାର୍ତ୍ତା କରିଥିଲେ ଏବଂ ଜୋରିମାନା ଦେଇଥିବା ବ୍ୟକ୍ତିଙ୍କର ନାମକୁ ତାଙ୍କ ଆଗରେ ପ୍ରକାଶ କରି ଦେଇଥିଲେ ଏବଂ କହିଥିଲେ ଯେ, ତାଙ୍କ ନିଜର ପରାମର୍ଶ କ୍ରମେ ହିଁ ଜୋରିମାନା ଦାଖଲ କରାଯାଇଥିଲା, କାରଣ ସେ ଚିଫ୍ ପ୍ରେସିଡେନ୍ସି ମାଜିଷ୍ଟ୍ରେଟଙ୍କ ନିଷ୍ପତ୍ତିର ଯୁକ୍ତିଯୁକ୍ତତା ହାଇକୋର୍ଟ ସ୍ତରରେ ମଧ ପରୀକ୍ଷିତ ହେବାକୁ ଯାଉ ବୋଲି ଇଚ୍ଛା କରୁଥିଲେ । ମହାତ୍ମାଜୀ ସେନଗୁପ୍ତଙ୍କର ଆନ୍ତରିକତାକୁ ଅବଶ୍ୟ ବୁଝିପାରିଥିଲେ ଏବଂ ଜଣେ ବିଚକ୍ଷଣ ଆଇନଜୀବୀ ହିସାବରେ ତାଙ୍କର କାର୍ଯ୍ୟକୁ ପସନ୍ଦ କରିଥିଲେ । ଅନ୍ୟ ସମାଲୋଚକମାନେ ମଧ ନୀରବ ହୋଇ ଯାଇଥିଲେ । ଏହି ସଂକ୍ରାନ୍ତରେ ଗାନ୍ଧିଜୀ ଏକ ପରବର୍ତ୍ତୀ ଅବସରରେ କହିଥିଲେ ଯେ, ଦଣ୍ଡବିଧାନ ବିରୋଧରେ ହାଇକୋର୍ଟରେ ଆଦୌ କୌଣସି ଅପିଲ କରାଯିବାର ସେ ମୋଟେ ପକ୍ଷପାତି ନଥିଲେ ।

ଆପଣାର ସଂକ୍ଷିପ୍ତ ଅଥଚ ପ୍ରତିଭାମୟ ଆଇନଜୀବୀ-ଜୀବନରେ ସେନଗୁପ୍ତ ସଫଳତାର ସହିତ ଏକାଧିକ ଅତିଜଟିଳ ଦୌରା ମକଦ୍ଦମାରେ ବିଭିନ୍ନ ସ୍ଥାନରେ ନରହତ୍ୟାରେ ଅଭିଯୁକ୍ତ ଅନେକ ଆସାମୀଙ୍କ ପକ୍ଷରୁ ଲଢ଼ିଥିଲେ । ଏଥି ମଧରେ ଫରିଦପୁରର କାବୁଲି ହତ୍ୟା ମକଦ୍ଦମା ହେଉଛି ଏକ ଉଲ୍ଲେଖଯୋଗ୍ୟ ଉଦାହରଣ । ଅତ୍ୟନ୍ତ ସାଂଘାତିକ ଏହି ମକଦ୍ଦମାରେ ଉତ୍ତରପଡ଼ାର ଜଣେ ଜମିଦାରଙ୍କ ପୁଅ ହତ୍ୟାକାରୀ ରୂପେ ଅଭିଯୁକ୍ତ ହୋଇଥିଲା ଏବଂ ତା'ର ପକ୍ଷରୁ ମକଦ୍ଦମା ଲଢ଼ିବା ସକାଶେ କଲିକତାର କୌଣସି ବାରିଷ୍ଟର ସମ୍ମତ ହେଲେ ନାହିଁ । ମାତ୍ର, ମକଦ୍ଦମାର ଅସଲ ଗଣ୍ଠି ଗୁଡ଼ିକୁ ଖୁବ୍ ଶୀଘ୍ର ବୁଝିନେଇ ସେନଗୁପ୍ତ ଅଗ୍ରସର ହୋଇ ଆସିଥିଲେ ଏବଂ ମକଦ୍ଦମାଟିକୁ ହାତକୁ ନେଇଥିଲେ । ଆସାମୀ ପକ୍ଷରୁ ସେ ଅଧଘଣ୍ଟାଏ ସମୟ ନେଇ ଯେଉଁ ଯୁକ୍ତିମାନ ଉପସ୍ଥାପିତ କଲେ, ତଦ୍ଦ୍ୱାରା ଆସାମୀ ନିର୍ଦ୍ଦୋଷ ବୋଲି ବିଚାରପତି ସୁରାବର୍ଦ୍ଦୀଙ୍କର ହୃଦ୍‌ବୋଧ ହୋଇଯାଇଥିଲା ଏବଂ ଆସାମୀ ଖଲାସ ହୋଇଗଲା । ଚିଟାଗଙ୍ଗରେ ମଧ ସେନଗୁପ୍ତ ବହୁସଂଖ୍ୟକ ଫୌଜଦାରୀ ଦୌରା ମକଦ୍ଦମାରେ ଜୟଲାଭ କରିଥିଲେ । ପ୍ରଖ୍ୟାତ ବିଚାରପତି ଦ୍ୱାରକାନାଥ ମିତ୍ର ଜଣେ ଓକିଲ ହିସାବରେ ସେନଗୁପ୍ତଙ୍କର ଭୂୟସୀ ପ୍ରଶଂସା କରି କହିଥିଲେ - ''ମୋର ମନେଅଛି 1929 ମସିହାରେ ଯେତେବେଳେ ମୁଁ କଲିକତା ହାଇକୋର୍ଟର ବିଚାରକ ମଣ୍ଡଳୀର ଅଧକ୍ଷତା କରୁଥିଲି, ସେତେବେଳେ ଏକ ହତ୍ୟା-ମକଦ୍ଦମାରେ ସେନଗୁପ୍ତ ମୋର ବିଚାରାଳୟରେ ପ୍ରତିବାଦୀ ତରଫରୁ ଲଢ଼ିବାକୁ ଆସିଥିଲେ । ଯେଉଁ ଦକ୍ଷତା ଏବଂ କୌଶଳ ସହିତ ସେ ପ୍ରତିବାଦୀ ପକ୍ଷରୁ ଯୁକ୍ତିମାନ ଉପସ୍ଥାପିତ କରିଥିଲେ, ତାହା ମୋତେ ଅତୀବ ବିସ୍ମିତ କରି ଦେଇଥିଲା । ତାଙ୍କର ହୃଦ୍‌ବୋଧକାରୀ ବାଗ୍ମିତା ଦ୍ୱାରା ହିଁ ପ୍ରଭାବିତ ହୋଇ ନଅଜଣଯାକ ଜୁରୀ ସେନଗୁପ୍ତଙ୍କର ଆସାମୀ ପକ୍ଷରେ ୫ ଓ ବିପକ୍ଷରେ 4 ହୋଇ ବିଭକ୍ତ ହୋଇ ଯାଇଥିଲେ । ବିଚାରପତି ହିସାବରେ ମୋତେ ଜୁରୀକୁ ବରଖାସ୍ତ କରିଦେଇ ମକଦ୍ଦମାର ପୁନର୍ବିଚାର ସକାଶେ ଆଦେଶ ଦେବାକୁ ପଡ଼ିଥିଲା । ମାତ୍ର ତା'ପରେ ସେହି ମକଦ୍ଦମାକୁ ଆଉଜଣେ ବିଚାରପତି ବିଚାର କଲେ ଓ ଆସାମୀକୁ ଦଣ୍ଡାଦେଶ ହେଲା । ସେହି ମକଦ୍ଦମାରେ ସେ ଯେଉଁ ଦକ୍ଷତା, କୌଶଳ ଏବଂ ନ୍ୟାୟାଳୟୀୟ ବାଗ୍ମିତା ସହକାରେ ଆସାମୀର ପକ୍ଷ ସମର୍ଥନ କରି ଲଢ଼ିଥିଲେ, ଏହିଥିରୁ ହିଁ ତାହାର ପ୍ରମାଣ ମିଳୁଛି । ମୋ'ନିଜ ବ୍ୟକ୍ତିଗତ ଅଭିଜ୍ଞତାରୁ ହିଁ ମୁଁ ଏକଥା କହୁଛି ।''

## ଜଣେ ମନୁଷ୍ୟ ଏବଂ ଦେଶଭକ୍ତ ଯୋଦ୍ଧାରୂପେ

"ଯେଉଁସବୁ ସାଧନ ଦ୍ୱାରା ବିଧାତା କୌଣସି ଜାତିକୁ ମହାନତାର ସ୍ତରକୁ ଉତ୍ତୋଳିତ କରି ନିଅନ୍ତି, ସେଗୁଡ଼ିକୁ ବିଭିନ୍ନ ଗୁଣରୂପେ ମହାନ ବ୍ୟକ୍ତିମାନଙ୍କ ମଧ୍ୟରେ ଆଗରୁ ପ୍ରବିଷ୍ଟ ହୋଇ ରହିଥାଏ ।"— ଲଣ୍ଡନରେ ଅବା କାଥାମ୍‌ଙ୍କର ମନୁମେଣ୍ଟ ଉପରେ ଖୋଦିତ ଏଡ୍‌ମଣ୍ଡ ବର୍କ୍‌ଙ୍କର ଉକ୍ତି ।

ଅପେକ୍ଷାକୃତ ଏତେ କମ୍ ବୟସରେ ଭାରତୀୟ ନେତାମାନଙ୍କ ମଧ୍ୟରେ ଖୁବ୍ କମ୍ ବ୍ୟକ୍ତିଙ୍କ ଠାରେ ହିଁ ଯତୀନ୍ଦ୍ରମୋହନଙ୍କ ପରି ଏତେ ଅଧିକ ତୀକ୍ଷ୍ଣ ବୁଦ୍ଧିମତ୍ତା, ନ୍ୟାୟଯୁକ୍ତିର ପ୍ରଖର ଛେଦନଶକ୍ତି ଏବଂ ଜଣେ ରାଜନୀତିଜ୍ଞ ତଥା ଦେଶଭକ୍ତର ବହୁମୁଖୀ ପ୍ରତିଭା ଏବଂ ବିଚକ୍ଷଣତା, ଦୃଷ୍ଟିଗତ ସ୍ୱଚ୍ଛତା, ତଥା ଭାବନା ଏବଂ ଅଭିବ୍ୟକ୍ତିର ନିର୍ମଳତା ଏବଂ ସ୍ୱବିଶ୍ୱାସର କ୍ଷେତ୍ରରେ ଏତେ ନିର୍ଭୟତା ଦୃଷ୍ଟିଗୋଚର ହୋଇଥିଲା । ଏହିସବୁ ଗୁଣ ସକାଶେ ହିଁ ଯତୀନ୍ଦ୍ରମୋହନ ବହୁ ପ୍ରତିକୂଳ ପରିସ୍ଥିତି ବିରୋଧରେ ସଂଗ୍ରାମ କରିପାରିଥିଲେ ।

## ଜଣେ ବିଶାଳ ଯୋଦ୍ଧା

ଆପଣା ନେତୃତ୍ୱର ପ୍ରଥମ ମୁହୂର୍ତ୍ତରୁ ହିଁ ଯତୀନ୍ଦ୍ରମୋହନ ଜଣେ ମହାନ୍ ଯୋଦ୍ଧା ହୋଇ ରହିଥିଲେ । ମାତୃଭୂମିର ମୁକ୍ତି ଲାଗି ସେ ଏଡ଼େ ଶକ୍ତିଶାଳୀ ବ୍ରିଟିଶ୍ ଶାସକମାନଙ୍କ ସହିତ ଯୁଦ୍ଧ କରିଥିଲେ । ରାଜନୀତିକ କ୍ଷେତ୍ରରେ ଆପଣାର ପୂର୍ବତନ ଅନେକ ପ୍ରଶଂସକଙ୍କର ଆକ୍ରମଣ ଏବଂ ତାଙ୍କର ସମାଲୋଚକ ପାଲଟି ଯାଇଥିବା ଅନେକ ବିଶିଷ୍ଟ ସହକର୍ମୀଙ୍କର ସମାଲୋଚନା ସମ୍ମୁଖରେ ମଧ୍ୟ ସେ ଅତ୍ୟନ୍ତ ଦୃଢ଼ ଭାବରେ ଦଣ୍ଡାୟମାନ ହୋଇପାରିଥିଲେ, ଏବଂ ଆପଣାର ଉଚ୍ଚ ଆଦର୍ଶ ତଥା ନୀତିଗୁଡ଼ିକର ବଳରେ ପକ୍ଷାଗ୍ରହିତା ଏବଂ ଅନ୍ୟାୟ ବିରୋଧରେ ମଧ୍ୟ ଯୁଦ୍ଧ କରିପାରିଥିଲେ । ମାତ୍ର ନିଜେ ଅତ୍ୟନ୍ତ ନିର୍ମଳ ରହି ଓ ସ୍ୱଚ୍ଛମନା ରହି ସେ ଏହିସବୁ ସଂଗ୍ରାମରେ ଅବତୀର୍ଣ୍ଣ ହୋଇଥିଲେ । ବିଶ୍ୱାସର ବଳରେ ବଳିଷ୍ଠ ଏକ ଉତ୍ସାହୀ ଇଚ୍ଛା ଦ୍ୱାରା ଏବଂ ନିଷ୍ଠାମୟ ଏକ ବାଗ୍ମିତା ଦ୍ୱାରା ସେ ସେହି ସଂଗ୍ରାମଗୁଡ଼ିକୁ ଲଢ଼ିଥିଲେ । ବ୍ୟକ୍ତିଗତ ଓ ରାଜନୀତିକ ଜୀବନରେ ତାଙ୍କୁ ଯେଉଁସବୁ ଘୋର ପରୀକ୍ଷା ମଧ୍ୟଦେଇ ଗତି କରିବାକୁ ହୋଇଥିଲା ତଥା ତାଙ୍କ ବିଶିଷ୍ଟ ଜୀବନପ୍ରବାହର ମୂଲ୍ୟବାନ ଅନୁଭୂତିଗୁଡ଼ିକ ତାଙ୍କୁ ନାନାବିଧ ଅନେକ ଅଭିଜ୍ଞତା ଆଣି ଯୋଗାଇ ଦେଇଥିଲା ଓ ସେହି ଅଭିଜ୍ଞତାମାନ ତାଙ୍କୁ ପୀଡ଼ିତ କରି ପକାଇବା ପରିବର୍ତ୍ତେ ତାଙ୍କ ଅନ୍ତର ତଥା ମନକୁ ଅଧିକ ସମତାଯୁକ୍ତ କରିପାରିଥିଲା ଏବଂ ଜଣେ ମନୁଷ୍ୟ ହିସାବରେ ତାଙ୍କ ପରିପକ୍ୱତା ଆଣି ଦେଇଥିଲା ।

## ସେନ୍‌ଗୁପ୍ତଙ୍କର ଦ୍ୱିବିଧ ବ୍ୟକ୍ତିତ୍ୱ

ଜୀବନ, କାର୍ଯ୍ୟକଳାପ, ବ୍ୟବହାର ଏବଂ ଚରିତ୍ରର ପ୍ରାୟ ପ୍ରତ୍ୟେକ କ୍ଷେତ୍ରରେ ଦେଶପ୍ରିୟ ଯତୀନ୍ଦ୍ରମୋହନ ସେନଗୁପ୍ତ ଏକ 'ଦ୍ୱିବିଧ ବ୍ୟକ୍ତିତ୍ୱ'ର ଗୋଟିଏ ପ୍ରତୀକାତ୍ମକ ଦୃଷ୍ଟାନ୍ତ ହୋଇ ରହିଥିଲେ ।

ଜଣେ ଶକ୍ତିଶାଳୀ ବକ୍ତାଙ୍କର ଏକ ଶକ୍ତିଶାଳୀ ବ୍ୟକ୍ତିତ୍ୱ ଅବଶ୍ୟ ରହିଥାଏ, ଏବଂ ଯତୀନ୍ଦ୍ର ମୋହନଙ୍କର ଏକ ଅତ୍ୟନ୍ତ ଆକର୍ଷକ ଦେହଗଠନ ରହିଥିଲା । ସାଧାରଣତଃ ସର୍ବଦା ସେ ଦୁଗ୍ଧଶୁଭ୍ର ଖଦଡ଼ ଧୋତି ପରିଧାନ କରୁଥିଲେ, ତା'ଉପରେ ତାଙ୍କ ଦେହରେ ସେହିପରି ଶୁଭ୍ର ଗୋଟିଏ ଧଳା ଚଦର ଆବୃତ ହୋଇ ରହୁଥିଲା । ଦେଖିଲେ ତାଙ୍କୁ ଜଣେ ଚୋଗା ପିନ୍ଧିଥିବା ଜଣେ ରୋମାନ୍ କୁଟୁମ୍ବକର୍ତ୍ତା ପରି ମନେ ହେଉଥିଲା । ତାଙ୍କର ସେହି ରୂପ ଅତ୍ୟନ୍ତ ପ୍ରଭାବଶାଳୀ ହୋଇ ରହିଥିଲା ।

ପ୍ରାୟ ଛଅ ଫୁଟରୁ ଅଧିକ ଉଚ୍ଚତା, କାନ୍ଧ ଆଦୌ ଏତେଟିକିଏ ବି କୁଜା ନୁହେଁ, ବସିବାବେଳେ, ଠିଆ ହେବାବେଳେ କିମ୍ବା ଚାଲିବା ସମୟରେ ଆଦୌ କୁଜା ନୁହେଁ । ଅତ୍ୟନ୍ତ ତୀକ୍ଷ୍ଣ ନାକ ଉପରେ ସତେଅବା କେଉଁ ଗଭୀରକୁ ଆପଣାର ଦୃଷ୍ଟିକୁ ଭେଦ କରାଇ ରଖିଥିବା ଆଖି ଦୁଇଟି ଉପରେ ଏକ ଚଷମା - ଏହି ସବୁକିଛି ତାଙ୍କର ସମଗ୍ର ଚେହେରାଟିକୁ ଏକ ଗାମ୍ଭୀର୍ଯ୍ୟ ଆଣି ଦେଉଥିଲା, ଏବଂ ଏହିପରି ଭାବରେ ଏପରି ଏକ ବ୍ୟକ୍ତିତ୍ୱ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି ଦେଉଥିଲା, ଯାହାକି ସତେଅବା ଆପଣାର ଏକ ସ୍ୱତନ୍ତ୍ର ପୃଥିବୀରେ ହିଁ ବାସ କରୁଥିଲା, ଯେତେବେଳେ ଏକ ବୃହତ୍ ଜନତା ସମକ୍ଷରେ ଯତୀନ୍ଦ୍ରମୋହନ ବକ୍ତୃତା ଦେବାଲାଗି ଦଣ୍ଡାୟମାନ ହେଉଥିଲେ, ସେତେବେଳେ ଏକ ଗଭୀର ଓ କୋମଳ କଣ୍ଠସ୍ୱର ଧୀରେ ଅଥଚ ହଠାତ୍ ଏକ ମଧୁର ନିନାଦଯୁକ୍ତ ବାଗ୍ମିତାର ସ୍ତରକୁ ଉତ୍ତୋଳିତ ହୋଇ ଯାଉଥିଲା । ମନେ ହେଉଥିଲା, ସତେଅବା ତାଙ୍କର ସମସ୍ତ ଅନ୍ତର ଯେପରି ଅନୁଗୁଞ୍ଜିତ ଗଭୀରତାରେ ଗତିଶୀଳ ହୋଇ ଉଠୁଥିଲା ।

ଥେଓ. ଏଚ୍. ଥୋର୍ନ, ଏମ୍.ସି. ଯଥାର୍ଥରେ ଲେଖିଥିଲେ : ''ପ୍ରତ୍ୟେକ ମହାନ ବ୍ୟକ୍ତିଙ୍କ ମଧ୍ୟରେ ଏକ ଦ୍ୱିବିଧ ବ୍ୟକ୍ତିତ୍ୱ ରହିଥାଏ । ତାହାର ଗୋଟିଏ ରୂପ ସାଧାରଣରେ ପ୍ରକାଶ ପାଏ - ତାହା ଭୟଙ୍କର ଅଦମ୍ୟ ଏବଂ ଅପ୍ରତିହତ ହୋଇ ରହିଥାଏ । ଅନ୍ୟଟି ଘରୋଇ ଜୀବନର ରୂପ - ଧୀର, ସରଳ ଏବଂ ସ୍ନେହମୟ । ଶ୍ରୀଯୁକ୍ତ ଯତୀନ୍ଦ୍ରମୋହନ ସେନଗୁପ୍ତଙ୍କ ଜୀବନରେ ଏହି ବିଭାଜନଟି ପୂର୍ଣ୍ଣ ଭାବରେ ରହିଥିଲା । ଯେଉଁମାନେ କେବଳ ସାଧାରଣରେ ପ୍ରଦତ୍ତ ତାଙ୍କର ଭାଷଣଗୁଡ଼ିକୁ ପାଠ କରୁଥିଲେ, ସେମାନେ ତାହା ମଧ୍ୟରେ ଏକ କଠୋର ଉପାଦାନ ରହିଥିବାର ଅନୁଭବ କରୁଥିଲେ । ଯେଉଁମାନେ ତାଙ୍କୁ ବ୍ୟକ୍ତିଗତ ଭାବରେ ଜାଣିଥିଲେ, ତାଙ୍କର ସେହି କୋମଳ ହସ (ଯାହାପରେ ସେ ସର୍ବଦା ଆପଣାର ଚଷମାକୁ ବାଗେଇ ନେଉଥିଲେ), ସେହି ବିନୋଦବୋଧ ଏବଂ କୌତୁକପ୍ରବଣତାକୁ ଜାଣିଥିଲେ, ସେମାନେ ଦୁଇଟିଯାକ ଅବସ୍ଥା ପ୍ରକୃତରେ ସେହି ଜଣେ ବ୍ୟକ୍ତିର ଦୁଇ ଅବସ୍ଥା ହୋଇଥିବ ବୋଲି ଆଦୌ କଳ୍ପନା କରିପାରୁ ନଥିଲେ ।

''ମାତ୍ର ଆପଣାର ଭାରସାମ୍ୟକୁ ସେ କଦାପି ହରାଇ ଦେଉନଥିଲେ । ଏପରିକି ନାନା ଚରମ ମନ୍ତବ୍ୟମାନ ବ୍ୟକ୍ତ କରି ସେ ଯେତେବେଳେ ବାଗ୍ମିତାମୟ ଭାଷଣ ଦ୍ୱାରା ଶ୍ରୋତୃମଣ୍ଡଳୀର ଦେହରେ ନିଆଁ ଲଗାଇ ଦେଉଥିଲେ, ସେତେବେଳେ ମଧ୍ୟ ସେ କଦାପି ଆପଣା ନିୟନ୍ତ୍ରଣର ବାହାରକୁ ଚାଲି ଯାଉନଥିଲେ । ସେ ଜଣେ ଅଦ୍ଭୁତ ବକ୍ତା ଥିଲେ, ଆପେ ସ୍ଥିର ଓ ଶାନ୍ତ ରହି ଶ୍ରୋତାମାନଙ୍କର ଚିତ୍ତକୁ ଉଦ୍‌ବେଳିତ କରି ଦେଉଥିଲେ । ଚରମ ମନ୍ତବ୍ୟଯୁକ୍ତ ତାଙ୍କର କୌଣସି ଏକ ଅଗ୍ନିମୟ ବକ୍ତୃତା ବିଷୟରେ ମୁଁ ତାଙ୍କ ସହିତ କେତେ ପରିହାସ ନ କରିଛି । ମାତ୍ର ସେ ସର୍ବଦା ପୂର୍ଣ୍ଣ ଭାବରେ ନିଷ୍ଠାଯୁକ୍ତ ରହିଥିଲେ, ଏବଂ କେମ୍ବ୍ରିଜ୍‌ରୁ ତାଲିମ ପାଇଥିବାରୁ ଓ ହାଇଡ୍ ପାର୍କର ପୂର୍ଣ୍ଣ ସ୍ୱାଧୀନତାଯୁକ୍ତ ଭାଷଣଗୁଡ଼ିକ ସହିତ ସୁପରିଚିତ ହୋଇଥିବାରୁ ମୁଁ ଭାବୁଛି, ସେ ବେଳେବେଳେ, ଠିକ୍ ତାଙ୍କରି ଭଳି ସମାନ ଉତ୍ସାହରେ ସେମାନଙ୍କର ପ୍ରିୟ ପ୍ରଦେଶ ବଙ୍ଗଳାର ରାଜନୀତିକ ମୁକ୍ତି ଇଚ୍ଛା କରୁଥିବା ତରୁଣମାନଙ୍କର ହୃଦୟରେ ତାଙ୍କର ବକ୍ତୃତାଗୁଡ଼ିକ ପ୍ରକୃତରେ ଯେଉଁଭଳି କ୍ରିୟା କରୁଥିଲା, ସେ ସେହି କଥାଟିକୁ ମୋଟେ ବୁଝିପାରୁ ନଥିଲେ । ତାଙ୍କର ବକ୍ତୃତା ଦେବାର ପ୍ରଣାଳୀଟିରେ ନିହିତ ହୋଇ ରହିଥିବା ବିପଦ ବିଷୟରେ ମୁଁ ତାଙ୍କ ସହିତ ଅନେକ ସମୟରେ କଥାବାର୍ତ୍ତା ହୋଇଛି, ମାତ୍ର ସେ ସର୍ବଦା ଦାବି କରୁଥିଲେ ଯେ ନିଜର ଦେଶବାସୀଙ୍କୁ ସେ ମୋ ଠାରୁ ଅଧିକ ଭଲ ଭାବରେ ଜାଣିଛନ୍ତି । ମାତ୍ର, ଏହା କେତେଦୂର ସତ କେଜାଣି ? ପ୍ରକୃତ ଉତ୍ସାହର ସହିତ ଦେଖୁଥିବା

ଦେଖଣାହାରୀମାନେ ହିଁ ଅଧିକାଂଶ ସମୟରେ ସ୍ୱୟଂ ଅଭିନେତାମାନଙ୍କ ଅପେକ୍ଷା ଅନେକ ଅଧିକ ଦେଖିବାକୁ ସମର୍ଥ ହୋଇଥାନ୍ତି ଏବଂ, ଯେତେବେଳେ ମୁଁ (ମୁଁ ସେତେବେଳେ ବେଳେବେଳେ ତାହା କରୁଥିଲି,) କଲେଜର ଛାତ୍ରମାନଙ୍କ ସଭାରେ କୌଣସି ଭାଷଣ ଦେଉଥିଲି, ସେତେବେଳେ ସେମାନଙ୍କର ଉତ୍ସୁକ ଓ ତରୁଣ ମୁଖମଣ୍ଡଳକୁ ଅନାଇ, ଅତ୍ୟନ୍ତ ସ୍ପଷ୍ଟ ଓ ବିଶେଷତାଯୁକ୍ତ ଭାବରେ ଆପଣାର ପ୍ରତିକ୍ରିୟାକୁ ବ୍ୟକ୍ତ କରୁଥିବା ମୁଖଗୁଡ଼ିକୁ ଓ ଜଳୁଥିବା ଆଖିଗୁଡ଼ିକ ଆଡ଼କୁ ଅନାଇ ମୁଁ ସର୍ବଦା ଅନୁଭବ  କରୁଥିଲି ଯେ ସେମାନଙ୍କ ଭିତରେ ଅବଶ୍ୟ ଉତ୍ତମ ଉପାଦାନ ରହିଛି, ଯାହା ଭିତରେ ସତ୍ୟ ନିମନ୍ତେ ଏକ କ୍ଷୁଧା ମଧ୍ୟ ରହିଛି, ଯାହାକି ବିଭିନ୍ନ ବିଷୟ ସମ୍ବନ୍ଧରେ କେବଳ ବାଗ୍ମିତା ହିଁ ଲୋଡ଼ୁନାହିଁ, କେବଳ ରାଜନୀତିକ ଏକଦେଶଦର୍ଶୀ କଥାଗୁଡ଼ାକୁ ଶୁଣିବାକୁ ମୋଟେ ଇଚ୍ଛା କରୁନାହିଁ ।''

କଲିକତା କର୍ପୋରେସନ୍‌ରେ ଦୀର୍ଘ ସମୟ (1925-31) ଲାଗି ମେୟର୍ ପଦରେ ରହି ଏବଂ ବଙ୍ଗ ଲେଜିସ୍‌ଲେଟିଭ୍ କାଉନ୍ସିଲ୍‌ରେ ମଧ ସଦସ୍ୟ ରହି ଯତୀନ୍ଦ୍ରମୋହନ ଜନଗଣଙ୍କର କଲ୍ୟାଣ ସହିତ ସମ୍ବନ୍ଧ ରଖୁଥିବା ଯାବତୀୟ  ଯଥାର୍ଥ ପ୍ରସଙ୍ଗ, ସାମାଜିକ ତଥା ନୈତିକ ଉନ୍ନୟନ, ନିଜ ଜୀବନର ଏକମାତ୍ର ଉଚ୍ଚାକାଙ୍କ୍ଷାରେ ପରିଣତ କରି ରଖିଥିବା ବିଦେଶୀ ଶାସନରୁ ଜାତିର ମୁକ୍ତିଲାଗି ଅନୁକୂଳ ଯାବତୀୟ ବିଷୟରେ ସର୍ବଦା ବିଜେତାର ହିଁ ଭୂମିକା ଗ୍ରହଣ କରିଥିଲେ ଏବଂ ଆପଣାର ଏହି କର୍ତ୍ତବ୍ୟଟିକୁ ପୂରଣ କରିବାର କ୍ଷେତ୍ରରେ ଏକାଧିକ ଅବସରରେ ସରକାରୀ ଅଥବା ମନୋନୀତ ସଦସ୍ୟମାନଙ୍କର ବିଶେଷତଃ ଇଉରୋପୀୟ ମାନଙ୍କର ବିରୋଧ ଅଥବା ଉକ୍ତିଗୁଡ଼ିକ ଉପରେ ତାଙ୍କୁ କଠୋର ଟିପ୍ପଣୀମାନ କରିବାକୁ ପଡୁଥିଲା ସତ, ମାତ୍ର କାଉନ୍ସିଲ୍ କକ୍ଷର ବାହାରେ ତାଙ୍କୁ ଏକାବେଳେକେ ଅନ୍ୟଜଣେ ବ୍ୟକ୍ତି ହୋଇ ରହିଥିବାର ଦେଖା ଯାଉଥିଲା । ସେତେବେଳେ ତାଙ୍କଠାରେ ଜଣେ ବନ୍ଧୁ ଓ ସହକର୍ମୀର ଆନ୍ତରିକତା ପୂର୍ଣ୍ଣ ହୋଇ ରହୁଥିଲା, ବିଶେଷକରି ଟେନିସ୍ ପଡ଼ିଆ ଏବଂ ଅନ୍ୟାନ୍ୟ ଖେଳ ପଡ଼ିଆରେ ତଥା କ୍ଲବ୍‌ରେ ଏବଂ ସାମାଜିକ କିମ୍ବା ସାଂସ୍କୃତିକ ଅନୁଷ୍ଠାନ ମାନଙ୍କରେ ତାଙ୍କୁ ସଂପୂର୍ଣ୍ଣ ସେହିପରି ଭାବରେ ହିଁ ଦେଖିବାକୁ ମିଳୁଥିଲା । ବେଳେବେଳେ ରାଜନୀତିକ ମତଭେଦ ଦ୍ୱାରା ପ୍ରେରିତ ହୋଇ ତାଙ୍କର ପୂର୍ବତନ ବନ୍ଧୁ ବା ସହକର୍ମୀମାନେ ତାଙ୍କୁ ଲକ୍ଷ୍ୟକରି ଅତ୍ୟନ୍ତ କର୍କଶ ସମାଲୋଚନା ଦ୍ୱାରା ତାଙ୍କୁ ଆକ୍ରମଣ କରୁଥିଲେ, ମାତ୍ର ସେ ସବୁକ୍ଷେତ୍ରରେ ଶାନ୍ତ ଏବଂ ଅବିଚଳିତ ହୋଇ ରହୁଥିଲେ ଓ ଆପଣାର ପ୍ରତିଦ୍ୱନ୍ଦ୍ୱୀ ତଥା ସମାଲୋଚକମାନଙ୍କ ମନରେ ଆଘାତ ଦେଲାଭଳି ପଦେ କଥା ମଧ ଉଚ୍ଚାରଣ କରୁନଥିଲେ । ଏହିପରି ଅନେକ ଅବସରରେ ତାଙ୍କୁ ନିଜର ପାଇପଟିକୁ ହାତରେ ଧରି ଧୂମପାନ କରୁଥିବାର ଅଥବା ଆପଣାର ଚଷମାଟିକୁ ସଜାଡ଼ି ଦେଉଥିବାର ଦେଖା ଯାଉଥିଲା ।

ସେ ଜୀବନରେ ଜଣେ କ୍ରୀଡ଼ାବିତ୍ ଥିଲେ ବୋଲି ତାହା କରିପାରୁଥିଲେ । ଯାବତୀୟ କ୍ଷେତ୍ରରେ ତାଙ୍କର ସବୁକିଛି କାର୍ଯ୍ୟକଳାପରେ କେଉଁଠି ହେଲେ ଏତେଟିକିଏ ମଇଳା ନଥିଲା, ସେ କାହାକୁ ହେଲେ ''ଅପଦସ୍ଥ କରି ଦେଲାଭଳି'' ଆଦୌ କୌଣସି ଆଘାତ କରୁନଥିଲେ । ତାଙ୍କ ସମ୍ବନ୍ଧରେ ଯଥାର୍ଥରେ ଏପରି କୁହାଯାଉଥିଲା ଯେ, ତାଙ୍କର ଯେଉଁ ଜିହ୍ୱା ରାଜନୀତିକ କାରଣରୁ ଅଗ୍ନିମୟ ଶବ୍ଦଗୁଡ଼ିକର ଉଦ୍‌ଗାର କରୁଥିଲା, ତାହା ଅନ୍ୟାନ୍ୟ ମୁହୂର୍ତ୍ତ ଗୁଡ଼ିକରେ ବଡ଼ ଜୀବନ୍ତ ଭାବରେ ଭାବମୟ ହୋଇ ରହିଥିଲା, ଶ୍ରଦ୍ଧା ଏବଂ ସୁଧାରେ ଶାନ୍ତ ସଙ୍ଗଭାବନା ଏବଂ ସାହଚର୍ଯ୍ୟରେ ପୂର୍ଣ୍ଣ ହୋଇ ରହିଥିଲା ।

ଏଥିରେ କୌଣସି ସନ୍ଦେହ ନାହିଁ ଯେ, ସାଧାରଣ ଲୋକମାନଙ୍କର ସ୍ତରରୁ ସିଏ ଅନେକ ଅଧିକ ଉଚ୍ଚତର ଥିଲେ । ତାଙ୍କର ସ୍ୱଭାବରେ ପ୍ରଦର୍ଶନପ୍ରିୟତାର ଲେଶମାତ୍ର ହିଁ ନଥିଲା । ବାହ୍ୟ ଆଚରଣ କ୍ଷେତ୍ରରେ ସେ କଦାପି କୌଣସି ନିଷେଧାତ୍ମକତାର ସୂଚନା ଦେଉନଥିଲେ, କୌଣସି କୃପଣତା ଦେଖାଉ ନଥିଲେ ଏବଂ ଏପରିକି, ଅତୀବ ଦୁଃଖର ଗମ୍ଭୀର ମୁହୂର୍ତ୍ତଗୁଡ଼ିକରେ ମଧ୍ୟ ଯାବତୀୟ ମନୁଷ୍ୟ ଓ ପ୍ରସଙ୍ଗଗୁଡ଼ିକ ପ୍ରତି ତାଙ୍କର ବ୍ୟବହାରରେ ମଧୁର ମାନବୀୟ ଭାବମୟତାର ଏକ ଉଷ୍ମ ସ୍ରୋତ ସର୍ବପ୍ରଧାନ ହୋଇ ରହିଥିଲା ।

## କଳା ଓ ସଂସ୍କୃତିପ୍ରେମୀ

ଯତୀନ୍ଦ୍ରମୋହନ କଳା ଓ ସଂସ୍କୃତି ପ୍ରତି ଅତ୍ୟନ୍ତ ଶ୍ରଦ୍ଧାବାନ୍ ଥିଲେ ଏବଂ ସେଗୁଡ଼ିକର ପୃଷ୍ଠପୋଷକତା କରୁଥିଲେ । ସେତେବେଳେ ସିନେମା ଏତେ ଅଧିକ ପରିମାଣରେ ଲୋକପ୍ରିୟ ହୋଇନଥିଲା ସତ, ମାତ୍ର ସେ ବେଳେବେଳେ ଥିଏଟର ଏବଂ ସିନେମା ମଧ୍ୟ ଦେଖି ଯାଉଥିଲେ । ସେତେବେଳର ପ୍ରମୁଖ ନାଟ୍ୟନିର୍ମାତା ଏବଂ ଲେଖକମାନଙ୍କ ମଧ୍ୟରେ ସେ ଅପରେଶ ମୁଖୋପାଧ୍ୟାୟ ଏବଂ ଅମୃତଲାଲ ବସୁଙ୍କୁ ବେଶ୍ ଭଲକରି ଜାଣିଥିଲେ । ଦେଶବନ୍ଧୁ ଚିତ୍ତରଞ୍ଜନ ଏକଦା ଏକ ''ଜାତୀୟ ଥିଏଟର'' ପ୍ରତିଷ୍ଠା କରିବାର ଯେଉଁ କଳ୍ପନା କରିଥିଲେ, ସେ ବିଷୟରେ ଯତୀନ୍ଦ୍ରମୋହନ ଶ୍ରୀ ବସୁଙ୍କ ସହିତ ଆଲୋଚନା କରିଥିବାର ପ୍ରମାଣ ମିଳୁଛି । ସିନେମା କ୍ଷେତ୍ରରେ ମଧ୍ୟ ଦେଶପ୍ରିୟ ଭାରତୀୟ ଚଳଚ୍ଚିତ୍ର-ଶିଳ୍ପର ବିକାଶ ଲାଗି ପୃଷ୍ଠପୋଷକତା କରିଥିଲେ । ଥିଏଟର ପରି ସିନେମାର ମଧ୍ୟ ଏକ ବୃହତ୍ ଭବିଷ୍ୟ ରହିଛି ବୋଲି ସେ ବିଶ୍ୱାସ କରୁଥିଲେ ।

କଲିକତାର ମେୟର୍ ହିସାବରେ ସେନଗୁପ୍ତ ବ୍ରିଟିଶ୍ ଡୋମିନିଅନ୍ ଫିଲ୍ମସ୍ ଲିମିଟେଡ୍‌ର ନୂତନ ଚଳଚ୍ଚିତ୍ର ଷ୍ଟୁଡ଼ିଓର ଉଦ୍‌ଘାଟନ ଉତ୍ସବରେ ପୁରୋଧା ହୋଇଥିଲେ (୧୨୨୪) । ଏହି ସଂସ୍ଥା ପ୍ରଖ୍ୟାତ ଧୀରେନ୍ ଗାଙ୍ଗୁଲି (ଅଧିକ ପରିମାଣରେ ଡ଼ି. ଜି. ବୋଲି ପରିଚିତ)ଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା । ଧୀରେନ୍ ଗାଙ୍ଗୁଲି ଭାରତୀୟ ସିନେମା ଜଗତରେ ବରିଷ୍ଠ କୁଳବୃଦ୍ଧ ରୂପେ ପରିଚିତ ହୋଇ ରହିଛନ୍ତି । (ଡ଼ି. ଜି.ଙ୍କ ସହିତ ଏକ ସାକ୍ଷାତକାର କରିବା ଲାଗି ଏହି ଲେଖକଙ୍କୁ ଏକ ସୁଯୋଗ ମିଳିଥିଲା । ସେତେବେଳେ ତାଙ୍କୁ ୪୬ ବର୍ଷ ବୟସ ହୋଇଥିଲା)

## ସମାଜ ଓ ସଂସ୍କୃତି କ୍ଷେତ୍ରରେ ସେନଗୁପ୍ତଙ୍କର କୃତି

ଯତୀନ୍ଦ୍ରମୋହନ ଯେ କେବଳ ଜଣେ ରାଜନୀତିକ ବ୍ୟକ୍ତିତ୍ୱ ଥିଲେ, ସେକଥା ଆଦୌ ନୁହେଁ । ତାଙ୍କର ଏକ ଉଚ୍ଚବିକଶିତ ସାଂସ୍କୃତିକ ଏବଂ ଆଧ୍ୟାତ୍ମିକ ପୃଷ୍ଠଭୂମି ରହିଥିଲା, ଏକ ଦୃଷ୍ଟିକୋଣ ମଧ୍ୟ ରହିଥିଲା ।

ଜଣେ ପ୍ରଧାନ ଲେଖକ ଏବଂ ସମାଲୋଚକ ଭବାନୀ ମୁଖୋପାଧ୍ୟାୟଙ୍କ କଥାରେ କହିଲେ (ସେତେବେଳେ ଭଏ ମଧ୍ୟ କଳା ଏବଂ ସାହିତ୍ୟର କ୍ଷେତ୍ରରେ ଜଣେ ଅତୀବ ଉତ୍ସାହୀ ବ୍ୟକ୍ତି ଥିଲେ), ଥରେ କଲିକତା ଇଉନିଭର୍ସିଟି ଇନ୍‌ଷ୍ଟିଚିଉଟ୍‌ରେ ଅନୁଷ୍ଠିତ ହେଉଥିବା ଗୋଟିଏ ସାଂସ୍କୃତିକ କାର୍ଯ୍ୟକ୍ରମରେ ସେ ନିଜେ ଉପସ୍ଥିତ ଥିଲେ । ସେଠାରେ ରବୀନ୍ଦ୍ରନାଥ ମଧ୍ୟ ଉପସ୍ଥିତ ଥିଲେ ଏବଂ ଆପଣାର କେତୋଟି ନିର୍ବାଚିତ କବିତାର ଆବୃତ୍ତି କରିଥିଲେ । ସେଠାରେ ସଂଗୀତ ତଥା ନୃତ୍ୟର ମଧ୍ୟ କାର୍ଯ୍ୟକ୍ରମ ରହିଥିଲା । କଲିକତାର ତତ୍କାଳୀନ ମେୟର୍ ଯତୀନ୍ଦ୍ରମୋହନ ସେଦିନ ଅନୁଷ୍ଠାନର

ସମ୍ମାନିତ ଅତିଥିରୂପେ ଆସୁଥିଲେ । ମାତ୍ର, ଅନ୍ୟତ୍ର ଏକ ସାଧାରଣ କାର୍ଯ୍ୟକ୍ରମରେ ରହି ଯାଇଥିବାରୁ ସେ ବିଳମ୍ବରେ ଆସିଲେ । ସେ ଆସିବା ବେଳକୁ ପ୍ରାୟ ମଧ୍ୟାହ୍ନରର ସମୟ ହୋଇ ଯାଇଥିଲା । ରବୀନ୍ଦ୍ରନାଥ ଠିକ୍ ସେତିକି ବେଳକୁ ଆପଣାର ଆବୃତ୍ତି ସମାପ୍ତ କରିଥାନ୍ତି । ତାହାହିଁ ସେଦିନ ସନ୍ଧ୍ୟାର ସର୍ବୋତ୍ତମ କାର୍ଯ୍ୟକ୍ରମ ଥିଲା । ଯତୀନ୍ଦ୍ରମୋହନଙ୍କର ମନର ଅବସ୍ଥା ସେତେବେଳେ ଭାରି ଅସ୍ୱସ୍ତିକର ଅବସ୍ଥାରେ ରହିଥିଲା । ତଥାପି ଆଉଥରେ ନିଜର କବିତା ଆବୃତ୍ତି କରିବା ଲାଗି ସେ କବିଙ୍କୁ ଲିଖିତ ଭାବରେ ଅନୁରୋଧ କରିଥିଲେ । କବି ମୁରୁକି ହସି ପୁନର୍ବାର ଠିଆ ହେଲେ । କକ୍ଷରେ ପୂର୍ଣ୍ଣ ନୀରବତା ବିରାଜମାନ କରୁଥାଏ । ଏକ ଅତ୍ୟନ୍ତ ଅନୁପ୍ରେରଣାଯୁକ୍ତ କଣ୍ଠରେ କବି ''ଯଦିଓ ସନ୍ଧ୍ୟା ଆସିଛେ ମନ୍ଦ ମନ୍ଥରେ'' କବିତାଟିର ପୁନରାବୃତ୍ତି କଲେ । ଗୁରୁଦେବ ରବୀନ୍ଦ୍ରନାଥ ଏବଂ ମେୟର ଯତୀନ୍ଦ୍ର ମୋହନ ସେଦିନ ସେହି ଅନୁଷ୍ଠାନରେ ଯେତେବେଳେ ଏକ ଅପୂର୍ବ ଆନନ୍ଦର ପରିବେଶ ମଧ୍ୟରେ ପରସ୍ପରକୁ ଭେଟିଥିଲେ, ସେହି ମୁହୂର୍ତ୍ତଟି ହିଁ କଲିକତାର ସାଂସ୍କୃତିକ ଜୀବନରେ ଗୋଟିଏ ଅତୀବ ସ୍ମରଣୀୟ କ୍ଷଣରୂପେ ଲିପିବଦ୍ଧ ହୋଇ ରହିଲା ।

ଯତୀନ୍ଦ୍ର ମୋହନଙ୍କର ବିଶିଷ୍ଟତାର ପରିଚୟ ମିଳିଥିବା ଆଉଗୋଟିଏ ଘଟଣା ମଧ୍ୟ ଏହି ଲେଖକର ମନେ ଅଛି । ଜଣେ ସ୍ନାତକୋତ୍ତର ଶ୍ରେଣୀର ଛାତ୍ର ହିସାବରେ ମୁଁ ସେତେବେଳେ (1926-28) କଲିକତାର ହରିସନ ରୋଡ୍ ଏବଂ କଲେଜ ଷ୍ଟ୍ରୀଟ୍‌ର ଛକରେ ଥିବା ୱାଇ. ଏମ୍. ସି. ଏ. ଛାତ୍ରାବାସରେ ବାସ କରୁଥାଏ । ସେତେବେଳେ ଆମର କେତୋଟି ଲୋକପ୍ରିୟ ବିଶେଷ ଅନୁଷ୍ଠାନ କରାଯାଉଥାଏ, ତାହାକୁ ''ଆପ୍ପର ଡ଼ିନର୍ ଥାର୍ଟି କ୍ଲବ୍'' ବୋଲି ନାମିତ କରାଯାଇଥାଏ । ସେହି କ୍ଲବ୍‌ର ଏକ ଅବସରରେ ଥରେ କଲିକତାର ବିଶପ୍ ଭାରତବର୍ଷର ମେଟ୍ରୋପଲିଟାନ୍ ଏବଂ କଲିକତାର ମେୟର ଯତୀନ୍ଦ୍ରମୋହନ ସେନଗୁପ୍ତ ସମ୍ମାନିତ ଅତିଥିରୂପେ ଉପସ୍ଥିତ ରହିଥିଲେ ।

ଏକ ସଂକ୍ଷିପ୍ତ ଭୋଜନ-ପରବର୍ତ୍ତୀ ଭାଷଣରେ ସେଦିନ ଶ୍ରୀଯୁକ୍ତ ସେନଗୁପ୍ତ ମାତୃଭୂମିର ସ୍ୱାଧୀନତାପ୍ରାପ୍ତି ଅଭିମୁଖରେ ପରିଚାଳିତ କରି ନେଉଥିବା ଏକ ଜାତୀୟତାବାଦୀ ଭାବନାର ଅଭିବୃଦ୍ଧି ନିମନ୍ତେ ଯୁବକ ସମାଜ ଆପଣାର ସୃଜନାତ୍ମକ ନାନା ସାମର୍ଥ୍ୟ ତଥା ଦେଶପ୍ରେମର ଆକାଙ୍କ୍ଷାକୁ ବିକଶିତ କରିବାଲାଗି ଅତ୍ୟନ୍ତ ଜୋର୍ ଦେଇ କହିଥିଲେ । ଏକ ଭାବନାମଗ୍ନ ମାନସସ୍ଥିତିରେ ସେନଗୁପ୍ତ କଥା କହୁଥାନ୍ତି । ଭାରତବର୍ଷର ମେଟ୍ରୋପଲିଟାନ୍ ଯେ ସେଦିନ ରାତ୍ରିରେ ସେଠାରେ ଉପସ୍ଥିତ ରହିଥିଲେ, ତାହାର ତାତ୍ପର୍ଯ୍ୟ ବିଷୟରେ କହିବାକୁ ସେନ୍‌ଗୁପ୍ତ କହିଥିଲେ ଯେ, ଦେଶପ୍ରୀତି ରହିଥିବା ପ୍ରେମକୁ ଈଶ୍ୱର ତଥା ମାନବଜାତି ପ୍ରତି ରହିଥିବା ପ୍ରେମ ସହିତ ସମତୁଲ କରି ବିଚାର କରାଯାଇ ପାରିବ ଏବଂ ଏହି କ୍ଷେତ୍ରରେ, ବିବେକକୁ ହିଁ ଅସଲ ମାନଦଣ୍ଡ ହୋଇ ରହିବାକୁ ପଡ଼ିବ । ସେ ଆମେରିକାର କବି ଏବଂ ଦାର୍ଶନିକ ଏମରସନ୍‌ଙ୍କର ନଜିର ଦେଇଥିଲେ । ଏମରସନ୍ ବିଶ୍ୱାସ କରୁଥିଲେ ଯେ, ''ଆଧ୍ୟାତ୍ମିକ କ୍ଷେତ୍ରର ସକଳ ବ୍ୟାପାରରେ ବିବେକ ହେଉଛି ସର୍ବୋଚ୍ଚ ବିଚାରକାରୀ'' ଏବଂ କହୁଥିଲେ ଯେ ଅନୁଷ୍ଠାନ ହେଉଛି ଭଗବତ୍-ମାର୍ଗ ପ୍ରଦର୍ଶନର ଏକ ସାମଗ୍ରୀ ଏବଂ ଆମକୁ ତାହାର ଅନୁସରଣ କରିବାକୁ ପଡ଼ିବ । ତରୁଣ ବଂଶଧରମାନଙ୍କ ଲାଗି ମେଟ୍ରୋପଲିଟାନ୍ ଭଗବତ୍-ଆଶୀର୍ବାଦର ଆବାହନ କରିଥିଲେ ।

ତତ୍କାଳୀନ କଲିକତାର ଦୁଇ ପ୍ରଖ୍ୟାତତମ ନିବାସୀଙ୍କର ଉକ୍ତିକୁ ତରୁଣ ଶ୍ରୋତାମଣ୍ଡଳୀ ଏକ କରତାଳି ଦେଇ ସ୍ୱାଗତ ଜଣାଇଥିଲେ ।

**ଅକ୍ଲାନ୍ତ ସେବାକାର୍ଯ୍ୟ**

ବିଭିନ୍ନ ସ୍ଥାନରେ ପ୍ରାକୃତିକ ବିପର୍ଯ୍ୟୟ ଦ୍ୱାରା ଘଟୁଥିବା ମାନବୀୟ ଦୁଃଖଭୋଗର ଉପଶମ କରିବା ଯତୀନ୍ଦ୍ରମୋହନଙ୍କର ସାବେଦନାମୟ ଅନ୍ତରକୁ ଅତ୍ୟନ୍ତ ଆକର୍ଷଣ କରୁଥିଲା ଏବଂ ସେ ଯଥାସମ୍ଭବ ସେହିସବୁ ଅବସରରେ ସେବାକାର୍ଯ୍ୟ କରିବାଲାଗି ବାହାରି ପଡୁଥିଲେ ।

1923 ମସିହାରେ ଦକ୍ଷିଣ ଚିଟାଗଙ୍ଗର ଏକ ବ୍ୟାପକ ଅଞ୍ଚଳ, ବିଶେଷକରି କକ୍ସବଜାର ସବଡ଼ିଭିଜନ୍ ଏକ ପ୍ରବଳ ଝଡ଼ଦ୍ୱାରା ଅତିମାତ୍ରାରେ କ୍ଷତିଗ୍ରସ୍ତ ହୋଇ ପଡ଼ିଥିଲା । ମଇ ମାସରେ ସେତେବେଳେ ମୌସୁମୀ ବୃଷ୍ଟିପାତ ଆରମ୍ଭ ହୋଇ ନଥିଲା । ଝଡ଼ ପରେପରେ ପ୍ରବଳ ବର୍ଷା ହେଲା, ସମୁଦ୍ର ବିକ୍ଷୁବ୍ଧ ହୋଇ ଉଠିଲା । ହଜାର ହଜାର ଲୋକ ଗୃହ ହରାଇଥିଲେ, ଆଶ୍ରୟହୀନ ହେଲେ । ଅନେକ ଲୋକ ମୃତ୍ୟୁମୁଖରେ ପତିତ ହୋଇଥିଲେ ।

ଚିଟାଗଙ୍ଗର ଜଣେ ପ୍ରମୁଖ କଂଗ୍ରେସସଭ୍ୟ ବରଦା ପ୍ରସାଦ ନନ୍ଦୀ କଲିକତାରେ ଥିବା ଯତୀନ୍ଦ୍ର ମୋହନ ଏବଂ ଅଧ୍ୟାପକ ନୃପେନ୍ଦ୍ର ବାନାର୍ଜୀଙ୍କ ପାଖକୁ ଏକ ଜରୁରୀ ତାରବାର୍ତ୍ତା ପଠାଇଥିଲେ ଏବଂ ଦୁର୍ଗତମାନଙ୍କର ସେବାକାର୍ଯ୍ୟରେ ସାହାଯ୍ୟ କରିବାଲାଗି ସେମାନଙ୍କୁ ଶୀଘ୍ର ଆସିବାପାଇଁ ଅନୁରୋଧ କରିଥିଲେ । ସେମାନେ ଆସି ପହଞ୍ଚିବାପରେ ସାହାଯ୍ୟ ପହଞ୍ଚାଇବା କାର୍ଯ୍ୟ ପୂର୍ଣ୍ଣ ଗତିରେ ଚାଲିଲା । ''ଆମେ ତିରିଶଜଣ ସଭ୍ୟଙ୍କୁ ନେଇ ଏକ ରିଲିଫ ଦଳ ଗଠନ କଲୁ । ସେଥିରେ ଯତୀନ୍ଦ୍ରମୋହନ ଏବଂ ନୃପେନ୍ ବାନର୍ଜୀ ନାୟକ ହୋଇ ରହିଲେ । ତା'ପରେ ଆମେ କକ୍ସବଜାର ହୋଇ ଟେଖ୍‌ନାଫ୍ ଯାତ୍ରା କରିଥିଲୁ । ଟେଖ୍‌ନାଫ୍ ଏବଂ ରମୁ ଯିବା ବାଟରେ ଲୋକମାନେ ବହୁସଂଖ୍ୟାରେ ସମବେତ ହୋଇ ସେନଗୁପ୍ତଙ୍କୁ ହାର୍ଦ୍ଦିକ ଅଭ୍ୟର୍ଥନା ଜଣାଇଥିଲେ ।

''ତା'ପରେ କେତେକ କଷ୍ଟ ସ୍ୱୀକାର କରି ଆମେ ସମସ୍ତେ ରମୁ ପହଞ୍ଚିଲୁ । ସେଠାରେ ଦେଶପ୍ରିୟଙ୍କୁ; ସ୍ୱାଗତ ଜଣାଇବା ସକାଶେ ସ୍ଥାନୀୟ ଲୋକମାନଙ୍କର ଏକ ବିରାଟ ସମାବେଶ ହୋଇଥିଲା ଓ ଏକ ଜନସମୁଦ୍ର ପରି ଦେଖା ଯାଉଥିଲା । କେତେ ଲୋକ କୀର୍ତ୍ତନ କରୁଥିଲେ, ଢୋଲ ଓ ମୃଦଙ୍ଗ ପ୍ରଭୃତି ବଜାଉଥିଲେ । ସେହି ଜନତା ଭିତରେ ବାତ୍ୟାପ୍ରପୀଡ଼ିତ ଶହଶହ ଲୋକ ରହିଥିଲେ; ମନେ ହେଉଥିଲା, ସେନଗୁପ୍ତଙ୍କୁ ଆପଣାର ଗହଣରେ ପାଇ ସେମାନେ ସତେଯେପରି ବାତ୍ୟାଦ୍ୱାରା ସେମାନଙ୍କର ହୋଇଥିବା କ୍ଷତି ବିଷୟରେ ସବୁକିଛି ଭୁଲି ଯାଇଥିଲେ । କର୍ମୀମାନଙ୍କୁ ସାଙ୍ଗରେ ନେଇ ସେନଗୁପ୍ତ ସ୍ୱୟଂ ଗ୍ରାମବାସୀମାନଙ୍କର କ୍ଷତିଗ୍ରସ୍ତ ବାସଗୃହଗୁଡ଼ିକୁ ବୁଲି ଦେଖିଥିଲେ ଏବଂ ସାହାଯ୍ୟ ସାମଗ୍ରୀ ବିତରଣ କରିଥିଲେ ।

''ସହକର୍ମୀମାନଙ୍କ ସାହାଯ୍ୟରେ ସେନଗୁପ୍ତ ଆହୁରି ଆଗକୁ ଯାଇଥିଲେ ଏବଂ ନିଲାଠାରେ ଯାଇ ପହଞ୍ଚିଥିଲେ । ନିଲା ହେଉଛି କିଣାବିକାର ଗୋଟିଏ କେନ୍ଦ୍ର ଜାଗା ଏବଂ ସେଠାରେ ସ୍ଥାନୀୟ ବେପାରୀମାନେ ସେନଗୁପ୍ତଙ୍କୁ ହାର୍ଦ୍ଦିକ ସମ୍ବର୍ଦ୍ଧନା ଜଣାଇଥିଲେ ଓ ସାହାଯ୍ୟ ପାଣ୍ଠି ସକାଶେ ଦାନ ମଧ୍ୟ କରିଥିଲେ । ପରେ ସାହାଯ୍ୟକାରୀ ଦଳ ଟେଖ୍‌ନାଫଠାରେ ଯାଇ ପହଞ୍ଚିଥିଲେ । ସେଠାରେ ସ୍ଥାନୀୟ ବ୍ୟବସାୟୀ ଖେଜାଫୁ ଚୌଧୁରୀ ମଧ ପ୍ରଚୁର ପରିମାଣରେ ସାହାଯ୍ୟ ଦାନ କରିଥିଲେ ।

ସେହି ସ୍ଥାନଟି ଚିଟାଗଙ୍ଗ-ଆରାକାନ୍ ସୀମାରେ ଅବସ୍ଥିତ ହୋଇଥିବାରୁ ଆରାକାନ୍ (ବ୍ରହ୍ମଦେଶ)ର ଜଣେ ଧନୀ ବଙ୍ଗଳାଭାଷୀ ବ୍ୟକ୍ତି ସେନ୍‌ଗୁପ୍ତଙ୍କର ଆସିବା ସମ୍ବାଦ ପାଇ ସେଠାକୁ ତାଙ୍କ ପାଖକୁ ଆସିଥିଲେ । ସେ କୌଣସି ହତ୍ୟା-ମକଦ୍ଦମାରେ ସଂଶ୍ଲିଷ୍ଟ ହୋଇ ପଡ଼ିଥିଲେ, ତାଙ୍କ ପକ୍ଷରୁ ମକଦ୍ଦମା ଲଢ଼ିବା ପାଇଁ ସେ ବାରିଷ୍ଟର ସେନଗୁପ୍ତଙ୍କ ସାହାଯ୍ୟ ପ୍ରାର୍ଥନା କରିଥିଲେ ଏବଂ ପାରିଶ୍ରମିକ ରୂପେ

୪000 ଟଙ୍କା ଯାଚିଥିଲେ । ଅର୍ଥ ଉପାର୍ଜନ ସକାଶେ ପ୍ରପୀଡ଼ିତମାନଙ୍କର ସେବାକାର୍ଯ୍ୟ ଛାଡ଼ିଦେଇ ଓକିଲାତି କରିବାକୁ ଯିବାର ପ୍ରସ୍ତାବ ତାଙ୍କୁ ଆଦୌ ଗ୍ରହଣୀୟ ବୋଧ ହୋଇ ନଥିଲା ।*

**ଉତ୍ତର-ବଙ୍ଗରେ ବନ୍ୟା-ସାହାଯ୍ୟ**

1931 ମସିହା ଅଗଷ୍ଟମାସ । ଉତ୍ତର-ବଙ୍ଗରେ ବ୍ୟାପକ ବନ୍ୟା ଫଳରେ ପାବନା, ବୋଗରା, ରାଜସାହୀ ଓ ଜଲପାଇଗୁଡ଼ି ଜିଲ୍ଲାମାନ ଧ୍ୱସ୍ତବିଧ୍ୱସ୍ତ ହୋଇ ଯାଇଥିଲା । ତଦ୍ୱାରା ଏକ ବୃହତ୍ ଜନସଂଖ୍ୟା କ୍ଷତିଗ୍ରସ୍ତ ହୋଇଥିଲେ ଏବଂ ଦୁର୍ଗତ ଅବସ୍ଥାରେ ପଡ଼ିଥିଲେ । ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟଙ୍କ ଅଧ୍ୟକ୍ଷତାରେ ଏବଂ ପ୍ରମୁଖ ସମାଜସେବକ (ପ୍ରସିଦ୍ଧ ଗାନ୍ଧିବାଦୀ ନେତା) ସତୀଶ ଚନ୍ଦ୍ର ଦାସଗୁପ୍ତ ସମ୍ପାଦକ ଥାଇ କଲିକତାରେ ଗଠିତ ହୋଇଥିବା ସଙ୍କଟତାରଣ ସମିତିର ଆନୁକୂଲ୍ୟରେ ସଙ୍ଗେସଙ୍ଗେ ସେବାକାର୍ଯ୍ୟ ଆରମ୍ଭ ହୋଇ ଯାଇଥିଲା । ପ୍ରାଦେଶିକ କଂଗ୍ରେସ କମିଟି ତରଫରୁ ମଧ୍ୟ ଗୋଟିଏ ବନ୍ୟାସାହାଯ୍ୟ ପାଣ୍ଠି ଖୋଲା ଯାଇଥିଲା । ବନ୍ୟାପ୍ରପୀଡ଼ିତ ଅଞ୍ଚଳରେ ଦୁଇଟିଯାକ ସଂସ୍ଥା ତ୍ରାଣକାର୍ଯ୍ୟ କରିଥିଲେ । ରାମକୃଷ୍ଣ ମିଶନ ମଧ ଆପଣାର ସାହାଯ୍ୟ ତଥା ଉଦ୍ଧାରକାର୍ଯ୍ୟ ଆରମ୍ଭ କରି ଦେଇଥିଲା ।

ଏହି ଘୋର ବିପଦ ସମୟରେ ଯତୀନ୍ଦ୍ରମୋହନ ଆପଣାର ଦାୟିତ୍ୱ ସମ୍ବନ୍ଧରେ ପୂର୍ଣ୍ଣ ସଚେତନ ରହିଥିଲେ । ସବୁଠାରୁ ଅଧିକ ପରିମାଣରେ କ୍ଷତିଗ୍ରସ୍ତ ହୋଇଥିବା ଅଞ୍ଚଳଗୁଡ଼ିକୁ କେବେ ଏବଂ କିପରି ଯିବା ସମ୍ଭବ ହେବ, ସେ ସେହିକଥା ଚିନ୍ତା କରୁଥିଲେ ଏବଂ ଅପେକ୍ଷା କରୁଥିଲେ । ଅଳ୍ପଦିନ ଭିତରେ ଅବଶ୍ୟ ପାବନା, ବୋଗରା ଓ ରାଜସାହୀରୁ ସ୍ଥାନୀୟ ପ୍ରତିନିଧିମାନେ ଆସି ପହଞ୍ଚି ଯାଇଥିଲେ । ପାବନାର ଜଣେ ସୁପରିଚିତ ଅଧିବାସୀ ଜ୍ଞାନରଞ୍ଜନ ସରକାର ସେନଗୁପ୍ତଙ୍କୁ ସର୍ବପ୍ରଥମେ ତାଙ୍କ ଜିଲ୍ଲାକୁ ନେଇଯିବା ଲାଗି ସ୍ୱୟଂ ଆଗଭର ହୋଇ ବାହାରିଲେ । ସେ ପ୍ରଥମେ ପାବନାର ପ୍ରଭାସଚନ୍ଦ୍ର ଲାହିଡ଼ିଙ୍କ ପାଖକୁ ଏକ ତାରବାର୍ତ୍ତା ପଠାଇଥିଲେ । ଲାହିଡ଼ି, ସେନଗୁପ୍ତ ଏବଂ ତାଙ୍କର ଦଳକୁ ପାଛୋଟି ନେବା ସକାଶେ ଈଶ୍ୱରଡ଼ି ଷ୍ଟେସନ ପର୍ଯ୍ୟନ୍ତ ଆସିଥିଲେ । ତା'ପରେ ସେଠାରୁ ଯତୀନ୍ଦ୍ରମୋହନଙ୍କ ନେତୃତ୍ୱରେ ଗୋଟିଏ ବୃହତ୍ ସାହାଯ୍ୟକାରୀ ଦଳ କାର୍ଯ୍ୟ ଆରମ୍ଭ କରି ଅଗ୍ରସର ହୋଇ ଯାଇଥିଲା । ବାଟରେ ରେଳ ଓ ଜାହାଜରେ ଯାଉଥିବା ସମୟରେ ଯେତେଯେତେ ଷ୍ଟେସନ ଓ ଘାଟ ପହଞ୍ଚିଲା, ବନ୍ୟାପୀଡ଼ିତ ଅଞ୍ଚଳର ସର୍ବତ୍ର ହାର୍ଦ୍ଦିକ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ଚତୁର୍ଦ୍ଦିଗରେ ବନ୍ୟାଦୁର୍ଗତ ଲୋକମାନେ ବିକ୍ଷିପ୍ତ ହୋଇ ରହିଥିଲେ ଏବଂ ସେମାନଙ୍କ ପାଖରେ ସାହାଯ୍ୟ ସାମଗ୍ରୀମାନ ଆଣି ପହଞ୍ଚାଇ ଦିଆଗଲା । ସେମାନେ ବନୋଆରି ନଗର, ଗୋପାଳ ନଗର, ଡ଼େମ୍ରା, ରତାଡ଼ା, ଧୁଲିନେ ଏବଂ ପୋର୍ଜାନା ପ୍ରଭୃତି ବନ୍ୟଧ୍ୱସ୍ତ ଅଞ୍ଚଳ ପରିଦର୍ଶନ କରିଥିଲେ । ଉଙ୍ଗୁରାବେରା ଷ୍ଟିମର୍ ସର୍ଭିସ୍ ଦ୍ୱାରା ସେମାନେ ଏହିସବୁ ସ୍ଥାନକୁ ଯାଇଥିଲେ । ସାହାଯ୍ୟକାରୀ ଦଳ ଯେଉଁଠାରେ ଯାଇ ପହଞ୍ଚୁଥିଲେ, ଯତୀନ୍ଦ୍ରମୋହନଙ୍କୁ ଲୋକମାନେ "ଗାନ୍ଧିଭାଟ" ବୋଲି କହି ସ୍ୱାଗତ କରି ନେଉଥିଲେ । ସ୍ଥାନୀୟ ଲୋକମାନେ ହିଁ ତାଙ୍କଲାଗି ଏହି ଲୋକପ୍ରିୟ ବିଶେଷଣଟିକୁ ତିଆରି କରିଥିଲେ ଏବଂ ତଦ୍ୱାରା ଯତୀନ୍ଦ୍ରମୋହନଙ୍କ ପ୍ରତି ସେମାନଙ୍କର ରହିଥିବା ହାର୍ଦ୍ଦିକ ଶ୍ରଦ୍ଧା ଓ ସମ୍ମାନକୁ ପ୍ରକାଶ କରୁଥିଲେ । ସେତେବେଳେ ଯତୀନ୍ଦ୍ରମୋହନ ବଙ୍ଗଳାରେ ସବୁଠାରୁ ଅଧିକ ଜନପ୍ରିୟ କଂଗ୍ରେସନେତା ଥିଲେ ।

---

* 1977ରେ ତାଙ୍କର ମୃତ୍ୟୁ ପୂର୍ବରୁ ବରଦା ପ୍ରସାଦ ନନ୍ଦୀଙ୍କ ଦ୍ୱାରା ଏହି ଲେଖାକୁ ବିଶେଷ ଭାବରେ ପ୍ରଦତ୍ତ ସଂସ୍କରଣାତ୍ମକ ସୂଚନାରୁ ସଂଗୃହୀତ ।

ସମୟ ଏବଂ ସୁଯୋଗ ହେବା ମାତ୍ରକେ ଯତୀନ୍ଦ୍ରମୋହନ ବନ୍ୟାକ୍ଲିଷ୍ଟ ତଥା ସ୍ଥାନୀୟ ଲୋକମାନଙ୍କୁ ଉଦ୍‌ବୋଧନ ଦେଇ ଭାଷଣ ଦେଉଥିଲେ । ଅନେକ ସମୟରେ ତାଙ୍କର କଥାଗୁଡ଼ିକ ମଧ୍ୟରେ ଗଭୀର ସଂବେଦନା ଅନୁସିକ୍ତ ହୋଇ ରହିଥିଲା । ସେ କହୁଥିଲେ, ''ଆମ ଦେଶରେ ଆଜି ଲକ୍ଷ ଲକ୍ଷ ମନୁଷ୍ୟ ବନ୍ୟାରେ ମରୁଛନ୍ତି । ସେମାନେ ଅନାହାର ଭୋଗ କରୁଛନ୍ତି, ବାସଚ୍ୟୁତ ହେଉଛନ୍ତି, ସେମାନଙ୍କ ପାଖରେ ବସ୍ତ୍ର ନାହିଁ କି ଔଷଧ ନାହିଁ ଏବଂ ଦୁର୍ଗତି କ୍ରମେ ବୃଦ୍ଧି ପାଇବାରେ ଲାଗିଛି । ତଥାପି ଏହି ପ୍ରଳୟଙ୍କରୀ ବନ୍ୟାର ବଳହରଣକାରୀ ପରିଣାମଗୁଡ଼ିକ ସରକାର ମୋଟେ ସ୍ୱୀକାର କରୁନାହାନ୍ତି । ଏହି କ୍ଷେତ୍ରରେ ସେମାନେ କାଣି ଆଙ୍ଗୁଠିଟିଏ ମଧ୍ୟ ଉଠାଇ ନାହାନ୍ତି । ଏହା ହେଉଛି ବ୍ରିଟିଶ ଶାସନର ଏକ ଅତ୍ୟନ୍ତ ଦୁଃଖପୂର୍ଣ୍ଣ ଅଧ୍ୟାୟ ଏବଂ ସେହି ନିଷ୍ପେଷଣକାରୀ କୁଶାସନକୁ ସମାପ୍ତ କରିବାଲାଗି ଭାରତବର୍ଷର ପ୍ରତ୍ୟେକ ବ୍ୟକ୍ତି ଜାଗ୍ରତ ହୋଇ ଉଠିବା ଉଚିତ ।'' ବିଭିନ୍ନ ସଂସ୍ଥା ତରଫରୁ କରାଯାଉଥିବା ସାହାଯ୍ୟ କାର୍ଯ୍ୟକୁ ସେ ଖୁବ୍ ପ୍ରଶଂସା କରିଥିଲେ ।

ପାବନା ଜିଲ୍ଲାର ନିପଟ ଅଭ୍ୟନ୍ତର ଅଞ୍ଚଳରେ ପୋର୍‌ଜାନା ଠାରେ ହିଁ ଯତୀନ୍ଦ୍ରମୋହନ ଚିଟାଗଙ୍ଗରେ ହୋଇଥିବା ଜଘନ୍ୟ ଅତ୍ୟାଚାର ବିଷୟରେ ଜରୁରୀ ତାରବାର୍ତ୍ତାମାନ ପାଇଥିଲେ । ଚିଟାଗଙ୍ଗଠାରେ ପୋଲିସ୍ ଇନିସ୍‌ପେକ୍ଟର ଆସାନୁଲ୍ଲାଙ୍କର ହତ୍ୟାପରେ ସେଠାରେ ହିନ୍ଦୁମାନଙ୍କ ଉପରେ ହତ୍ୟାକାଣ୍ଡ, ଅଗ୍ନିସଂଚାର ଏବଂ ଆକ୍ରମଣ ପ୍ରଭୃତି ହେବାରେ ଲାଗିଥିଲା । ଦୁର୍ଗତମାନଙ୍କର ଜୀବନରକ୍ଷା ଲାଗି ସେଠାରେ ସେନଗୁପ୍ତ ଶୀଘ୍ର ଯାଇ ପହଞ୍ଚନ୍ତୁ ବୋଲି ପ୍ରାର୍ଥନା କରାଯାଇଥିଲା । ଏହି ଖବର ପାଇ ସେ ପ୍ରକୃତରେ ମର୍ମାହତ ହୋଇ ପଡ଼ିଲେ । ବନ୍ୟାକ୍ଲିଷ୍ଟ ଅଞ୍ଚଳରୁ ଦୁଃଖପୂର୍ଣ୍ଣ ଚିତ୍ତରେ ଯେ କୌଣସିମତେ ବିଦାୟ ନେଇ ସେ ଦୁଇଦିନ ମଧ୍ୟରେ କଲିକତାରେ ଆସି ପହଞ୍ଚିଲେ ଏବଂ ଯଥାଶୀଘ୍ର ଚିଟାଗଙ୍ଗ ଅଭିମୁଖେ ଯାତ୍ରା କଲେ ।

### ଯତୀନ୍ଦ୍ରମୋହନ ଓ ବଙ୍ଗଳାର ବିପ୍ଳବୀମାନେ

ସ୍ୱାଧୀନତା ଲାଗି ଶ୍ରଦ୍ଧା ଦୃଷ୍ଟିରୁ ଏବଂ ଦେଶର ମୁକ୍ତିସଂଗ୍ରାମରେ ଜଣେ ଜଣେ ପ୍ରବୀଣ ଯୋଦ୍ଧା ହିସାବରେ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ ଏବଂ ଦେଶପ୍ରିୟ ଯତୀନ୍ଦ୍ରମୋହନ ଗୋଟିଏ ଉପାଦାନରେ ଗଢ଼ା ହୋଇଥିଲେ । ଯଥାର୍ଥ ଭାବରେ ହେଉ ଅଥବା ଅଯଥାର୍ଥ ଭାବରେ ହେଉ ପଛକେ, ସମସ୍ତେ ବିଶ୍ୱାସ କରୁଥିଲେ ଯେ, ବଙ୍ଗଳାର ବିପ୍ଳବୀ ଆନ୍ଦୋଳନ (ସରକାରଙ୍କର କାଗଜପତ୍ରରେ ତାହାକୁ ''ସଂତ୍ରାସବାଦୀ'' ଆନ୍ଦୋଳନ ବୋଲି ଅଭିହିତ କରାଯାଉଥିଲା) ପ୍ରତି ଉଭୟଙ୍କର ସକ୍ରିୟ ସହାନୁଭୂତି ରହିଥିଲା ।

ସିରାଜଗଞ୍ଜ ସମ୍ମିଳନୀର ପ୍ରସ୍ତାବ ଏବଂ ରାଜନୀତିକ ବନ୍ଦୀ (ବିପ୍ଳବୀ) ମାନଙ୍କୁ ମୁକ୍ତି ଦେବାଲାଗି ନିଜର ମୃତ୍ୟୁ ପର୍ଯ୍ୟନ୍ତ ହିଁ ସେନଗୁପ୍ତଙ୍କର ଦୃଢ଼ ଦାବିର କଥାକୁ କଦାପି ଭୁଲି ହେବ ନାହିଁ । ଦୁଇଟି ଯାକରେ ତରୁଣ ବିପ୍ଳବୀମାନଙ୍କୁ ସରକାରଙ୍କ ସହିତ ଏକ ରାଜନୀତିକ ସମାଧାନ ସମ୍ଭବ କରିବା ଦୃଷ୍ଟିରୁ ହିଂସାତ୍ମକ କାର୍ଯ୍ୟକଳାପମାନ ବନ୍ଦ ରଖିବାଲାଗି ଆହ୍ୱାନ ଦିଆ ଯାଉଥିଲା ।

ରାଜନୀତିକ ଅଟକବନ୍ଦୀମାନଙ୍କ ବିଷୟରେ ବଙ୍ଗଳାର ଗଭର୍ଣ୍ଣର ସାର୍ ଷ୍ଟାନ୍‌ଲି ଜ୍ୟାକ୍‌ସନ୍ ଏକ ସମଗ୍ର ଶାନ୍ତିପୂର୍ଣ୍ଣ ଅଗ୍ରଗତି ଏବଂ ବିକାଶ ଯେପରି ସମ୍ଭବ ହୋଇପାରିବ, ସେଥିଲାଗି ଦେଶର ରାଜନୀତିକ ସ୍ଥିତିକୁ ଶାନ୍ତ ରଖିବାରେ ସାହାଯ୍ୟ କରିବା ନିମନ୍ତେ ଯତୀନ୍ଦ୍ରମୋହନଙ୍କର ସହଯୋଗ କାମନା କରିଥିଲେ (ଗାନ୍ଧି-ଇରୱଇନ୍ ଚୁକ୍ତିର ପରବର୍ତ୍ତୀ ସନ୍ଧି-ସମୟରେ) । ଉପସ୍ଥିତ ମୁହୂର୍ତ୍ତଟିର

ଆବଶ୍ୟକତା ସମ୍ବନ୍ଧରେ ଯତୀନ୍ଦ୍ରମୋହନ ଅଟକ ରହିଥିବା ତରୁଣମାନଙ୍କର ହୃଦ୍‌ବୋଧ କରାନ୍ତୁ ବୋଲି ତାଙ୍କୁ ଅନୁରୋଧ କରାଯାଇଥିଲା । ଏହି କାର୍ଯ୍ୟଟିକୁ ସମ୍ପାଦିତ କରିବା ଉଦ୍ଦେଶ୍ୟରେ ସେନଗୁପ୍ତ ହିଜଲି ଏବଂ ବକ୍ସା ଫୋର୍ଟ ଶିବିରଗୁଡ଼ିକୁ ପରିଦର୍ଶନ କରିଥିଲେ । ତାଙ୍କର ଶରୀର ଅସୁସ୍ଥତା ବୃଦ୍ଧି ପାଉଥିଲେ ମଧ୍ୟ ସେ ବହୁଦୂରବର୍ତ୍ତୀ ଦୁର୍ଗମ ହିମାଳୟ-ପାଦଦେଶରେ (ଭୁଟାନ ନିକଟରେ) ଅବସ୍ଥିତ ଥିବା ବକ୍ସା ଫୋର୍ଟ ଅଟକବନ୍ଦୀ-ଶିବିରକୁ ସକଳ ଶ୍ରମ ଓ ପ୍ରତିକୂଳତା ସତ୍ତ୍ୱେ ଯାତ୍ରା କରିଥିଲେ ଏବଂ ମନ ଖୋଲାଖୋଲି ଭାବରେ ବନ୍ଦୀମାନଙ୍କ ସହିତ ଆଲୋଚନା କରିଥିଲେ । ଏହି କଥାବାର୍ତ୍ତାରେ ବନ୍ଦୀମାନଙ୍କ ତରଫରୁ ଭୂପେନ୍ଦ୍ରନାଥ ଦତ୍ତ କଥାବାର୍ତ୍ତାରେ ଭାଗ ନେଇଥିଲେ । ଭାରପ୍ରାପ୍ତ ନିରାପତ୍ତା-କର୍ମଚାରୀମାନେ ଓ ରାଜନୀତିକ ଅଟକବନ୍ଦୀମାନେ ସେନଗୁପ୍ତଙ୍କର ହାର୍ଦ୍ଦିକ ସ୍ୱାଗତ କରିଥିଲେ । ଅଟକବନ୍ଦୀମାନଙ୍କୁ ଆପଣାର ମତ ସହିତ ରାଜି କରାଇବା ଲାଗି ସବୁମତେ ଉଦ୍ୟମ କରିଥିଲେ ମଧ୍ୟ ସେ ସେମାନଙ୍କର ମତକୁ ମଧ ଯଥେଷ୍ଟ ସହାନୁଭୂତି ସହିତ ବୁଝିଥିଲେ ।

ଏପରି ଜଣାଯାଉଛି ଯେ, ବ୍ରିଟିଶ ଶାସକମାନେ ସ୍ପଷ୍ଟତଃ ବିପ୍ଳବୀ ଦଳଗୁଡ଼ିକ ତରଫରୁ ଏକ ବୃହତ୍ ଆକ୍ରମଣ ହେବାର ଆଶଙ୍କାକରି ଅତୀବ ଭୀତ ହୋଇ ରହିଛନ୍ତି ବୋଲି କହି ଅନ୍ୟାନ୍ୟ ଅନେକ ବିଷୟ ମଧରେ ଯତୀନ୍ଦ୍ରମୋହନ କଥାବାର୍ତ୍ତା ଆରମ୍ଭ କରିଥିଲେ । ଭୂପେନ୍ ଗୁପ୍ତ ତାଙ୍କ ଆଗରେ ପ୍ରକାଶ କରିଥିଲେ ଯେ, ଅସ୍ତ୍ରାଗାର ଲୁଣ୍ଠନ ପରେ ଆତ୍ମଗୋପନ କରି ରହିଥିବା ସୂର୍ଯ୍ୟ ସେନ (ଚିଟାଗଙ୍ଗ ବିପ୍ଳବର ସର୍ବୋଚ୍ଚ ନେତା) ବିପ୍ଳବୀ ଆନ୍ଦୋଳନର ନେତା ଓ ପ୍ରଧାନତମ ବ୍ୟକ୍ତି ହୋଇଥିବାରୁ କେବଳ ସେଇ ସେମାନଙ୍କର କାର୍ଯ୍ୟକ୍ରମ "ବନ୍ଦ ହେଉ" ବୋଲି ଆଦେଶ ଦେଇପାରିବେ । "ତେଣୁ ସୂର୍ଯ୍ୟ ସେନଙ୍କୁ ବାହାରକୁ ଆସିବାର ଅନୁମତି ଦିଆଯିବା ଉଚିତ ଏବଂ ଯୁଗାନ୍ତର ଦଳର ଅନ୍ୟ ସାଥୀମାନଙ୍କୁ ଭେଟି ଆଲୋଚନା କରିବା ଉଚିତ ଏବଂ, ସେ ଯେପରି ନିରାପଦ ଭାବରେ ବାହାରକୁ ବାହାରି ପୁନର୍ବାର ଆପଣାର ଆଶ୍ରୟସ୍ଥାନକୁ ଫେରିଯାଇପାରିବେ, ସରକାର ସେଥିଲାଗି ସୁବିଧା କରିଦେବା ମଧ ଉଚିତ ।" ପ୍ରସ୍ତାବଟିର ଯୁକ୍ତିଯୁକ୍ତତାକୁ ସେନଗୁପ୍ତ ବେଶ୍ ବୁଝିପାରିଥିଲେ (ଭୂପେନ୍ ଦତ୍ତ ସେହିପରି କହିଛନ୍ତି) ଏବଂ ସେହି ପ୍ରସ୍ତାବଟିକୁ ସରକାରଙ୍କର ଗୋଚରକୁ ଆଣିଥିଲେ । ସରକାର ଆପଣାର ସମ୍ମତିକୁ ଲିଖିତ ଭାବରେ ଜଣାଇଦେବେ ବୋଲି ବିପ୍ଳବୀ ଦଳ ଦାବି କରିଥିଲେ । କୌଣସି କାରଣରୁ ଏହିସବୁ କଥାବାର୍ତ୍ତା ପଦାକୁ ଜଣାପଡ଼ି ଯାଇଥିଲା ଏବଂ ଗୋଟିଏ ଆଙ୍ଗ୍ଲୋଇଣ୍ଡିଆନ୍ ସଂବାଦପତ୍ର କ୍ରୁଦ୍ଧ ହୋଇ ଲେଖିଲା; "ସଂତ୍ରାସବାଦୀମାନଙ୍କ ସହିତ ଆଦୌ କୌଣସି କଥାବାର୍ତ୍ତା ହୋଇପାରିବ ନାହିଁ ।" ଇଂଲଣ୍ଡ ସରକାର ମୋଟାମୋଟି ସେହି ମତଟିକୁ ସମର୍ଥନ କରିଥିଲେ । ଏଣୁ କଥାବାର୍ତ୍ତାଗୁଡ଼ିକ ଦ୍ୱାରା କୌଣସି ଫଳ ହେଲା ନାହିଁ । ★

ନିମ୍ନୋକ୍ତ ବିଷୟଟି ସେନଗୁପ୍ତଙ୍କ ବିରୋଧରେ ପୋଲିସ୍‌ଦ୍ୱାରା ପ୍ରଦତ୍ତ ଆଉଗୋଟିଏ ତଥ୍ୟରୂପେ ବ୍ୟବହୃତ ହୋଇଥିବାର କଥିତ ହୋଇଛି (କଲିକତାର ତତ୍କାଳୀନ ପୋଲିସ୍ କମିଶନର୍ କୋଲ୍‌ସନ ସମ୍ଭବତଃ ସେତେବେଳେ ଲଣ୍ଡନସ୍ଥ ଇଣ୍ଡିଆ ଅଫିସରେ ନିଯୁକ୍ତ ଥିବା ସାର ଚାର୍ଲସଙ୍କର ସହଯୋଗିତାରେ ତାଙ୍କ ବିରୋଧରେ ଏଇଟିକୁ ବ୍ୟବହାର କରିଥିଲେ ବୋଲି ସନ୍ଦେହ କରା ଯାଇଥିଲା) । 1931 ମସିହା ମାର୍ଚ୍ଚ 6 ତାରିଖ ଦିନ କଲିକତା ଇଉନିଭର୍ସିଟି ଇନ୍‌ଷ୍ଟିଟିଉଟ୍‌ଠାରେ ଅନୁଷ୍ଠିତ ନିଖିଳ ବଙ୍ଗ ଛାତ୍ର ସମ୍ମିଳନୀରେ ତାଙ୍କର ଭାଷଣ ସଂକ୍ରାନ୍ତ ଏଇଟିକୁ ମଧ ବ୍ୟବହାର କରା

★ ଭୂପେନ୍ଦ୍ର କୁମାର ଦତ୍ତ ସାପ୍ତାହିକ 'ବସୁମତୀ'ରେ କ୍ରମାଗତ ଭାବରେ ଲେଖାଥିବା ବଙ୍ଗଳାଲେଖା 'ଇତିହାସର ଉପାଦାନ' - କଲିକତା 1.6.1966

ଯାଇଥିଲା । ସେଠାରେ ସେ କହିଥିବାର ଉଲ୍ଲେଖ ଅଛି, ''ବନ୍ଧୁଗଣ, ଏଠାରେ ମୁଁ ଭାରତୀୟ ଜାତୀୟ କଂଗ୍ରେସ ବା ତାହାର କାର୍ଯ୍ୟକାରୀ କମିଟି ଅଥବା ଭାରତୀୟ ଜାତିର ନେତା ମହାତ୍ମା ଗାନ୍ଧିଙ୍କ ତରଫରୁ ମଧ କିଛି କହିବାକୁ ଆସିନାହିଁ । ଏଠାରେ ମୁଁ ଆପଣମାନଙ୍କ ମଧ୍ୟରୁ ଜଣେ ହିସାବରେ କହୁଛି । ମହାତ୍ମା ଗାନ୍ଧି ହେଉଛନ୍ତି ଆପଣମାନଙ୍କର ପ୍ରତିନିଧି, ମୋର ପ୍ରତିନିଧି, ସମଗ୍ର ଭାରତବର୍ଷରେ ବାସ କରୁଥିବା ସବୁ ନରନାରୀଙ୍କର ପ୍ରତିନିଧି...''

''ଭାରତ ସରକାର ପ୍ରେସ୍‌ଲାଗି ଯେଉଁ ବିଜ୍ଞପ୍ତି ଦେଇଛନ୍ତି, ତାହାର ଅସଲ ନିହିତାର୍ଥ ଗୁଡ଼ିକୁ ବୁଝିବାଲାଗି'' ସେ ତରୁଣ ଶ୍ରୋତାମାନଙ୍କୁ ଅନୁରୋଧ କରିଥିଲେ । ସେନଗୁପ୍ତ ସେମାନଙ୍କୁ ଏହି କଥାଟିକୁ ବୁଝାଇ ଦେବାକୁ ଇଚ୍ଛା କରିଥିଲେ ଯେ, ଭାରତର ପ୍ରତ୍ୟେକ ତରୁଣ କାରାଗାର ମଧ୍ୟରୁ ବାହାରକୁ ନ ଆସିବା ପର୍ଯ୍ୟନ୍ତ ଭାରତବର୍ଷରେ ଯେ ଆଦୌ କୌଣସି ଶାନ୍ତି ସମ୍ଭବ ହେବ ନାହିଁ, ଗାନ୍ଧିଜୀ ସେକଥା ଭଲକରି ଜାଣିଥିଲେ । ସେ ପୁନଶ୍ଚ କହିଲେ, ''ହିଂସାତ୍ମକ କାର୍ଯ୍ୟ କରିଥିବା ବନ୍ଦୀମାନଙ୍କ ବିଷୟରେ ମୁଁ କହିବି ଯେ, ମୁଁ ସର୍ବଦା ସେମାନଙ୍କର ମୁକ୍ତି ଲାଗି ଚାପ ଦେଇ ଆସୁଛି ଏବଂ ମୁଁ ଗାନ୍ଧିଜୀଙ୍କୁ ମଧ୍ୟ ବଡ଼ଲାଟଙ୍କ ସହିତ ତାଙ୍କର ସାକ୍ଷାତବେଳେ ସେହି କଥାଟି ଲାଗି ଦୃଢ଼ଭାବରେ କହିବାକୁ ଅନୁରୋଧ କରିଥିଲି । ମାତ୍ର ଶାନ୍ତିଚୁକ୍ତିରେ ଏହି କଥାଟିକୁ ଏକ ପୂର୍ବସର୍ତ୍ତ କରି ରଖିବା ଆଦୌ ସମ୍ଭବ ହେଲା ନାହିଁ । ବନ୍ଧୁଗଣ, ଆପଣମାନଙ୍କୁ ମୁଁ ଆଦୌ କୌଣସି ଦୋଷ ଦେଉନାହିଁ, କାରଣ ମୁଁ ଭଲକରି ଜାଣିଛି ଯେ ଆପଣମାନେ ସମସ୍ତେ ଅତ୍ୟନ୍ତ ଉଚ୍ଚ ଦେଶାତ୍ମଭାବ ଦ୍ୱାରା ପୂର୍ଣ୍ଣ ହୋଇ ରହିଛନ୍ତି, କାରଣ ବିନା ବିଚାରରେ ଅଟକ ରହିଥିବା ବନ୍ଦୀମାନଙ୍କ ପ୍ରତି ଆପଣମାନଙ୍କର ସଂବେଦନା ରହିଛି । ମାତ୍ର, ଆପଣମାନେ ଜାଣିନାହାନ୍ତି ଯେ, ବିନା ବିଚାରରେ ଓ ବିନା ଅଭିଯୋଗରେ ଅଟକ ହୋଇ ରହିଥିବା 500 ତରୁଣମାନଙ୍କ ମଧ୍ୟରୁ ଅଧିକାଂଶ ହେଉଛନ୍ତି ମୋର ଘନିଷ୍ଠ ବନ୍ଧୁ ଓ କଂଗ୍ରେସ ଅନୁଷ୍ଠାନ ଭିତରେ ମୋର ସହକର୍ମୀ । (ହର୍ଷଧ୍ୱନି) ମୁଁ ଏକଥା ମହାତ୍ମା ଗାନ୍ଧିଙ୍କୁ କହିଛି, ଅନ୍ୟମାନଙ୍କୁ ମଧ କହିଛି । ମୁଁ ଏକଥା ମଧ କହିଛି ଯେ ସେମାନେ ପ୍ରତ୍ୟେକେ ଜଣେ ଜଣେ ଅତ୍ୟନ୍ତ ନିଷ୍ଠାପର କଂଗ୍ରେସ ଲୋକ, ସେମାନଙ୍କ ମଧ୍ୟରୁ ଅନେକେ ବିଭିନ୍ନ କଂଗ୍ରେସ କମିଟିରେ କର୍ମକର୍ତ୍ତା ହୋଇ ରହିଛନ୍ତି । ମୁଁ ସେମାନଙ୍କ ତରଫରୁ ମହାତ୍ମାଜୀଙ୍କୁ କହିଛି ଏବଂ କାର୍ଯ୍ୟକାରୀ କମିଟି ଆଗରେ ମଧ ସେମାନଙ୍କ ତରଫରୁ ନିବେଦନମାନ କରିଛି ।''

ଉପରେ ଯାହାକିଛି ପ୍ରତିପାଦିତ ହୋଇଥାଉ ପଛକେ, ଜଣେ ଉଦ୍ଦୀପ୍ତ ଦେଶଭକ୍ତ ଏବଂ ମୁକ୍ତିଯୋଦ୍ଧା ହିସାବରେ ସେନଗୁପ୍ତଙ୍କର ରାଜନୀତିକ ମତ, ଅଙ୍ଗୀକାର ତଥା କାର୍ଯ୍ୟାନୁଷ୍ଠାନକୁ ଭାରତବର୍ଷର ସାମ୍ରାଜ୍ୟବାଦୀ ଶାସକମାନେ ହୁଏତ ଆଦୌ ହୃଦୟଙ୍ଗମ କରିପାରି ନଥାନ୍ତେ ଦେଶରେ ବିପ୍ଳବୀ ଦଳ ଓ ସେମାନଙ୍କର କାର୍ଯ୍ୟକଳାପକୁ ସେ ସକ୍ରିୟ ଭାବରେ ସମର୍ଥନ କରୁଛନ୍ତି ବୋଲି ସନ୍ଦେହ କରା ଯାଇଥିଲା । ହିଜ୍‌ଲି ବନ୍ଦୀ ଶିବିରରେ ବଙ୍ଗାଳୀ ଅଟକବନ୍ଦୀ ମାନଙ୍କୁ ଗୁଳିକରି ହତ୍ୟା କରାଯାଇଥିବାର ଘଟଣାକୁ ଦୃଢ଼ ଭାବରେ ଭର୍ତ୍ସନା କରି ସେ ବିବୃତିମାନ ଦେଇଥିଲେ । ଏକ ପକ୍ଷରେ ବିପ୍ଳବୀମାନେ ଓ ଅନ୍ୟ ପକ୍ଷରେ ସରକାରୀ ଲୋକ ତଥା ସେମାନଙ୍କର ଶାସନକଳ ଲିପ୍ତ ହୋଇ ପଡ଼ିଥିବା ଚିଟାଗଙ୍ଗ୍ ଅତ୍ୟାଚାରକୁ ମଧ ସେ ପ୍ରକାଶ୍ୟ ଭାବରେ ସମାଲୋଚନା କରିଥିଲେ ଏବଂ ଜାତୀୟ ଯାବତୀୟ ଦୁର୍ଗତିର ଏକମାତ୍ର ପ୍ରତିକାର ରୂପେ ଭାରତବର୍ଷରୁ ବ୍ରିଟିଶ୍ ଆଧିପତ୍ୟର ଯଥାଶୀଘ୍ର ବିଲୁପ୍ତି ଘଟୁ ବୋଲି ଆହ୍ୱାନ ଦେଇଥିଲେ । ଏଥିରେ ବୁଝିବାକୁ ଆଦୌ କିଛି ବାକି ରହୁନାହିଁ ଯେ, ତଦ୍ଦ୍ୱାରା ଶାସକଶକ୍ତି ତାଙ୍କ ଉପରେ ଅତ୍ୟନ୍ତ କ୍ରୁଦ୍ଧ ହୋଇ ଉଠିଥିଲା । ସେନଗୁପ୍ତ ବିଲାତ ଯାଇଥିବା ବେଳେ

(ଡିସେମ୍ବର 1931) ପ୍ରବୀଣ ବ୍ରିଟେନ୍‌ବାସୀ ଚାର୍ଲସ୍ ଟେଗାର୍ଟ (କଲିକତାର ପୋଲିସ୍ ପ୍ରମୁଖ) ଇଣ୍ଡିଆ ଅଫିସ୍‌ରେ ନିଯୁକ୍ତ ହେବା ପରେ ସେହି କ୍ରୋଧ ଆହୁରି ଅଧିକ ପରିମାଣରେ ପ୍ରଜ୍ଜ୍ୱଳିତ ହେବାର ସୁଯୋଗ ପାଇଲା । ତା'ପରେ ତାହାର ଅବଶ୍ୟମ୍ଭାବୀ ପରିଣାମମାନ ଫଳିଲା : ଲଣ୍ଡନରୁ ଆସି ଭାରତରେ ପ୍ରବେଶ କରୁକରୁ ହିଁ ସେନଗୁପ୍ତଙ୍କୁ ଗିରଫ କରି ନିଆଗଲା । ତାଙ୍କର ଭଗ୍ନ ସ୍ୱାସ୍ଥ୍ୟ ସତ୍ତ୍ୱେ ତାଙ୍କୁ ବାରବାର ଗୋଟିଏ ବନ୍ଦୀଶାଳାରୁ ଆଉଗୋଟିଏ ବନ୍ଦୀଶାଳାକୁ ସ୍ଥାନାନ୍ତରିତ କରାଗଲା । ତାହାରି ମଧ୍ୟରୁ ଗୋଟିଏ ବନ୍ଦୀଶାଳାରେ ହିଁ ସେ ଶେଷନିଃଶ୍ୱାସ ତ୍ୟାଗ କଲେ ।

### ଏକ ସ୍ମରଣ ଚିହ୍ନ

ଦ୍ୱିତୀୟ ଦଶକର ଶେଷ ଭାଗ ଏବଂ ତୃତୀୟ ଦଶକର ପ୍ରଥମ ଭାଗରେ ଯତୀନ୍ଦ୍ରମୋହନ ଏବଂ ସୁଭାଷ ଚନ୍ଦ୍ରଙ୍କ ମଧ୍ୟରେ ଯେଉଁ ରାଜନୀତିକ ପ୍ରତିଦ୍ୱନ୍ଦ୍ୱିତା ଦୀର୍ଘ ସମୟଧରି ଚାଲିଥିଲା, ତାହା ବସ୍ତୁତଃ ଆଦୌ ସ୍ଥାୟୀ ହୋଇ ରହିନଥିଲା । ଏହି କ୍ଷେତ୍ରରେ ଯେ ଏକ ପରିପୂରଣକାରୀ ଉପାଦାନ ଅବଶ୍ୟ ରହିଥିଲା, ନିମ୍ନ କଥାଟିରୁ ତାହା ଅତ୍ୟନ୍ତ ସ୍ପଷ୍ଟ ହୋଇଯିବ ।

ମହାଜାତି ସଦନର ବିଚାର ଏବଂ ଯୋଜନା ସର୍ବପ୍ରଥମେ ସୁଭାଷଚନ୍ଦ୍ର ବୋଷ ହିଁ କରିଥିଲେ । ଏକ ଜାତୀୟ ଉଦ୍ଦେଶ୍ୟରେ ଗଢ଼ା ହୋଇଥିବା ଅଟ୍ଟାଳିକାମାନଙ୍କ ମଧ୍ୟରେ ଏହା ହେଉଛି ଏକ ଅତିସୁନ୍ଦର କୃତି (ଏହାର ଯୋଜନା 1937ରେ ହୋଇଥିଲା) । ଅଗଷ୍ଟ 1939ରେ ରବୀନ୍ଦ୍ରନାଥ ଠାକୁର ଏହି ବିଶାଳ ସୌଧର ଶିଳାନ୍ୟାସ କରିଥିଲେ ଏବଂ ପ୍ରକୃତରେ ସେହି ମହାଜାତି ସଦନର ନାମକରଣ ମଧ୍ୟ କରିଥିଲେ । ପଶ୍ଚିମବଙ୍ଗର ଜଣେ ପୂର୍ବତନ ମୁଖ୍ୟମନ୍ତ୍ରୀ ଡାକ୍ତର ବିଧାନଚନ୍ଦ୍ର ରାୟ ଏକ ବର୍ଣ୍ଣାଢ଼୍ୟ ଉତ୍ସବରେ 1959 ମସିହା ଅଗଷ୍ଟ 19 ତାରିଖରେ ଔପଚାରିକ ଭାବରେ ଏହି ସଦନର ଉଦ୍‌ଘାଟନ କରିଥିଲେ ।

ସଦନର ପଶ୍ଚାତରେ ଗୋଟିଏ କାହାଣୀ ଥିଲା । 1937 ମସିହାରେ କାରାମୁକ୍ତ ହେବାପରେ ସୁଭାଷଚନ୍ଦ୍ରଙ୍କୁ ଜନ୍‌ସାଧାରଣଙ୍କ ତରଫରୁ ଅଭ୍ୟର୍ଥନା ଦିଆ ଯାଇଥିଲା । ସେହି ଅବସରରେ ଗୃହୀତ ହୋଇଥିବା ପ୍ରସ୍ତାବ ଏବଂ ଆବାହକ ମାନଙ୍କର ବିଶେଷକରି ନୃପେନ୍ଦ୍ର ଚନ୍ଦ୍ର ମିତ୍ରଙ୍କର ଇଚ୍ଛାକୁ କାର୍ଯ୍ୟକାରୀ କରିବାକୁ ଯାଇ ସୁଭାଷ କଂଗ୍ରେସ ପାଣ୍ଠି ନାମରେ ଏକଲକ୍ଷ ଟଙ୍କା ସଂଗ୍ରହ କରିବାଲାଗି ନିଷ୍ପତ୍ତି ନିଆ ଯାଇଥିଲା । ଏପ୍ରିଲ 17 ତାରିଖ ଦିନ ସଭାସ୍ଥଳରେ ହିଁ ସଂଗୃହୀତ ଅର୍ଥପରିମାଣଟିରୁ ପାଣ୍ଠିଟିର ଉଦ୍‌ଘାଟନ ହୋଇଥିଲା ଏବଂ କଲିକତାର କେନ୍ଦ୍ରସ୍ଥାନରେ ଗୋଟିଏ ସାଧାରଣ ସଭା କକ୍ଷର ନିର୍ମାଣ କରାଯିବା ଲାଗି ସେହି ଅର୍ଥକୁ ଉଦ୍ଦିଷ୍ଟ କରି ରଖାଗଲା । ତାହାରି ନାମ ପରେ ମହାଜାତି ସଦନ ହେଲା । ସୁଭାଷଚନ୍ଦ୍ର ସେତେବେଳେ ବଙ୍ଗ ପ୍ରାଦେଶିକ କଂଗ୍ରେସ କମିଟିର ଅଧ୍ୟକ୍ଷ ଥାଆନ୍ତି । ଏକଥା ମଧ୍ୟ ପ୍ରସ୍ତାବ କରାଯାଇଥିଲା ଯେ, ବଙ୍ଗ କଂଗ୍ରେସ ଅନୁଷ୍ଠାନର ଅଫିସ୍ ମଧ୍ୟ ସେହି ସଦନରେ ରହିବ ଏବଂ, ଦେଶପ୍ରିୟ ଯତୀନ୍ଦ୍ରମୋହନ ସେନଗୁପ୍ତଙ୍କର ନାମକୁ ସ୍ମରଣୀୟ କରି ରଖିବାକୁ ସେଠାରେ ଗୋଟିଏ ବୈଠକ-କକ୍ଷ ମଧ୍ୟ ସ୍ୱତନ୍ତ୍ର କରି ରଖାଯିବ । ★

ତା'ପରେ ସୁଭାଷଚନ୍ଦ୍ରଙ୍କର ଅନୁରୋଧ କ୍ରମେ ଜବାହରଲାଲ ନେହେରୁ ମଧ୍ୟ ଉଦାର ଭାବରେ ଦାନ କରିବାଲାଗି ଏକ ଆବେଦନ ପ୍ରକାଶ କରି ଏହି ଯୋଜନା ସହିତ ଆପଣାକୁ ସଂପୃକ୍ତ କରିଥିଲେ ।

---

★ ଦୈନିକ 'ଯୁଗାନ୍ତର', କଲିକତା, ନଭେମ୍ବର 29, 1977 - ରଣେନ୍ ଭଟ୍ଟାଚାର୍ଯ୍ୟଙ୍କର ଲେଖା ।

1937 ମସିହା ମଇ 4 ତାରିଖରେ ସେହି ସୌଧଟି ବିଷୟରେ ରହିଥିବା ପ୍ରସ୍ତାବଟିକୁ ସମର୍ଥନ କରି ଏକ ବିବୃତିରେ ଜବାହରଲାଲ କହିଥିଲେ :

'ଏହା ଅତ୍ୟନ୍ତ ସମୀଚୀନ କଥା ଯେ, ପ୍ରସ୍ତାବିତ ଏହି ଭବନଟି ଆମର ପୁରାତନ ସାଥୀ ଯତୀନ୍ଦ୍ରମୋହନ ସେନଗୁପ୍ତଙ୍କ ନାମରେ ନାମିତ ହେବାକୁ ଯାଉଛି । ମୁଁ ଆହୁରି ଖୁସି ଯେ, ଏହାର ଗ୍ରନ୍ଥାଗାରରେ ଗୋଟିଏ ହିନ୍ଦୁସ୍ଥାନୀ ବିଭାଗ ମଧ୍ୟ ରହିବ, ଯେପରିକି କଂଗ୍ରେସ ଲୋକେ ଆମର ଜାତୀୟ ଭାଷା ବିଷୟରେ ମଧ୍ୟ ଜ୍ଞାନ ଅର୍ଜନ କରିପାରିବେ । ଏଥିରେ କୌଣସି ସନ୍ଦେହ ନାହିଁ ଯେ ସୁଭାଷବାବୁ ପଣ୍ଡିତ ନେହେରୁଙ୍କୁ ଯେପରି ପ୍ରସ୍ତାବ ଦେଇଥିଲେ, ସେହି ଅନୁସାରେ ହିଁ ପଣ୍ଡିତ ନେହରୁ ଯତୀନ୍ଦ୍ରମୋହନ ସେନଗୁପ୍ତଙ୍କ ବିଷୟରେ ପ୍ରଶଂସାସୂଚକ ଭାବରେ ସେହି କଥାଗୁଡ଼ିକ କହିଥିଲେ । ★

1937 ମସିହାରେ ସୌଧଟିର ଯୋଜନା କଲାବେଳେ ସୁଭାଷଚନ୍ଦ୍ର ସେଥିଲାଗି ତିନିଲକ୍ଷ ଟଙ୍କା ଖର୍ଚ୍ଚ ହେବ ବୋଲି ଅଟକଳ କରିଥିଲେ । ମାତ୍ର, ଶେଷରେ ବାର ଲକ୍ଷଟଙ୍କା ଖର୍ଚ୍ଚ ହୋଇ ମହାଜାତି ସଦନର ନିର୍ମାଣ ସଂପୂର୍ଣ୍ଣ ହୋଇଥିଲା । ଏକ ପ୍ରକୃତ ପ୍ରାଚ୍ୟ ଶୈଳୀରେ ନିର୍ମିତ ହୋଇ ଏହି ସୌଧଟି ଏକ ସୁଦୃଶ୍ୟ ଜାତୀୟ ଅଟ୍ଟାଳିକା ରୂପେ ବର୍ତ୍ତମାନ ବିଦ୍ୟମାନ ରହିଛି ।

ଅବଶ୍ୟ ଦୁର୍ଭାଗ୍ୟର କଥା ଯେ, ପ୍ରଧାନ କକ୍ଷଟି ଅଥବା ଅନ୍ୟ କୌଣସି ବିଶେଷ ପ୍ରକୋଷ୍ଠ ମଧ୍ୟ ପ୍ରଥମକାଳୀନ କଳ୍ପନା ଅନୁସାରେ ଯତୀନ୍ଦ୍ରମୋହନଙ୍କ ନାମରେ ନାମିତ ହୋଇନାହିଁ । କାହିଁକି ବା କାହାର ପ୍ରସ୍ତାବରେ ସେପରି ହୋଇଛି, ସେକଥା କେହି ଜାଣନ୍ତି ନାହିଁ ।

★ 'The Statesman' କଲିକତା, ଅଗଷ୍ଟ 17,1958

Printed at Bharat Mudranalaya Navin Shahdara Delhi-110032



ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଆପଣାର ଅବଦାନ ଲାଗି ଯତୀନ୍ଦ୍ରମୋହନ ସେନଗୁପ୍ତ ପ୍ରଖ୍ୟାତ । ତାଙ୍କର ଗୁଣମୁଗ୍ଧ ଶୁଭେଚ୍ଛୁଗଣ ତାଙ୍କୁ ଅତ୍ୟନ୍ତ ଅନୁରାଗ ସହିତ 'ଦେଶପ୍ରିୟ' ବୋଲି ଡାକୁଥିଲେ । ଯତୀନ୍ଦ୍ରମୋହନ ଆଧୁନିକ ଭାରତବର୍ଷର ଅନ୍ୟତମ ନିର୍ମାତା । ତାଙ୍କର ଜୀବନ ସାହସର ଏକ ବୃତ୍ତାନ୍ତ ଏବଂ ତାହାକୁ ପାଠ କଲାବେଳେ ବ୍ରିଟିଶ ଶକ୍ତିକୁ ଦିଆଯାଇଥିବା ଆହ୍ୱାନର ଏକ କାହାଣୀ ପରି ତାହା ମନେହୋଇଥାଏ ।

ଏହି ଜୀବନୀର ଲେଖକ ଶଚୀନ୍ ଦତ୍ତ (1903 - 78) ଜଣେ ସୁପରିଚିତ ସାମ୍ବାଦିକ ଥିଲେ ଏବଂ 'ଦି ଷ୍ଟେଟ୍‌ସମ୍ୟାନ୍', 'ଅମୃତ ବଜାର ପତ୍ରିକା', 'ଲିବର୍ଟି', 'ରେଙ୍ଗୁନ୍ ଗେଜେଟ୍', 'ପାୟୋନିୟର୍', 'ଇଣ୍ଡିଆନ୍ ନେଶନ୍' ଏବଂ 'ଯୁଗାନ୍ତର' ପ୍ରଭୃତି ଭାରତବର୍ଷ ତଥା ବ୍ରହ୍ମଦେଶର ସମ୍ବାଦପତ୍ରମାନଙ୍କରେ କାର୍ଯ୍ୟ କରିଥିଲେ । ନିଜ ଜୀବନର ଅନେକ ସମୟ ବିତାଇଥିବା ଟିଟାଗଡ଼୍ ଏବଂ କଟକ ସହରରେ ଅନେକ ସାହିତ୍ୟିକ, ସାମାଜିକ ତଥା ସାଂସ୍କୃତିକ ସଙ୍ଗଠନାତ୍ମକ କାର୍ଯ୍ୟରେ ସେ ସକ୍ରିୟ ଭୂମିକା ନେଇଥିଲେ ।



ଟ. 40.00

ISBN 81-237-2898-0

ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ